Vol. XLIV No. 1 UTKAL PRASANGA Regd. No. O-05/87
Licence No. C. R. N. P. 5—Licensed to post without Pre-Payment



ନୂତନ ରାଷ୍ଟ୍ରପତି ଶ୍ରୀ ଭେଙ୍କଟରମଣଙ୍କ ଶପଥ ପାଠ ଉତ୍ସବ



# ଉତ୍କଳ ପ୍ରସଙ୍ଗ

ଭାଦ୍ର/ଆଶ୍ୱିନ ୧୯୦୯ ଶକାବ୍ଦ ୪୩ ଭାଗ ୧ମ/୨ୟ ସଂଖ୍ୟା ସେପ୍ଟେମ୍ବର/ଅକ୍ଟୋବର ୧୯୮୭



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠବୋଲି ଭାବିବା ଉଚିତ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ଉତ୍କଳ ପ୍ରସଙ୍ଗ

## ସୂଚୀପତ୍ର

## ମୋ ଦୃଷ୍ଟିରେ....

ଶାରଦୀୟ ପୂଜାର ସମ୍ଭାର ତଥା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଜନ୍ମ ଦିବସ ଅବସରରେ ଦ୍ୱୈତ ଅର୍ଘ୍ୟ ଘେନି "ଉତ୍କଳ ପ୍ରସଙ୍ଗ" ଏଥର ଆମ୍ଭ ପ୍ରକାଶ କରୁଛି ।

ମହାତ୍ମାଙ୍କ ଆବିର୍ଭାବ ଉପଲକ୍ଷେ ଓଡ଼ିଆମାନଙ୍କୁ ନିଜ କର୍ତ୍ତବ୍ୟ ଓ ନିଷ୍ଠା ସମ୍ପର୍କରେ ଆଉଥରେ ସ୍ମରଣ କରାଇ ଦେଇଛନ୍ତି ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ "ଯୁଦ୍ଧ ସରିନାହିଁ" ପ୍ରବନ୍ଧରେ । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଅର୍ଥନୈତିକ ଓ ନୈତିକ ସମସ୍ୟାମାନଙ୍କର ସମାଧାନ ନ ହେବା ପର୍ଯ୍ୟନ୍ତ ସରିବ ନାହିଁ—ଏହାହିଁ ଏହି ପ୍ରବନ୍ଧର ସନ୍ଦେଶ ଏବଂ ଏହି ସନ୍ଦେଶ ଦେଶବାସୀଙ୍କ ପାଖରେ ପହଞ୍ଚାଇ ଦେବା ଦାୟିତ୍ୱ "ଉତ୍କଳ ପ୍ରସଙ୍ଗ" ଯଥାସାଧ୍ୟ ପାଳନ କରିବାକୁ ପ୍ରତିଶ୍ରୁତିବଦ୍ଧ ।

ନୈତିକ ଚିନ୍ତାଧାରା ଉନ୍ନତି ନିମନ୍ତେ ଏଥର "ଉତ୍କଳ ପ୍ରସଙ୍ଗ"ରେ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମହାରାଜ "ପ୍ରେୟ ଓ ପରମାର୍ଥ" ପ୍ରବନ୍ଧରେ ଯେଉଁ ଚିନ୍ତାଧାରାର ଉପସ୍ଥାପନା କରିଛନ୍ତି ସେଥିପ୍ରତି ଆମେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛୁ ।

ମା' ଦୁର୍ଗାଙ୍କ ଶାରଦୀୟ ପୂଜା ଉପଲକ୍ଷେ ଶ୍ରୀ ରଘୁନାଥ ପାଢ଼ୀଙ୍କ "ଦଶ ମହାବିଦ୍ୟା" ପ୍ରବନ୍ଧ ସମୟୋପଯୋଗୀ ହେବ ବୋଲି ଆଶାକରୁଛୁ ।

ଗୁରୁ ଦିବସର ପରମ୍ପରା 'ଭାରତର ଭୂତପୂର୍ବ ରାଷ୍ଟ୍ରପତି ତଥା ପ୍ରସିଦ୍ଧ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଜନ୍ମ ଦିବସକୁ ସ୍ମରଣ କରାଇ ଦିଏ—ସେହି ବିଷୟରେ ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ଭାରତୀୟ ଗୁରୁପରମ୍ପରା ଓ ଗୁରୁଦିବସ' ପ୍ରବନ୍ଧ ପ୍ରତି ଆମେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଛୁ ।

ଶାରଦୀୟ ପୂଜାର ଅଭିବାଦନ ଓ ଶୁଭେଚ୍ଛା ସହ.......

# ଯୁଗ ମନୀଷୀ ଗାନ୍ଧୀ

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ମହାତ୍ମା ଗାନ୍ଧୀ କେବଳ ଆମର ମୁକ୍ତିଦାତା ନଥିଲେ, ସେ ଥିଲେ ସମଗ୍ର ବିଶ୍ୱର ମୁକ୍ତିଦାତା, ଦାର୍ଶନିକ ଏବଂ ପଥପ୍ରଦର୍ଶକ । ପୃଥିବୀରେ ହଜାର ହଜାର ବର୍ଷପରେ ଏହିପରି ଜଣେ ମହାମାନବ ଜନ୍ମ ହୁଅନ୍ତି ଏବଂ ଆକାଶରେ ଧ୍ରୁବତାରାପରି ଦୀପ୍ତିମନ୍ତ ହୋଇ ମାନବ ସମାଜକୁ ପଥପ୍ରଦର୍ଶନ କରନ୍ତି । ଗାନ୍ଧୀଜୀ ଯେତେବେଳେ ଆବିର୍ଭୂତ ହୋଇଥିଲେ, ସେତେବେଳେ ଭାରତବର୍ଷ ଯେ କେବଳ ପରାଧୀନ ଥିଲା ତା ନୁହେଁ, ପୃଥିବୀର କୋଟି କୋଟି ଲୋକ ସାମ୍ରାଜ୍ୟବାଦ ଉପନିବେଶବାଦର ନିଗଡ଼ରେ ସଢୁଥିଲେ ଏବଂ ବର୍ଣ୍ଣବୈଷମ୍ୟ, ଜାତିଭେଦ ଏବଂ ସାମ୍ପ୍ରଦାୟିକତାର ବିଷବାଷ୍ପ ସାରାଦେଶ ତଥା ପୃଥିବୀକୁ ଗ୍ରାସ କରିଥିଲା । ଏହି ହିଂସ୍ର ବାତାବରଣ ମଧ୍ୟରେ ବିଦ୍ରୋହୀତ ଏବଂ ଶୋଷଣର ବାତାବରଣ ମଧ୍ୟରେ ଗାନ୍ଧୀଜୀ ଜନ୍ମ ହୋଇଥିଲେ ପୃଥିବୀକୁ ବାଟ ଦେଖାଇବା ପାଇଁ ଏବଂ ଏ ଯେଉଁ ନୂତନ ସଂଗ୍ରାମର ଦୀକ୍ଷା ଭାରତବାସୀଙ୍କୁ ଦେଇଥିଲେ, ପୃଥିବୀକୁ ଦେଇଥିଲେ ତାହା ଏକ ଅଭିନବ ସଂଗ୍ରାମ । ଅହିଂସା ବାଟରେ କିପରି ପୃଥିବୀର ସବୁଠାରୁ ଶକ୍ତିଶାଳୀ ସାମ୍ରାଜ୍ୟବାଦକୁ

ଗାନ୍ଧୀଜୀଙ୍କର ପନ୍ଥା ଗ୍ରହଣକରି ପୃଥିବୀର ଅନ୍ୟାନ୍ୟ ବହୁଦେଶ ତାଙ୍କର ମୁକ୍ତି ସଂଗ୍ରାମ କରିଥିଲେ । ଦକ୍ଷିଣ ଆଫ୍ରିକାରେ, ଆମେରିକାରେ ବର୍ଣ୍ଣ ବିଦ୍ୱେଷ ବିରୁଦ୍ଧରେ ଯେଉଁ ସଂଗ୍ରାମ ଚାଲିଥିଲା ମହାତ୍ମା ଗାନ୍ଧୀଙ୍କର ନିର୍ଦ୍ଦେଶିତ ପନ୍ଥାରେ ସେ ସଂଗ୍ରାମ ଚାଲିଥିଲା । ଆଜିମଧ୍ୟ ସେ ସଂଗ୍ରାମ ଚାଲିଛି । ବିଂଶ ଶତାବ୍ଦୀରେ ପୃଥିବୀର ବିଭିନ୍ନ ସମସ୍ୟା ଯୁଦ୍ଧ ଏବଂ ଶାନ୍ତି ବର୍ଣ୍ଣ ବୈଷମ୍ୟ, ବିଭିନ୍ନ ଦେଶର ସ୍ୱାଧୀନତା, ସାମାଜିକ ମୁକ୍ତି, ଅର୍ଥନୈତିକ ସଂଗ୍ରାମ ଏ ସବୁ ବିଷୟରେ ଗାନ୍ଧୀଜୀ ପଥ ପ୍ରଦର୍ଶନ କରିଥିଲେ । ବିଂଶ ଶତାବ୍ଦୀରେ ଯଦି ଭାରତବର୍ଷର କିଛି ଦାନ ପୃଥିବୀକୁ ଅଛି, ତାହାହେଲେ ଗାନ୍ଧୀଜୀ ଏବଂ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥା । ଆଜି ମଧ୍ୟ ଆମେ ଗାନ୍ଧୀଜୀଙ୍କର ପରିକଳ୍ପିତ ସ୍ୱରାଜ୍ୟର ବହୁ ଦୂରରେ ରହିଛେ । ଏବେ ମଧ୍ୟ ଅର୍ଥନୈତିକ ସ୍ୱରାଜ୍ୟ ଦେଶକୁ ଆସିନାହିଁ । ଏବେ ମଧ୍ୟ ସମାଜବାଦ ପ୍ରତିଷ୍ଠିତ ହୋଇନାହିଁ । ଏବେ ମଧ୍ୟ ଜାତିଭେଦ ଓ ବର୍ଣ୍ଣବିଦ୍ୱେଷ ଏ ଦେଶରେ ଲାଗି ରହିଛି । ସାମ୍ପ୍ରଦାୟିକତା ବିଷବାଷ୍ପ ମଝିରେ ମଝିରେ ଏ ଦେଶକୁ କଳଙ୍କିତ କରିଛି । ତେଣୁ ଆଜି



ପରାଜିତ କରାଯାଇପାରେ ତାହା ସେ ତାଙ୍କର ଜୀବଦ୍ଦଶାରେ ଦେଖାଇ ଦେଇଥିଲେ ଏବଂ ଯେଉଁ ଭୟଗ୍ରସ୍ତ ମୂକ ଜନତା ଭାରତବର୍ଷର ଏ ଶୋଷଣକୁ ଭାଗ୍ୟବାଦ ବୋଲି ମନେକରି ଗ୍ରହଣ କରିନେଇଥିଲେ ସେମାନଙ୍କୁ ସେ ଜାଗ୍ରତକରି ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ମହା ସଂଗ୍ରାମ ଘୋଷଣା କରି ସଫଳତାର ସହିତ ଏ ଦେଶକୁ ସ୍ୱାଧୀନ କରିଥିଲେ ।

ଗାନ୍ଧୀଜୀଙ୍କ ପବିତ୍ର ଜନ୍ମ ଦିନରେ ଆମେମାନେ ଶପଥ ନେବା ଦରକାର ଯେ ଆମେ ତାଙ୍କ ପ୍ରଦର୍ଶିତ ପନ୍ଥାରେ ଏ ସମସ୍ତ ସମସ୍ୟାର ସମ୍ମୁଖୀନ ହୋଇ ଏ ସଂଗ୍ରାମ ଚାଲୁରଖିବା ଏବଂ ଗାନ୍ଧୀଜୀଙ୍କର ଦେଶ ଭାରତବର୍ଷ ପୃଥିବୀରେ ଏକ ଆଦର୍ଶବାଦୀ ଦେଶରେ ପରିଣତ ହେବ ।

(ଗାନ୍ଧୀ ଜୟନ୍ତୀ ୧୯୮୭ ଭାଷଣରୁ)



କାଶୀପୁର ମରୁଡ଼ି ଅଞ୍ଚଳରେ ପ୍ରଧାନମନ୍ତ୍ରୀ





# ସ୍ୱାର୍ଥ ଓ ପରମାର୍ଥ

ସ୍ୱାମୀ ଚିଦାନନ୍ଦ ସରସ୍ୱତୀ

ଏଇ ପ୍ରପଞ୍ଚରେ ମଣିଷର ଜୀବନ କାଳ ଏକ ଯାତ୍ରା ସଦୃଶ । ଏହାର ସ୍ଥିତି କ୍ଷଣିକ । ଆମେ ସମସ୍ତେ ସେଇ ପଥର ପଥିକ । ଜନ୍ମ, ଜରା, ବ୍ୟାଧି ଓ ମୃତ୍ୟୁର ଦ୍ୱାରଦେଇ ଆମେ ଗତି କରୁଛୁ । ପ୍ରକୃତରେ ଏହା ଆମ ପାଇଁ ଏକ ସାମୟିକ ଜୀବନ । ତେଣୁ, ପ୍ରପଞ୍ଚ ସହିତ ଆମର ସମ୍ବନ୍ଧ କ୍ଷଣ ଭଙ୍ଗୁର । ପ୍ରପଞ୍ଚକୁ ଛାଡ଼ି ଆମେ ଚାଲିଯିବା ସ୍ଥିର ନିଶ୍ଚିତ । ଏହା ସହିତ ଆମର ସଂପର୍କ ପୂର୍ବରୁ ନଥିଲା କି ଭବିଷ୍ୟତରେ ମଧ୍ୟ ରହିବ ନାହିଁ । କାରଣ ଏଠାରେ ଯାହାକିଛି ଅଛି,ସେ ସମସ୍ତ ଭାସମାନ । ତା'ର ଆଦି ଅଛି, ଅନ୍ତ ମଧ୍ୟ ଅଛି–ସେ ସବୁ ପୂର୍ଣ୍ଣ ନୁହେଁ, ଅପୂର୍ଣ୍ଣ– କେତେବେଳେ ତୃପ୍ତିଦାୟକ, ପୁଣି କେତେବେଳେ ତୃପ୍ତି ରହିତ– ଯନ୍ତ୍ରଣାମୟ । ତୃପ୍ତି କେବେ କ'ଣ ଆମେ ଚିନ୍ତା କରିଚେ, ଏଠାକୁ ଆସିବା ପୂର୍ବରୁ ଆମେ କେଉଁଠି ଥିଲେ– ଯେତେବେଳେ ଏ ପ୍ରପଞ୍ଚକୁ ଛାଡ଼ି କରି ଚାଲିଯିବା କୁଆଡେ ଯିବା ?

ଯଦ୍ ଗତ୍ୱା ନ ନିବର୍ତ୍ତନ୍ତେ–

ଯିବା ସେଇଠିକି– ଏସ୍ଥୁଳ ଶରୀର ଓ ଭୌତିକ ପ୍ରପଞ୍ଚ ଉପରେ ଯିଏ ବିଦ୍ୟମାନ– ଯିଏ ଅବିନାଶୀ, ଅବ୍ୟୟ ଅବ୍ୟକ୍ତ ଓ ସର୍ବଶକ୍ତିମୟ– ସେଇ ପରମାର୍ଥଙ୍କ ନିକଟକୁ । ତେଣୁ, ପ୍ରପଞ୍ଚ କରିବାକୁ ପଡ଼ିବ ଏବଂ ପରମାର୍ଥଙ୍କୁ ଲାଭ କରିବାକୁ ପଡ଼ିବ । ଏଦୁଇଟି ବିଭାଗ ହାସଲ କରିବା ପାଇଁ ଯାହାସବୁ ଦରକାର, ସେଗୁଡ଼ିକ ଆମର ବେଦ ଓ ପୁରାଣ ଆଦିରେ ରହିଛି ।

ଏଇ ଜଗତ ସୃଷ୍ଟି ହେବାର ବହୁକାଳ ପୂର୍ବେ କେବଳ ପରମାର୍ଥ ହିଁ ଥିଲେ । ଏ କଥାର ବର୍ଣ୍ଣନା ଶାସ୍ତ୍ର ପୁରାଣରେ ଯେ ଅଛି, ତା' ନୁହେଁ । ଆଜିର ବୈଜ୍ଞାନିକମାନେ ମଧ୍ୟ କହୁଛନ୍ତି, ଏକ କାଳରେ ଏପରି ସମୟ ଥିଲା, ଯେତେବେଳେ କି କୌଣସି ବସ୍ତୁ ବୋଲି କିଛି ନଥିଲା । ଏଦୃଶ୍ୟମାନ ଜଗତ ଏକ ବିଚିତ୍ର ସୃଷ୍ଟି । ଭୌତିକ ବିଜ୍ଞାନୀମାନେ ଏହାକୁ ପ୍ରକୃତି ବୋଲି କହୁଛନ୍ତି । କିନ୍ତୁ ଆମେ ତାହାକୁ ଭଗବାନ ବୋଲି କହୁଛୁ । ଶାସ୍ତ୍ର ସିଦ୍ଧାନ୍ତରେ ଭଗବାନ ଓ ପ୍ରକୃତି ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଆଉ ପାଶ୍ଚାତ୍ୟ ଭୌତିକ ବିଜ୍ଞାନୀମାନେ ଯାହାକୁ ପ୍ରକୃତି ରୂପରେ ଚିତ୍ରଣ କରିଥାଆନ୍ତି, ଆମେ ତାଙ୍କୁ ପରାଶକ୍ତି, ଆଦିଶକ୍ତି, ମହାଶକ୍ତି ବୋଲି କହୁ । ପରଂବ୍ରହ୍ମ ବା ପରମାତ୍ମାଙ୍କର ଏକ ଅଭିନ୍ନ ଦିବ୍ୟଶକ୍ତି ହେଉଛନ୍ତି ସେହି ପରାଶକ୍ତି ॥

ବ୍ରହ୍ମାଣ୍ଡ ମାଳମାଳ ହୋଇ–

ଆମର ଆଧ୍ୟାତ୍ମିକ ବିଜ୍ଞାନୀମାନେ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି ଯେ ଏଠାରେ କେବଳ ଗୋଟିଏ ବ୍ରହ୍ମାଣ୍ଡ ନାହିଁ, ଏମିତି ଅନନ୍ତ କୋଟି ବ୍ରହ୍ମାଣ୍ଡ ଅଛି । ସମୁଦ୍ର କୂଳରେ ଯେତିକି ସଂଖ୍ୟାରେ ବାଲି ରହିଛି, ସେତିକି ସଂଖ୍ୟାରେ ବ୍ରହ୍ମାଣ୍ଡ ମଧ୍ୟ ଅଛି । ସେହି ପରମାର୍ଥ ବା ଭଗବାନ ହେଉଛନ୍ତି ଅନନ୍ତ କୋଟି ବ୍ରହ୍ମାଣ୍ଡର ନାୟକ । ସାଂପ୍ରତିକ ଯୁଗର ପାଶ୍ଚାତ୍ୟ ବୈଜ୍ଞାନିକମାନେ ମଧ୍ୟ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ଅନନ୍ତ କୋଟି ବ୍ରହ୍ମାଣ୍ଡ ରହିଛି । ଏହି ଅନନ୍ତ କୋଟି ବ୍ରହ୍ମାଣ୍ଡ ସୃଷ୍ଟି ହେବା ପୂର୍ବେ ଯିଏ ଥିଲେ, ସେ ହେଉଛନ୍ତି ପରମାତ୍ମା ଭଗବାନ । ଆମେ ସମସ୍ତେ ତାଙ୍କଠାରୁ ଆସିଚେ ଏବଂ ପରିଶେଷରେ ତାଙ୍କରି ନିକଟକୁ ଫେରିଯିବା । ସେଇ ପରମାତ୍ମାଙ୍କ ପରିଚୟ କିପରି ପାଇବା, ତାଙ୍କ ସହିତ ସମ୍ବନ୍ଧ କିପରି ସ୍ଥାପିତ ହେବ ଏବଂ ଆମେ ସେଠାରେ କିପରି ପହଞ୍ଚିବା, ତାହା ଚିନ୍ତା କରିବା ଆମମାନଙ୍କର ପରମ କର୍ତ୍ତବ୍ୟ ।

ସାଂସାରିକ ଜୀବନରେ ଅନେକ ଦୁଃଖ ସୁଖ, ଚିନ୍ତା ଅଚିନ୍ତା, ସନ୍ତୋଷ ଅସନ୍ତୋଷ, ରାଗ ଦ୍ୱେଷ ଓ କ୍ଲେଶ ଆଦି ରହିଛି । ଶରୀର ଥିଲେ ରୋଗ ଯେପରି ଅନିବାର୍ଯ୍ୟ, ଜନ୍ମ ଥିଲେ ମୃତ୍ୟୁ ମଧ୍ୟ ଅନିବାର୍ଯ୍ୟ । ଏହା ଏକ ଅପୂର୍ଣ୍ଣ ଜୀବନ । ଏ ଅପୂର୍ଣ୍ଣ ବସ୍ତୁରେ ଆମେ ପୂର୍ଣ୍ଣାନନ୍ଦ ଲାଭ କରି ପାରିବା ନାହିଁ । ଶାନ୍ତି, ଆନନ୍ଦ ଓ ତୃପ୍ତି ପାଇବାରେ । ଏ ପ୍ରପଞ୍ଚର କୌଣସି ଶକ୍ତି ନାହିଁ । କିନ୍ତୁ ଯେଉଁ ପରମାର୍ଥ ତତ୍ତ୍ୱ, ଯାହାକୁ ଆମେ ଭଗବାନ ବା ପରଂବ୍ରହ୍ମ ବୋଲି କହୁଛୁ, ତାଙ୍କର ଶରଣାପନ୍ନ ହେଲେ ତତ୍‌କ୍ଷଣାତ୍ ଦୁଃଖ ବିମୋଚନ ହୋଇଯିବ । ଦିବ୍ୟ ଆନନ୍ଦ, ପରମ ଶାନ୍ତି ଓ ଦିବ୍ୟଜ୍ଞାନ ପ୍ରାପ୍ତି ହେବ । ପୁନର୍ବାର ଆମକୁ ଏହି ଜନ୍ମ ମରଣ ଚକ୍ର ଭିତରେ ପେଷି ହେବାକୁ ପଡ଼ିବ ନାହିଁ ।      –''ଭିଦ୍ୟତେ ହୃଦୟ ଗ୍ରନ୍ଥି''–

ଆମ ବାହାରେ ଏବଂ ଭିତରେ ଯେଉଁ ପୂର୍ଣ୍ଣତୃପ୍ତିର ବିକାଶ ଘଟେ, ତାହାହିଁ ହେଉଛନ୍ତି ଭଗବାନ । ଅସୀମ ଆନନ୍ଦ ଓ ପରମ ତୃପ୍ତି ପାଇବା ପାଇଁ ଭଗବାନଙ୍କୁ ଅନୁଭବ କରିବାକୁ ପଡ଼ିବ । ତାଙ୍କୁ ପ୍ରାପ୍ତ କଲେ ଆମର ଜୀବନ ସାର୍ଥକ ହେବ । –ଜନ୍ମସଫଳହେବ । ଏହି ଦିବ୍ୟ ଆନନ୍ଦ ଓ ପରମ ଶାନ୍ତି ଲାଭ କରିବାର ପଥ ଆମ ଶରୀର ମଧ୍ୟରେ ଅନ୍ତଃକରଣ ରୂପରେ ବିଦ୍ୟମାନ ।ଏହା ହେଉଛି ଭାବନାରୁ ଏକ ସୂକ୍ଷ୍ମ ସ୍ତର । ସେଇଠି ମନ ଓ ବୁଦ୍ଧିର ଭୂମିକା ଅତୀବ ଗୁରୁତ୍ୱ ପୂର୍ଣ୍ଣ । ମନ ଓ ବୁଦ୍ଧିର ବିସ୍ତାରରେ ଯେଉଁ ମହତ ଭାବିନା ଜାତ ହେବ, ତାହା ବାହ୍ୟ ଜଗତରେ କର୍ମରେ ପ୍ରତିଫଳିତ ହେବ– ଗତି ଦ୍ରୁତ ହେବ । ଏହି ସାଧନାର ମାର୍ଗ ଭଗବାନ ଆମକୁ ବେଦ, ବେଦାନ୍ତ, ଗୀତା, ଉପନିଷଦ, ଭାଗବତ ପ୍ରଭୃତି ଶାସ୍ତ୍ର ପୁରା-ପୁରାଣରେ ଦେଖାଇଛନ୍ତି ।

ପ୍ରାପଞ୍ଚିକ ଜୀବନକୁ ଆମେ ଏଡ଼େଇ ପାରିବା ନାହିଁ । ଏହା ଯେଉଁ ପରିମାଣରେ ଅପରିହାର୍ଯ୍ୟ, ପ୍ରାପଞ୍ଚିକ ଜୀବନରେ ପରମାର୍ଥ ପ୍ରାପ୍ତ ହେବା ସେହିପରି ଅନିବାର୍ଯ୍ୟ । ଏ ବିଷୟରେ ନିଜେ ବୁଝି ଅନ୍ୟକୁ ବୁଝାଇବା ।ଜ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ।

ପରମାର୍ଥ ସାଧନାରେ ସାଂସାରିକ ଜୀବନରୁ ଆମକୁ ଅଶେଷ ସହଯୋଗ ମିଳିଥାଏ । ଏହାର ଗୂଢ଼ ରହସ୍ୟ ଋଷିମୁନିମାନେ ଆମ ପାଇଁ ରଖି ଯାଇଛନ୍ତି । ଏ ଜଗତକୁ ଆମେ ମନୁଷ୍ୟ ରୂପରେ ଆସିଥିଲେ ସୁଦ୍ଧା ଆମ ଭିତରେ ଅନେକ ପାଶବିକ ପ୍ରବୃତ୍ତି ରହିଛି । ଏହା ଅତୀବ ଭୟଙ୍କର । ପ୍ରପଞ୍ଚରେ ରହି ଏହି ଅନିଷ୍ଟ କାରକ ପ୍ରବୃତ୍ତିଗୁଡ଼ିକୁ ଦମନ କରି ପାରିଲେ, ଆମେ ପରମାର୍ଥ ଲାଭ କରି ପାରିବା (ତେଲେଗୁରୁ ଅନୁବାଦ) ●●●●

ଶିବାନନ୍ଦ ଆଶ୍ରମ, ଶିବାନନ୍ଦ ନଗର . ଋଷିକେଶ (ୟୁ.ପି.)

# ଆଦିବାସୀଙ୍କ ଧର୍ମଧାରାରେ ପ୍ରକୃତି ଓ ପରିବେଶ



-ଡକ୍ଟର ଅମୂଲ୍ୟ ମହାପାତ୍ର

ଆଦିବାସୀମାନେ ସାଧାରଣତଃ ବନବାସୀ । ପ୍ରକୃତି କୋଳରେ ସେମାନଙ୍କର ଜନ୍ମ । ସେହି ପ୍ରକୃତି ମାଠାରୁ ଜନ୍ମନେଇ ତାହାରି କୋଳରେ ସେମାନେ ଜୀବନ ଅତିବାହିତକରି ପରିଶେଷରେ ସେହି ମାର ବକ୍ଷରେ ସେମାନେ ଶେଷ ନିଃଶ୍ୱାସ ତ୍ୟାଗ କରିଥାନ୍ତି । ତେଣୁ ସେମାନେ ପ୍ରକୃତି ସହିତ ଓତଃପ୍ରୋତଃଭାବରେ ଜଡ଼ିତ । ଆଦିବାସୀଙ୍କ ଜୀବନ ଓ ଜୀବିକା ପ୍ରକୃତି ଉପରେ ସଂପୂର୍ଣ୍ଣ ନିର୍ଭରକରେ । ସେମାନଙ୍କର ଦେହ, ମନ ଓ ଆତ୍ମା ପ୍ରକୃତି ସହିତ ବିଶେଷଭାବରେ ସଂଶ୍ଳିଷ୍ଟ । ପ୍ରକୃତିକୁ ବାଦ୍‌ଦେଲେ ଆଦିବାସୀଙ୍କ ଜୀବନକୁ କଳ୍ପନା କରିବା ଅସମ୍ଭବ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ସେମାନେ ପ୍ରକୃତିର ସାହାଯ୍ୟ ଓ ସହାୟତା ଲାଭକରିଥାନ୍ତି । ବଣପାହାଡ଼ଘେରା ପ୍ରକୃତି ମାତାର ମୁକ୍ତ ବକ୍ଷରେ ବାସ କରୁଥିବାରୁ ସେମାନଙ୍କୁ ବନବାସୀ ବା ଗିରିଜନ କୁହାଯାଏ । ସେହି ବନବାସୀ ଗିରିଜନ ଭାରତର ପ୍ରାୟ ପ୍ରତ୍ୟେକ ସ୍ଥାନରେ ଦେଖାଦେଉଥାନ୍ତି । ଏହି ଭାରତବର୍ଷ ପ୍ରାକୃତିକ ଶୋଭା ଓ ସଂପଦରେ ଭରପୁର ।

ପାଶ୍ଚାତ୍ୟ ଦାର୍ଶନିକ ମେକ୍ସମୁଲର ତାଙ୍କର ରଚିତ ପୁସ୍ତକ "ଇଣ୍ଡିଆ ହ୍ୱାଟ କେନ୍ ଇଟ ଟିଚ୍ ଅସ୍"ରେ ଲେଖିଛନ୍ତି– "ଯେତେବେଳେ ମୁଁ ବିଶ୍ୱବ୍ରହ୍ମାଣ୍ଡରେ ଏଭଳି ଏକ ଦେଶକୁ ଖୋଜିବାକୁ ଚତୁର୍ଦ୍ଦିଗରେ ଆଖିବୁଲାଉଥାଏ, ଯାହାକୁ କି ପ୍ରକୃତିଦେବୀ ଆପଣାର ସମସ୍ତ ବୈଭବ, ପରାକ୍ରମ ଏବଂ ସୌନ୍ଦର୍ଯ୍ୟ ମୁକ୍ତହସ୍ତରେଦେଇ ତାହାକୁ ପୃଥିବୀର ସ୍ୱର୍ଗରୂପରେ ଗଢ଼ିତୋଳିଛି, ସେତେବେଳେ ମୋର ଦୃଷ୍ଟି ଭାରତ ଉପରେ ପଡ଼େ ।"

ଭାରତ ପ୍ରକୃତିର ଲୀଳାସ୍ଥଳୀ, ଯାହାକୁ ପ୍ରକୃତିଦେବୀ ନିଜର ବିଶେଷ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣକରି ରଖିଛି ଯେଉଁଠି ଗଙ୍ଗା ଏବଂ ଯମୁନାର ଧାରା ସଂପୂର୍ଣ୍ଣ ଦେଶକୁ ନିଜର ଭୌତିକ ଓ ଆଧ୍ୟାତ୍ମିକ ଅବଦାନରେ ସିକ୍ତକରିଦେଉଛି, ଯାହାର ହିମାଳୟ ଶିଖରରୁ ଦିବ୍ୟଚେତନା ପ୍ରବାହ ସତତ ସଂଚାଳିତ ହେଉଛି, ଯେଉଁଠି ମୁନିଋଷିଙ୍କର ଆଧ୍ୟାତ୍ମିକ ସାଧନା ଭାରତର ସଂସ୍କୃତି ଓ ପରିବେଶକୁ ପ୍ରଭାବିତକରି ରଖିଛି, ଯେଉଁ ତିନି ସାଗରର ସମନ୍ୱୟରେ କନ୍ୟାକୁମାରୀ ମୁଣ୍ଡଟେକିଉଠିଛି ସେହି ସ୍ୱର୍ଗାଦପି ଗରିୟସୀ ପ୍ରକୃତିମାତାଙ୍କ କୋଳରେ ଆମର ଆଦିବାସୀ ଭାଇଭଉଣୀମାନେ ଅମୃତର ସନ୍ତାନଭାବରେ ଅବସ୍ଥାନ କରୁଛନ୍ତି ।

ପ୍ରକୃତିମାତାର ସେମାନେ ଆଦିମ ସନ୍ତାନ । ସେମାନଙ୍କ ମନରେ ଦ୍ୱନ୍ଦ୍ୱନାହିଁ କି ଛଳନାହିଁ । ସରଳ ଓ ଅମାୟିକ ସେମାନଙ୍କର ଜୀବନ । ତାଙ୍କଠାରେ ହୃଦୟର କପଟତା ନାହିଁ ଓ ଅପବିତ୍ରତାର ଲେଶ୍ ନାହିଁ । ଝରଣାର ପାଣିଭଳି ସେମାନେ ସ୍ୱଚ୍ଛ ଓ ପବିତ୍ର । ଘନବନାନୀର ବୃକ୍ଷତଳେ ସେମାନେ ହୃଦୟରୁ ଧ୍ୱନି ସୃଷ୍ଟିକରି ଜୀବନର ସଙ୍ଗୀତ ଶୁଣନ୍ତି । ସେହି ମଧୁର ସଙ୍ଗୀତରେ ଥାଏ ଅମୃତ ସନ୍ତାନର ଆତ୍ମା ଓ ହୃଦୟ । ତାହାରି ମଧ୍ୟରେ ଗୁଞ୍ଜରିତ ହୋଇଥାଏ ବୈଦିକ ମନ୍ତ୍ରର ଓଙ୍କାରଧ୍ୱନି । ତାହା ସେମାନଙ୍କ ଜୀବନକୁ ପୂତ ଓ ପବିତ୍ର କରିଥାଏ । ସେହି ପୂତ ଓ ପବିତ୍ରମୟ ହୃଦୟରୁ ସୃଷ୍ଟିହୁଏ ଆଦିବାସୀମାନଙ୍କର ଧର୍ମଧାରା, ପର୍ବପର୍ବାଣି ଓ ଯାନିଯାତ୍ରା ।

ଆଦିବାସୀଙ୍କ ଜୀବନ ଯେଉଁ କେତୋଟି ମୁଖ୍ୟ ଅବସ୍ଥା ମଧ୍ୟରେ ଗତିକରେ ତାହା ମଧ୍ୟରେ ସେମାନଙ୍କର ଧର୍ମାନୁରାଗ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସେମାନଙ୍କର ଧର୍ମ ଅତି ପ୍ରାଚୀନ । ବାଲ୍ମୀକି ରାମାୟଣରେ ବର୍ଣ୍ଣିତ "ମା ନିଷାଦ ପ୍ରତିଷ୍ଠାତ୍ୱମଗମ ଶାଶ୍ୱତୀ ସମାଃ"–ଏହା ନିଷାଦ ଜାତିର ଓ ସେମାନଙ୍କ ଧର୍ମର ପ୍ରାଚୀନତା ସୂଚନାଦିଏ । ସେହିପରି ମଧ୍ୟ ଐତରେୟ ଉପନିଷଦ, ମହାଭାରତ, କାଦମ୍ବରୀ, ବୃହତ୍ କଥାସାଗର ଓ ଜାତକକଥା ପ୍ରଭୃତିରେ ଶବରମାନଙ୍କର ଧର୍ମଧାରା ଓ ଜୀବନ ସମ୍ବନ୍ଧରେ ବର୍ଣ୍ଣନା ଅଛି । ତତ୍‌କାଳୀନ ସଂସ୍କୃତ କବି ଯଥା :– କାଳିଦାସ, ମାଘ ପ୍ରଭୃତି ସେମାନଙ୍କର କାବ୍ୟରେ ଶବର ଜାତିର ପ୍ରାକୃତିକ ଜୀବନ କିପରି ଧର୍ମ ସହିତ ସଂଶ୍ଳିଷ୍ଟ ତାହା ଉଲ୍ଲେଖ କରିଯାଇଛନ୍ତି । ତେଣୁ ଆଦିବାସୀ ଧର୍ମଧାରା ଓ ପର୍ବପର୍ବାଣି ଆମ ଭାରତର ସଂସ୍କୃତିର ମୂଳଦୁଆ,–ଯାହା ଆମର ପୁରାଣ, ଶାସ୍ତ୍ର ତଥା ମହେଞ୍ଜୋଦାରୋ, ହରପା ଏବଂ ଅଜନ୍ତା ଏଲୋରାରେ ଦେଖିବାକୁ ମିଳିଥାଏ । ଏତଦ୍‌ବ୍ୟତୀତ ଭାରତର ଇତିହାସ ପୃଷ୍ଠା ଲେଉଟାଇଲେ ଜଣାଯାଏ ଯେ ଆର୍ଯ୍ୟ, ଅନାର୍ଯ୍ୟ ଓ ଦ୍ରାବିଡ଼ ପ୍ରଭୃତି ସମସ୍ତେ ସେହି ବନବାସୀମାନଙ୍କପରି ପ୍ରକୃତିର କୋଳରେ ବସତି ସ୍ଥାପନ କରୁଥିଲେ । ଭାରତୀୟ ଶାସ୍ତ୍ରମାନଙ୍କରେ ଦେଖିବାକୁମିଳେ ଆମର ପୂର୍ବପୁରୁଷ ମୁନିଋଷିମାନେ ଝରଣାର ପାହାଡ଼ ଓ ପର୍ବତର ଗୁହାରେ ସାଧନାରତରହି, ଝରଣାର ଜଳ ଓ ବୃକ୍ଷର ଫଳ ମୂଳ ଖାଇ ଆଧ୍ୟାତ୍ମିକ ଚିନ୍ତାର ପଥରେ ଅଗ୍ରସର ହେଉଥିଲେ । ଅଲେଖଧର୍ମର ପଥପ୍ରଦର୍ଶକ ଭୀମାଭୋଇ

ଓ ଅନ୍ୟ ସନ୍ନ୍ୟାସୀମାନେ ବହୁତ ବଳ୍କଳପିନ୍ଧି, ଗନ୍ଧମର୍ଦ୍ଦନରେ ଯଜ୍ଞ ସମ୍ପନ୍ନ, କଠିନ ଓ କୃଚ୍ଛ୍ର ତପ ସାଧନ କରୁଥିଲେ । ସେହିପରି ମଧ୍ୟ କବୀର, ଏକନାଥ ଓ ରାମଦେବ ପ୍ରଭୃତି ଆଦିବାସୀ ସଂପ୍ରଦାୟର ଧର୍ମପ୍ରାଣ ବ୍ୟକ୍ତିମାନେ ଚିପଡି ପ୍ରକୃତି ମାତାର ଆଶୀର୍ବାଦରେ ଯୁଗଯୁଗପାଇଁ ଅମରହୋଇ ରହିଛନ୍ତି । ତେଣୁ ଆଦିବାସୀମାନଙ୍କର ଆରଣ୍ୟକ ସଂସ୍କୃତି ଅମର ଏହି ଭାରତଭୂମିର ମହାନ୍ ସଂସ୍କୃତି । ଆଦିବାସୀ ଜୀବନ ଓ ଦର୍ଶନରୁ ଅନେକ କିଛି ନୂତନ ଦିଗଦର୍ଶନର ସନ୍ଧାନ ମିଳିଥାଏ ।

ଆଦିବାସୀମାନଙ୍କର ସାମାଜିକ ଜୀବନରେ ଧର୍ମର ଗୁରୁତ୍ୱ ଯଥେଷ୍ଟ ବେଶୀ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେମାନଙ୍କର ସମସ୍ତ କାର୍ଯ୍ୟକଳାପ ତାଙ୍କର ଧର୍ମଧାରା ଉପରେ ପର୍ଯ୍ୟବେଶିତ ହୋଇଥାଏ । ହିନ୍ଦୁ ଜାତିର ସମସ୍ତ ସଂସ୍କାର ସହିତ ଆଦିବାସୀମାନଙ୍କର ଯଥେଷ୍ଟ ସମ୍ବନ୍ଧ ରହିଥାଏ । ସେମାନେ ଯେଉଁ ପରିବେଶରେ ବାସକରିଥାଆନ୍ତି ସେହି ପ୍ରକୃତିମାତା ତାଙ୍କର ବିଭିନ୍ନରୂପରେ ଆଦିବାସୀମାନଙ୍କୁ ସାହାଯ୍ୟ କରିଥାନ୍ତି । ଯେପରି ରହିବାପାଇଁ ପାହାଡ଼ର ତଥା ବୃକ୍ଷର ଆଶ୍ରୟ ଦରକାର ସେହିପରି ଖାଦ୍ୟ-ପେୟ ଓ ବସ୍ତ୍ର ମଧ୍ୟ ଦରକାର । ସେମାନେ ପ୍ରକୃତିର ଦୟାରୁ ପାଉଥାନ୍ତି । ତେଣୁ ସେମାନେ ପାହାଡ଼, ପର୍ବତ, ବୃକ୍ଷ, ନଦୀ ଝରଣା ପ୍ରଭୃତିକୁ ଦେବତା ଭାବରେ ପୂଜାକରିଥାନ୍ତି । ସେହି ବଣଦେବତା, ଝରଣାଦେବତା, ପାହାଡ଼ଦେବତା ବ୍ୟତୀତ ସେମାନେ ସୂର୍ଯ୍ୟଦେବତା ଓ ଚନ୍ଦ୍ରଦେବତାଙ୍କୁ ମଧ୍ୟ ପୂଜା-କରିଥାନ୍ତି । ଯେଉଁ ଆକାଶତଳେ ସେମାନେ ବାସକରନ୍ତି ଓ ଯେଉଁ ମାଟିରେ ସେମାନେ ଚାଷକରି ଅଥବା ଫଳମୂଳଖାଇ ବଞ୍ଚି ରହନ୍ତି–ସେହି ଆକାଶକୁ ସେମାନେ ଦେବତା ଓ ମାଟିକୁ ଧରତିମାତା ଭାବରେ ଭକ୍ତିର ସହିତ ପୂଜା ଆରାଧନା କରିଥାନ୍ତି ।

ଆଦିବାସୀମାନେ ବହୁ ଦେବଦେବୀରେ ବିଶ୍ୱାସ କରିଥାନ୍ତି । ଧର୍ମପ୍ରତି ସେମାନଙ୍କର ଅଗାଧ ସ୍ନେହ ଓ ଭକ୍ତି ରହିଥାଏ । ଭାରତର ପ୍ରତ୍ୟେକ ଜାତିର ଆଦିବାସୀମାନେ ତାଙ୍କର ଧର୍ମ ସହିତ ପ୍ରକୃତି ଓ ପରିବେଶକୁ ସଂଯୋଗ କରିଥାନ୍ତି । ତାଙ୍କର ବିଭିନ୍ନ ଦେବଦେବୀଙ୍କୁ ସେମାନେ ଭିନ୍ନ ଭିନ୍ନ ଭାବରେ ନାମକରଣ କରିଥାନ୍ତି । ଯେପରି କନ୍ଧମାନେ ସୂର୍ଯ୍ୟଦେବତାଙ୍କୁ ତାଙ୍କ ଭାଷାରେ "ବେଲାପେନୁ" କହୁଥିଲାବେଳେ ମୁଣ୍ଡାମାନେ 'ସିଙ୍ଗବୋଙ୍ଗା' ଓ ସାନ୍ତାଳମାନେ ବୋଙ୍ଗାକହିଥାନ୍ତି । କିନ୍ତୁ ଭୂୟାଁ ଆଦିବାସୀମାନେ ସୂର୍ଯ୍ୟଦେବଙ୍କୁ 'ଧରମ ଦେବତା' ବୋଲି କହନ୍ତି । କନ୍ଧଜାତିର ଲୋକମାନେ ଦେବଦେବୀଙ୍କର ନାମ ପଛରେ 'ପେନୁ' ଶବ୍ଦ ପ୍ରୟୋଗ କରିଥାନ୍ତି । ସେମାନେ ବଣ ଦେବତାଙ୍କୁ 'ଶସପାପେନୁ', ଝରଣା ଦେବତାଙ୍କୁ 'ଜୁଗୁପେନୁ', ପାହାଡ଼ ଦେବତାଙ୍କୁ 'ସୋରୁପେନୁ', ଗ୍ରାମଦେବତାଙ୍କୁ 'ଜାକେରୁପେନୁ', ଭୂମିଦେବତାଙ୍କୁ 'ବେରାପେନୁ' ଓ ଚନ୍ଦ୍ର ଦେବତାଙ୍କୁ 'ଦାଜୁପେନୁ' କହିଥାନ୍ତି ।

ବିଭିନ୍ନ ଦେବାଦେବୀ ବ୍ୟତୀତ ନିଜର ବଣପାହାଡ଼ ଭରା ଇଲାକାରେ ରହୁଥିବା ଭୂତପ୍ରେତ, ରାକ୍ଷସ ଓ ପିଶାଚ-ମାନଙ୍କୁ ପୂଜ୍ୟଦେବତାବୋଲି ବିଶ୍ୱାସ କରନ୍ତି । ଏହାବ୍ୟତୀତ ଆଦିବାସୀମାନେ ତାଙ୍କର ପୂର୍ବପୁରୁଷଙ୍କ ଆତ୍ମାକୁ ମଧ୍ୟ ତାଙ୍କର ବିଭିନ୍ନ ପର୍ବ ସମୟରେ ପୂଜା କରିଥାନ୍ତି । ସେମାନଙ୍କର ଗ୍ରାମରେ ଗ୍ରାମଦେବତା ବା ଗ୍ରାମଶ୍ରୀ ପୂଜା ପାଆନ୍ତି । ବିଭିନ୍ନ ପର୍ବପର୍ବାଣୀ ସମୟରେ ଆଦିବାସୀମାନେ ଗ୍ରାମଦେବତାଙ୍କଠାରେ ଗୀତଗାଇ ବାଜାବଜାଇ ବିଭିନ୍ନ ଭୋଗରାଗ ପ୍ରଦାନକରି ତାଙ୍କୁ ସନ୍ତୋଷ କରିଥାନ୍ତି । ନାହେଲେ ତାଙ୍କର ବିଶ୍ୱାସ ଗ୍ରାମଦେବୀ କ୍ରୋଧହୋଇ ବିଭିନ୍ନ ରୋଗବ୍ୟାଧି ଓ ଅମଙ୍ଗଳ ପ୍ରଭୃତି କରିଥାନ୍ତି । ସମସ୍ତ ଦିଅଁ ଦେବତାଙ୍କଠାରେ ପ୍ରକୃତି ପ୍ରଦତ୍ତ ପଦାର୍ଥ ଯଥା–କୁକୁଡ଼ା, ଛେଳି, ମେଣ୍ଢା, ମହିଷି, ପାଣିକଖାରୁ, କାକୁଡ଼ି ପ୍ରଭୃତିକୁ ବଳିଦେଇ ଭୋଗ କରାଯାଏ । ସେହି ଗ୍ରାମଦେବତା ଓ ବସୁମାତାଙ୍କଠାରେ ବଳି ଦେବାଦ୍ୱାରା ଗ୍ରାମର ଅମଙ୍ଗଳ ହୁଏନାହିଁ ଓ ଭଲ ଫସଲ ହୁଏବୋଲି ତାଙ୍କର ଦୃଢ଼ ଧାରଣା । ସେଥିପାଇଁ ଆଦିବାସୀମାନେ ଇଂରେଜ ଶାସନ ସମୟରେ ମଣିଷବଳି ବା ମେରିଆ ଦିଅଁଙ୍କଠାରେ ଦେଉଥିଲେ । କାହାରି ଦେହ ଅସୁସ୍ଥହେଲେ ଆଦିବାସୀମାନେ ଗ୍ରାମର ଦେହୁରି ରାସ୍ତାରେ ପୂଜା କରନ୍ତି । ଆଜିଯାଏଁ ବସନ୍ତ, ମହାମାରୀ ପ୍ରଭୃତି ବିଭିନ୍ନ ରୋଗରେ ସେମାନେ ଦିଅଁଙ୍କୁ ପୂଜା କରୁଥିବାର ଦେଖିବାକୁ ମିଳେ । କେତେକ ଅବସ୍ଥାରେ ସେମାନେ ଗଛର ଛାଲି, ପତ୍ର, ମୂଳ ଓ ଫଳ ତଥା–ଲତା ଗୁଳ୍ମକୁ ଔଷଧଭାବରେ ଗ୍ରହଣକରି ଆରୋଗ୍ୟ ଲାଭ କରିଥାନ୍ତି ।

ଆଦିବାସୀଙ୍କର କେତେକ ଦେବତାଙ୍କର ନାମ ପର୍ବତ, ନଦୀ ଓ ଗ୍ରାମର ନାମାନୁସାରେ ହୋଇଥାଏ । ବୈତରଣୀ ନଦୀ ନାମ ଅନୁସାରେ ଜୁଆଙ୍ଗମାନେ ବୋଇତିନିପାଟ, ବୋଡ଼ିପୋଶା ଗ୍ରାମର ନାମ ଅନୁସାରେ 'ବୋଶି ପୋଶିଆରକ୍' ଦେଇଥାନ୍ତି । ସେହିପରି ମାଲ୍ୟଗିରି ପାହାଡ଼ ନାମାନୁସାରେ 'ମାଲ୍ୟଗିରିପାଟ', ରାମଗିରି ପାହାଡ଼ ଅନୁସାରେ 'ରାମଗିରିପାଟ', ଗନ୍ଧମାର୍ଦ୍ଦନ ପାହାଡ଼ ଅନୁସାରେ 'ଗନ୍ଧମାର୍ଦ୍ଦନପାଟ' ହୋଇଥାଏ । ଏହାବ୍ୟତୀତ ଆଦିବାସୀମାନେ ହିନ୍ଦୁ ଦେବାଦେବୀ ଯଥା:–ଜଗନ୍ନାଥ, ମହାଦେବ, ରାମ, କୃଷ୍ଣ, ଲକ୍ଷ୍ମୀ ଓ ଦୁର୍ଗାଦେବୀଙ୍କୁ ପୂଜା ଆରାଧନା କରିଥାନ୍ତି । ଏପରିକି ଭୂୟାଁମାନଙ୍କର ୮୪ ପ୍ରକାର ଦେବତା ଅଛନ୍ତି ।

ଶ୍ରୀଜଗନ୍ନାଥ ନୀଳମାଧବ ରୂପରେ ନୀଳଗିରି ବା ନୀଳସୁନ୍ଦର ପାହାଡ଼ ଉପରେ ଶବର ବିଶ୍ୱାବସୁଙ୍କ ଦ୍ୱାରା ପୂଜା ପାଉଥିବାର କିମ୍ବଦନ୍ତୀ ରହିଛି । ସେହି ଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ଦାରୁଦେବତା । ସେହି ଦାରୁ ଦେବତାଙ୍କୁ ଶବର-ମାନେ ପୂଜା କରୁଥିବା ବିଷୟ ସାରଳା ଦାସ ତାଙ୍କର ରଚିତ ମହାଭାରତରେ ବର୍ଣ୍ଣନ କରିଛନ୍ତି ।

ବୋଇଲେ ମାଧବ ତାକୁ ଶୁଣରେ କିରାତ,
ମୁହିଁ ଯେ ଅନାଦି ନାଥ ସ୍ୱରୂପ ଏମନ୍ତ ।
କଳିକାଳ ଲାଗି ମୁହିଁ ହୋଇଅଛି ଗୋପ୍ୟ,
ଏଠାରେ ହୋଇବି ମୁହିଁ ପାଷାଣ ସ୍ୱରୂପ ।।

ଶାକମ୍ଭରୀ ଶ୍ରୀଯା କିପରି ପ୍ରାକୃତିକ ପରିବେଶ ମଧ୍ୟରେ ଶବରୀ ନାରାୟଣଙ୍କୁ ବିଭିନ୍ନ ନୈବେଦ୍ୟ ଦେଇ ପୂଜା କରୁଥିଲେ ତାହା ମହାଭାରତର ମୁଷଳୀ ପର୍ବରେ ଉଲ୍ଲେଖ କରାଯାଇଛି ।

ଗଞ୍ଜା, ମୃଗମାଂସ ଶାକପତ୍ର ତୋଳକରି,
ଲବଣ ବେଶର ଦହି ସଙ୍ଗତରେ ଭରି ।।
ଚନ୍ଦ୍ରକଳ୍ପ ତିଏ ବାଟି ପତ୍ରେ ବାଢ଼ିକରି,
ପ୍ରଭଞ୍ଜ ଆନନ୍ଦେ କାହା ପୋଡ଼ି ପାକସାରି ।।

ଆଦିବାସୀମାନଙ୍କର ପର୍ବପର୍ବାଣୀ, ନାଚଗୀତ, ଧର୍ମର ନୀତି ନିୟମ ଅନୁସାରେ ପ୍ରାକୃତିକ ପରିବେଶ ମଧ୍ୟରେ ପ୍ରକାଶ ଲାଭ କରିଥାଏ । ସେମାନଙ୍କର ବିଭିନ୍ନ ପର୍ବପର୍ବାଣୀ ମଧ୍ୟରେ ପୌଷପର୍ବ, ଚୈତ୍ରପର୍ବ, ବିଶେଷ ଆକର୍ଷଣୀୟ । ଏହି ସମସ୍ତ ପର୍ବ ସେମାନଙ୍କର କୃଷାଦି କାର୍ଯ୍ୟ ଓ ଶୀକାର ସହିତ ଜଡ଼ିତ ହୋଇଥାଏ । ଚୈତ୍ର ମାସରେ କୃଷକାର୍ଯ୍ୟ ଆରମ୍ଭ ହୁଏ । ସେତେବେଳେ ସେମାନଙ୍କର ଚୈତ୍ରପର୍ବ ବେଶ ହର୍ଷ ଉଲ୍ଲାସ ମଧ୍ୟରେ ପାଳନ କରାଯାଏ । ଏହି ଚଇତି ପର୍ବରେ ସେମାନେ ସଲପ ଗଛର ରସ ପିଇ, ଶୀକାର କରି ଆଣିଥିବା ପଶୁ ପକ୍ଷୀର ମାଂସଖାଇ ବିଭିନ୍ନ ବେଶ ଧାରଣ କରି ଗୀତଗାଇ ନାଚନ୍ତି । ବିଭିନ୍ନ ବାଦ୍ୟ ଯନ୍ତ୍ରର ତାଳେ ତାଳେ ସେମାନଙ୍କର ନାଚଗୀତ ବେଶ ଚିତ୍ତାକର୍ଷକ ହୋଇଥାଏ । ପୌଷ ମାସରେ କୃଷ ଅମଳ ପରେ ଯେଉଁ ପର୍ବ ହୁଏ, ତାହାର ନାମ ପୁଷପର୍ବ । ଏହି ପର୍ବରେ ଆଦିବାସୀମାନେ ବଣ ଓ ଜଙ୍ଗଲରୁ ଆଦାୟ କରିଥିବା ସୁଆଁ, ମାଣ୍ଡିଆ, ହରଡ଼ ଓ ଅନ୍ୟାନ୍ୟ ଫଳ ମୂଳକୁ ଦିଅଁକୁ ସମର୍ପଣ କରି ନୂଆଖିଆ କରନ୍ତି । ତାହାପରେ ସେମାନେ ବେଶ୍ ଧୁମଧାମରେ ନାଚଗୀତ ମଧ୍ୟରେ ଏହି ପୌଷପର୍ବ ପନ୍ଦରଦିନ ଧରି ପାଳନ କରନ୍ତି । ସେହି ଗୀତ, ନୃତ୍ୟ, ବାଦ୍ୟ, ଆଦିବାସୀଙ୍କର ଜୀବନର ଅବିଛେଦ୍ୟ ଅଙ୍ଗ । ଯୁବକ ଯୁବତୀମାନେ ମିଳିମିଶି ଗୀତନାଚରେ ଅଂଶ ଗ୍ରହଣ କରିଥାନ୍ତି । ଆଦିବାସୀମାନଙ୍କର ଯେଉଁ କେତୋଟି ନୃତ୍ୟ ସଙ୍ଗୀତ ବିଶେଷ ଲୋକପ୍ରିୟ ସେଗୁଡ଼ିକ ହେଲେ : ଦଣ୍ଡନାଚ, ଡ଼ାଲଖାଇ, ରସରକେଲି, ଝୁମରଝୁମା, ଚେରଛେରା, ଝୁମୁରା ଓ ଘୁମୁରା । ଦଣ୍ଡନାଚ ଶୈବଧର୍ମ ତଥା ବୌଦ୍ଧ ସମ୍ପ୍ରଦାୟର ଉତ୍ପତ୍ତି ବୋଲି ମନେ ହୁଏ । ଡ଼ାଲଖାଇ ନାଚ ଅଶ୍ୱିନମାସ ଦୁର୍ଗାଷ୍ଟମୀ ଦିନ ଗ୍ରାମଦେବୀଙ୍କଠାରେ ପରିବେଷଣ କରାଯାଏ । ସେହି ଡ଼ାଲଖାଇ ଗୀତରେ ପ୍ରକୃତି ବର୍ଣ୍ଣନା ଓ ରାଧାକୃଷ୍ଣ ପ୍ରେମ ମୂଳକ ବିଷୟ ସ୍ଥାନ ପାଇଥାଏ । ଏହି ଡ଼ାଲଖାଇ ପଶ୍ଚିମ ଓଡ଼ିଶାର ଏକ ଆଦିବାସୀ ନୃତ୍ୟ ।

ଡ଼ାଲଖାଇ ରେ...... ଡ଼ାଲ ଖାଇରେ......
ଜବାଟ ତଳେ ସିନା ସୁବର୍ଣ୍ଣ ଥାଏ,
ସେ ଦିନର କଥା କାଉ ମନ୍ତୁ ନ ଯାଏ
ପୁରୁକୁ ପାଇଲି ବିଲରେ ଥାଇ
ଛାଡ଼ ବୋଇଲେ ପ୍ରଭୁ ଛାଡ଼ିଲ ନାଇ
ଚିଲ ଚିଲ ମୋର ହାତୁ ପଲଇ ଗଲ
ଡ଼ାଲ ଖାଇ ରେ ।।

ଡ଼ାଲ ଖାଇ ରେ ......
କୃଷ୍ଣ ଯାଉଥିଲେ ଯମୁନା କୂଳ,
ରାଧା ଯାଉଥିଲେ ଆଣିବେ ଜଳ ।
ଧରିନେଲେ ହାତ କଲ କହ୍ନାଇ
ଛାଡ଼ ବୋଇଲେ ସେ ଛାଡ଼ିଲ ନାହିଁ
ଯୁବା ବୟସରେ ନଥପିଲ,
ଦେହ ତାର କଲ ଜଲ ।।
ଡ଼ାଲ ଖାଇ ରେ ........ ଇତ୍ୟାଦି ଇତ୍ୟାଦି ।

ସେହିପରି ଆଦିବାସୀମାନଙ୍କର ରସରକେଲି ଗୀତରେ ସେଥିରେ ପ୍ରକୃତିକୁ ବର୍ଣ୍ଣନା କରାଯାଇ ଗ୍ରାମଦେବୀଙ୍କଠାରେ ପରିବେଷଣ କରାଯାଇଥାଏ ।

ରସର କେଲି ରେ ......... ରସର କେଲିରେ
ରସକୁ ରସିଆ କିରେ ଧାନଫୁଲ ବସିଆ,
ମନ କଲେ ଯେନି ଦେମି ସୁନାର ଫାସିଆଁ ।।
ସୁନାର ଫାସିଆ ନନି ହଜି ନଶି ଯିବା,
ଅଶ୍ଚାକେ ଗୁନ୍ଥି ଦେଲେ ଛକଲି, ଯୁଗ ଯୁଗ ଯିବା ।।
ରସ ଦେ ଚହଲଇ ରେ,
ରସ ଦେ ଚହଲଇ ରେ ।।

ସେହିପରି ଆଦିବାସୀମାନଙ୍କର ଅନ୍ୟ ଏକ ପ୍ରାକୃତିକ ପରିବେଶ ବର୍ଣ୍ଣିତ ନୃତ୍ୟ ଗୀତ ହେଉଛି ଝୁମରଝୁମା । ଏହା ବେଶ୍ ଉପଭୋଗ୍ୟ ଓ ଆକର୍ଷଣୀୟ ।

ଝୁମରୁ ଝୁମାରେ ତାଝୁମ୍‌ଝୁମାରେ
ଉଆଡ଼େ ପର୍ବତ ସେରେ ସେଆଡ଼େ ପର୍ବତ

ମଝିର ପର୍ବତେ ଯେରେ ଘଲୁନୀର ଘର
ଝୁମୁରୁ ଝୁମାନେ ତାଝୁମ୍ ଝୁମାନେ ।।
ଇତ୍ୟାଦି

ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଆଧ୍ୟାତ୍ମିକ ବିପୁଳ ସଂପଦର ଖଣି ଏହି ସେହି ଭାରତବର୍ଷ । ଯାହାର ସେହି ପ୍ରାକୃତିକ ପରିବେଶରେ ଅବଗାହନ କରି ଆଦିବାସୀମାନେ ପ୍ରତ୍ୟେକ ଜୀବ ଓ ବସ୍ତୁ ମଧ୍ୟରେ ଈଶ୍ୱରଙ୍କର ଅସ୍ତିତ୍ୱ ଉପଲବ୍ଧି କରିଥାନ୍ତି । ଉପନିଷଦର ସର୍ବମ୍ ଖଳ୍ୱିଦଂ ବ୍ରହ୍ମ ଓ ବସୁଧୈବ କୁଟୁମ୍ବକମ୍ ନୀତିରେ ସେହି ଆଦିବାସୀମାନଙ୍କର ଜୀବନ ଗଢ଼ା । ତାଙ୍କର ଧର୍ମ ହେଉଛି ମାନବ ଧର୍ମ ବା ଜୀବଧର୍ମ ।

ବୈଭବ ପ୍ରାଚୁର୍ଯ୍ୟ ସେହି ଘଞ୍ଚ ଅରଣ୍ୟାନୀ ଓ ପାହାଡ଼ ପର୍ବତ ମଧ୍ୟରେ ରହି ଆଦିବାସୀମାନେ ଭକ୍ତିରାଧନାରେ ଏକାଗ୍ରତା ହାସଲ କରିଥାନ୍ତି । ତନ୍ତ୍ରମନ୍ତ୍ର ସାଧନାରେ ସେମାନେ ଅତି ଧୁରନ୍ଧର ଓ ସିଦ୍ଧ । ଶାବରୀ ତନ୍ତ୍ରର ସାଧନା ମୁଖ୍ୟତଃ ଆଦିବାସୀମାନଙ୍କଠାରେ ଦେଖିବାକୁ ମିଳିଥାଏ । ଘଞ୍ଚ ନିବିଡ଼ ଅରଣ୍ୟାନୀ ଆଦିବାସୀର ଏକାନ୍ତ ବିଶ୍ୱାସର ଶୁଚିପୂତ ବାସଭୂମି । ସତେ ଯେପରି ସେହି ପ୍ରକୃତି ଘେରା ଚିରହରିତ୍ ବନାନୀ ତାର ଆପଣାର ନନ୍ଦନକାନନ । ତାର ଘନୀଭୂତ ବିଶ୍ୱାସର ଦେବଭୂମି ।

ଆଦିବାସୀମାନେ ଧର୍ମବିଶ୍ୱାସୀ ହୋଇଥିବାରୁ କେତେକ ବୃକ୍ଷ ଯଥା, ବରଗଛ, ସାହାଡ଼ା ଗଛ, ଓସ୍ତ ଗଛ, ବଉଳ ଓ ତୁଳସୀକୁ ସେମାନେ ପୂଜା କରନ୍ତି । ସେହିପରି ଅନ୍ୟ କେତେକ ଗଛ ମୂଳରେ ସେମାନେ ତାଙ୍କର ଗ୍ରାମ ଦେବୀଙ୍କୁ ରଖିଥାନ୍ତି । ଦେଶ୍ ବୃକ୍ଷକୁ ଦିଅଁ ଭାବି ସେମାନେ କାଟନ୍ତି ନାହିଁ । ବୃକ୍ଷ ଛେଦନ ହେଉଛି ପାପ, ଏହା ତାଙ୍କର ଧାରଣା । ମାତ୍ର ଆଜିକାଲି କେତେକ ଆଦିବାସୀ ସ୍ୱାର୍ଥପର ଆଧୁନିକ ବ୍ୟକ୍ତିଙ୍କ ପ୍ରରୋଚନାରେ ପଡ଼ି ଗଛ କାଟିବାକୁ ଆରମ୍ଭ କଲେଣି । ସେମାନେ ଅବା କେତେକ ଜାଣେଣି ଗଛକୁ କାଟି ତାଙ୍କର ଆବଶ୍ୟକ ପୂରଣ କରିଥାଆନ୍ତି । ମାତ୍ର ଫଳ ବୃକ୍ଷକୁ ସେମାନେ କାଟନ୍ତି ନାହିଁ ସେମାନେ ବୃକ୍ଷ ଉପାସକ । ଆଦିବାସୀମାନଙ୍କ ପାଇଁ ବୃକ୍ଷ ହେଉଛି ଈଶ୍ୱରଙ୍କ କରୁଣାର ମୂର୍ତ୍ତି । ବିଷ୍ଣୁ ସହସ୍ର ନାମରେ ଈଶ୍ୱରଙ୍କୁ ବୃକ୍ଷ ନାମରେ ସମ୍ବୋଧନ କରାଯାଇଛି । ଯେତେବେଳେ ବିଷ୍ଣୁ ପ୍ରଳୟ ସମୟରେ ବରପତ୍ରରେ ଶୟନ

ଥିଲେ । ଗୀତାରେ ଜୀବନକୁ ଅଶ୍ୱତ୍ଥ ବୃକ୍ଷ ବୋଲି ଅଭିହିତ କରାଯାଇଅଛି । ଭାରତର ପ୍ରାଚୀନ ସଭ୍ୟତା ଅରଣ୍ୟ ଧର୍ମୀ । ବୃକ୍ଷର ଦାନ ଆଦିବାସୀମାନଙ୍କ ପାଇଁ ଅସୀମ । ସେମାନେ ବୃକ୍ଷରୁ ଖାଦ୍ୟ, ବସ୍ତ୍ର, ଆଶ୍ରୟ, ଔଷଧ, ଜାଳେଣି, ତୈଳ ପ୍ରଭୃତି ପାଇଥାଆନ୍ତି । ଏବେ ମଧ୍ୟ ବଣ୍ଡା ଆଦିବାସୀମାନେ ଗଛର ବକ୍କଳ ପିନ୍ଧନ୍ତି । ସେମାନେ ଗଛଲତା ଉପରେ ବିଶେଷ ଭାବରେ ନିର୍ଭର କରିଥାଆନ୍ତି । ପ୍ରକୃତିର ରମଣୀୟ ପରିବେଶ ମଧ୍ୟରେ ମୁକୁଳା ଭାବରେ ରହୁଥିବା ଓ ଶୀତ ଖରା ବର୍ଷା ମଧ୍ୟରେ ଅତିକ୍ରମ କରୁଥିବା ଆଦିବାସୀଙ୍କର ସାହାଭରସା ହେଉଛି ସେହି ପ୍ରକୃତି ମାତାର ଆଶୀର୍ବାଦ ଫଳରେ ସେମାନେ ଅମୃତ ସନ୍ତାନ ଭାବରେ ପରିଚିତ । ମନେ ହୁଏ ଯେପରି ପ୍ରକୃତି ଦେବୀ ସୁପ୍ରସନ୍ନା ହୋଇଥିବାରୁ ସେମାନଙ୍କର ଅଟଳ ଭକ୍ତି ଓ ଧର୍ମବିଶ୍ୱାସ ରହିଅଛି । ସେମାନଙ୍କର ହୃଦୟ ଅତି ଉଦାର ଓ ସରଳ । ତାଙ୍କର ଜୀବନ ଅତି ନିର୍ମଳ, ପବିତ୍ର ଓ ସଂସ୍କୃତି ସମ୍ପନ । ପ୍ରକୃତି ଓ ପରିବେଶ ପ୍ରତି ସେମାନଙ୍କର ଶ୍ରଦ୍ଧା ଓ ଅନୁରାଗ ଅସୀମ । ଆଦିବାସୀ ସମସ୍ତଙ୍କର କଲ୍ୟାଣ କରି କହନ୍ତି–

ହାଜି ହିଲରେଟୁ, କାଡ୍‌ନି ହିଲରେଟୁ
ଆବାରେ ମଣବେ ଦାଇରେ ମଣବେ

ଅର୍ଥାତ୍ କେହି ନଷ୍ଟ ନ ହେଉ, ଢାଡ଼ା ନରହୁ । ସମସ୍ତେ ସୁଖରେ ଥାଆନ୍ତୁ, ଶାନ୍ତିରେ ଥାଆନ୍ତୁ । ପ୍ରକୃତି କୋଳରେ ରହି ସେମାନେ ଯେତେ ଦୁଃଖ ଯନ୍ତ୍ରଣା ଓ ଅଭାବ ଅସୁବିଧାରେ ଆସିଲେ ମଧ୍ୟ ତାହା ତାଙ୍କ ମନରେ ଟିକିଏ ହେଲେ ରେଖାପାତ କରେନାହିଁ । ସେମାନେ ଧର୍ମବିଶ୍ୱାସୀ ତଥା ସ୍ୱଳ୍ପ ଆବଶ୍ୟକତା ମଧ୍ୟରେ ରହୁଥିବାରୁ ଶାନ୍ତିମୟ ଜୀବନ ଯାପନ କରନ୍ତି । କେବଳ ମାତ୍ର ଶିକ୍ଷାର ଅଭାବ ହେତୁ ସେମାନଙ୍କ ଧର୍ମରେ ଅନ୍ଧ ବିଶ୍ୱାସ ଓ କୁ-ସଂସ୍କାର ଦେଖାଦେଇଥାଏ । ସେହି ପରିପ୍ରେକ୍ଷୀରେ ମୋର ସ୍ୱରଚିତ, 'ଆଦିବାସୀ, ବନବାସୀ', କବିତାରେ ଉଲ୍ଲେଖ ଅଛି–

ଏମାନେ ଆଦିବାସୀ ଓ ବନବାସୀ
ଜୀବନର ଅସହାୟତାରେ ଗାର ଟେକି
ଶିକ୍ଷାର ମାନକୁ ଗାଣ୍ଠି ଚଳନ୍ତି
ସଂସ୍କୃତିର ଶିଖରରେ ଖେଳଖେଳି
ଏମାନେ ଭାସୁଥାନ୍ତି ଆନନ୍ଦର ସମୁଦ୍ରରେ
ଛଗା କାଢ଼ିଆର ଭାସମାନ ଡାଙ୍ଗ ପରି ।

ଅଧ୍ୟାପକ,
ଡି. ଏ. ଭି କଲେଜ,
କୋରାପୁଟ
କୋରାପୁଟ-୭୬୪୦୨୦



# ଭାରତୀୟ ଗୁରୁ ପରମ୍ପରା ଓ ଗୁରୁ ଦିବସ



ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସେ ଆମର ଅଭିଭାବକ । ସେ ଆମର ଭୁଲ ସଂଶୋଧନ କରନ୍ତି । ଆମକୁ ଶାସ୍ତି ଦିଅନ୍ତି ଓ ପରିତ୍ରାଣ କରନ୍ତି । ତାଙ୍କର ସଜୀବ ଉପସ୍ଥିତି ସଂପର୍କରେ ଅବହିତ ରହି ଆମେ ବାରମ୍ବାର ତାଙ୍କୁ ସ୍ମରଣ କରିବା ଉଚିତ । ଗୋଟିଏ ମନ୍ଦିର ହୃଦୟକୁ କୋମଳ କରିବାରେ ସାହାଯ୍ୟ କରେ, ଅନୁକମ୍ପା ଓ ଦୟାର ସୁଗୁଣାବଳୀ ଆମ ହୃଦୟରେ ବିକଶିତ କରେ । ଆମେ ନିଜକୁ ଚଳନ୍ତି ଦେବାଳୟରେ ରୂପାନ୍ତରିତ କରିବା ଉଚିତ । ଆମ ହୃଦୟରେ ବାସ କରୁଥିବା ଭଗବାନଙ୍କ ସଂପର୍କରେ ସଚେତନ ରହିବା ଉଚିତ । ସେ ଆମକୁ ରକ୍ଷା କରନ୍ତି । ଆମର ଅନ୍ନ ସଂସ୍ଥାନ କରନ୍ତି । ମନ୍ଦ ମାର୍ଗରୁ ଆମକୁ ନିବୃତ୍ତ କରନ୍ତି ।

ଉପରୋକ୍ତ ମର୍ମରେ 'ସର୍ବଭୂତାନ୍ତରାତ୍ମା'ଙ୍କ ସ୍ୱରୂପ ବୁଝାଇଛନ୍ତି ସତ୍ୟ ସାଇ । ପରମାତ୍ମାଙ୍କର ଏଇ ଅବାଂମାନସଗୋଚର ସତ୍ତା ଯୁଗ ଯୁଗ ଧରି କବି, ସାଧକ, ତତ୍ତ୍ୱଦର୍ଶୀ ଓ ସତ୍ୟସଂଧାନୀମାନଙ୍କ ପାଇଁ ରହସ୍ୟାବୃତ ହୋଇ ରହିଛି । ବେଦରେ କେତେବେଳେ ତାଙ୍କୁ ହିରଣ୍ୟଗର୍ଭ କୁହାଯାଇଛି, କେତେବେଳେ ଶିବ, ବିଷ୍ଣୁ, ଇନ୍ଦ୍ର, ବରୁଣ ତ କେତେବେଳେ 'ସହସ୍ରଶୀର୍ଷା' 'ସହସ୍ରାକ୍ଷ' 'ସହସ୍ରପାତ୍' ପୁରୁଷ । ଏହି ପରମ ସତ୍ତାର ବର୍ଣ୍ଣନା ରହିଛି ଶାସ୍ତ୍ରରେ :

ଏକୋ ଦେବସ୍ତ ସର୍ବଭୂତେଷୁ ଗୂଢ଼ଃ
ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।
କର୍ମାଧ୍ୟକ୍ଷ ସର୍ବଭୂତାଧିବାସଃ
ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ ॥

'ଗୁରୁ ସେ ସାକ୍ଷାତ ଈଶ୍ୱର', ସେ ଯେ ଈଶ୍ୱରଙ୍କଠାରୁ ଅଭିନ୍ନ ଏହାର ଭୂୟସୀ ପ୍ରମାଣ ଆମ ଶାସ୍ତ୍ରରେ ରହିଛି । ଉପରୋକ୍ତ ଶ୍ଳୋକରେ ଈଶ୍ୱରଙ୍କର ସର୍ବବ୍ୟାପକତା ଆମକୁ ଯେପରି ବିସ୍ମିତ କରେ

ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତ ଯେନ ଚରାଚରମ୍
ତତ୍‌ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।
ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀଗୁରବେନମଃ ॥

ଶ୍ଳୋକରେ ଗୁରୁଙ୍କର ସର୍ବବ୍ୟାପୀ ଶକ୍ତି ଅନୁରୂପ ଭାବରେ ଆମକୁ ଅଭିଭୂତ କରେ । ବିଷ୍ଣୁ ରୂପରେ ସେ ତ୍ରିଲୋକର ପାଳନ କର୍ତ୍ତା, ବ୍ରହ୍ମା ରୂପରେ ତ୍ରିଲୋକର ସ୍ରଷ୍ଟା ଓ ଶିବ ରୂପରେ ତ୍ରିଲୋକର ସଂହାର କର୍ତ୍ତା ।

ସଂସ୍କୃତ ଶାସ୍ତ୍ରରେ ଗୁରୁ ଶବ୍ଦଟି ବିଶ୍ଳେଷଣ କରି କୁହାଯାଇଛି ସେ ଗୁଣାତୀତ ଓ ରୂପବର୍ଜିତ । ଅନ୍ଧକାରରୁ ଆଲୋକ ଆଡକୁ ନେଇ ଯାଉଥିବାରୁ ଆମେ ତାଙ୍କୁ ଗୁରୁ ରୂପେ ପୂଜା କରିଥାଉଁ । ଏହି ଅନ୍ଧକାର ମୁଖ୍ୟତଃ ଷଡ଼ ରିପୁର ରାହୁଚ୍ଛାୟା କହିଲେ ଅତ୍ୟୁକ୍ତି ହେବ ନାହିଁ । ମୋହଗ୍ରସ୍ତ ବିଷୟୀ ମଣିଷର ମନବୁଦ୍ଧିକୁ ସେ ତାଙ୍କ ପାଦପଦ୍ମରେ ବନ୍ଧା କରନ୍ତି ଏବଂ ଜୀବନ ସଂଧ୍ୟାରେ ପଦ୍ମପାଖୁଡା ମୁଦି ଗଲେ ମନନିବଦ୍ଧ ହୁଏ ସେହି ଶୁଦ୍ଧସୁନ୍ଦର ପାଦପଦ୍ମରେ ।

ଜୀବନର ସବୁ କିଛି ଐଶ୍ୱର୍ଯ୍ୟ ଥାଇ ଜଣେ ଯଦି ଗୁରୁ ସ୍ୱରୂ... ପରମାତ୍ମାଙ୍କୁ ପ୍ରାର୍ଥନା ନ କରେ, ତାଙ୍କ ରୂପରଶ୍ମିରେ ଉଦ୍‌ଭାସିତ ନ ହୁ... ପାଦ ପଦ୍ମରେ ଆଶ୍ରୟ ନ ନିଏ ତା'ର ଜୀବନ ହୁଏ ଦର୍ଶ... ଅଭିଶପ୍ତ । ଭାରତୀୟ ପରମ୍ପରାର ଏହି ମହାନ ଆଦର୍ଶକୁ ଗୁର୍ବଷ୍ଟ... ସ୍ତୋତ୍ରରେ ସୁନ୍ଦର ରୂପେ ବର୍ଣ୍ଣନା କରାଯାଇଛି :

ଶରୀରଂ ସୁରୂପଂ ସଦା ରୋଗ ମୁକ୍ତଂ
ଯଶଶ୍ଚାରୁ ଚିତ୍ରଂ ଧନଂ ମେରୁ ତୁଲ୍ୟଂ ।
ଗୁରୋରଙ୍ଘ୍ରି ପଦ୍ମେ ମନଶ୍ଚ ନ ଲଗ୍ନଂ
ତତଃ କିଂ ତତଃ କିଂ ତତଃ କିଂ ତତଃ କିଂ ?
କଳତ୍ରଂ ଧନଂ ପୁତ୍ରଂ ପୌତ୍ରାଦି ସର୍ବଂ
ଗୃହ ବାନ୍ଧବାଃ ସର୍ବମେତଦ୍ଧି ଜାତଂ
ଗୁରୋରଙ୍ଘ୍ରିପଦ୍ମେ ମନଶ୍ଚନ୍ନଲଗ୍ନଂ
ତତଃ କିଂ ତତଃ କିଂ ତତଃ କିଂ ତତଃ କିଂ ?

ଭାରତୀୟ ସଂସ୍କୃତିରେ ଗୁରୁଶିଷ୍ୟ ପରମ୍ପରା ଯେଉଁପରି ଐତିହ୍ୟପୂର୍ଣ୍ଣ, ସେହିପରି ଅର୍ଥପୂର୍ଣ୍ଣ । ଗୁରୁ ରୂପରେ ସ୍ୱୟଂ ଭଗବାନ ଅବତୀର୍ଣ୍ଣ ହୋଇଥାନ୍ତି ଶିଷ୍ୟକୁ ଜାଗ୍ରତ ଓ ଶ୍ରେୟାଭିମୁଖୀ କରିବା ପାଇଁ । ଗୀତାରେ କୁହା ଯାଇଛି ଜ୍ଞାନଠାରୁ ପବିତ୍ରତର ଆଉ କିଛି ନାହିଁ । ଏହି ଜ୍ଞାନ ଲାଭ ନିମନ୍ତେ ନିରନ୍ତର ଅଭ୍ୟାସ କରିବାକୁ ହୁଏ । ଯଥାର୍ଥ ଜ୍ଞାନାଚରଣ ଫଳରେ ମନୁଷ୍ୟ ଆତ୍ମସାକ୍ଷାତ୍‌କାର ଲାଭ କରିଥାଏ । ଯିଏ ସିଏ ଗୁରୁ ହୋଇ ଯାଆନ୍ତି ନାହିଁ । ଯିଏ ସିଏ ମଧ୍ୟ ଶିଷ୍ୟ ହୋଇ ପାରନ୍ତି ନାହିଁ । ଭାରତୀୟ ପରମ୍ପରାରେ ଗୁରୁ ହେବାରେ ଯେପରି ଗୁରୁ ଦାୟିତ୍ୱ ନିହିତ, ଶିଷ୍ୟ ହେବାର ମର୍ଯ୍ୟାଦା ଲାଭ ପାଇଁ ଅନୁରୂପ ଭାବରେ ଜଣେ ଅନେକ ସଦ୍‌ଗୁଣର ଅଧିକାରୀ ହେବା ଉଚିତ । ବଶିଷ୍ଠ ଥିଲେ ଗୁରୁ ରାମଚନ୍ଦ୍ର ଶିଷ୍ୟ । ସନ୍ଦୀପନୀ ଗୁରୁ ଓ ଶ୍ରୀକୃଷ୍ଣ ଶିଷ୍ୟ । ଶିଷ୍ୟମାନଙ୍କ ମଧ୍ୟରେ ଆମେ ଦେଖୁ ସତ୍ୟକାମ, ଜାବାଳ, ଆରୁଣି ଓ ନଚିକେତା । ଗୁରୁଙ୍କ ମଧ୍ୟରେ ମହର୍ଷି ବ୍ୟାସ, ନାରଦ, ଶୁକ, ଶୌନକ, ବିଶ୍ୱାମିତ୍ର, ଶଙ୍କର, ମାଧ୍ୱାଚାର୍ଯ୍ୟ, ଚୈତନ୍ୟ ।

ଗୀତାରେ ଜ୍ଞାନ ପରମ୍ପରା ବର୍ଣ୍ଣନା ଚତୁର୍ଥ ଅଧ୍ୟାୟର ପ୍ରଥମ ଶ୍ଳୋକରେ ସୂଚିତ ହୋଇଛି । ସୂର୍ଯ୍ୟ, ମନୁଙ୍କୁ ମନୁ ଇକ୍ଷ୍ୱାକୁଙ୍କୁ ଆତ୍ମଜ୍ଞାନ ପ୍ରଦାନ କରିଥିଲେ । ନାରଦ ଶବ୍ଦରେ ଆକ୍ଷରିକ ଅର୍ଥ ନରମାନଙ୍କୁ ଯେ... ନାରାୟଣଙ୍କ ସଂପର୍କରେ ଶିକ୍ଷା ଦିଅନ୍ତି । ଶୁକ ଆସୁର ଯାହାଙ୍କ ଯେ ... ଆଚାର୍ଯ୍ୟ ପଦବାଚ୍ୟ । ସେ ବେଦସଂପନ୍ନ ଅର୍ଥାତ୍ ଜ୍ଞାନୀ ଓ ଶକ୍ତି... ଦକ୍ଷିଣାମୂର୍ତ୍ତିଙ୍କର ଆଦର୍ଶ ଥିଲା ମୌନତା ଅବଲମ୍ବନ ଦ୍ୱାରା ଶିଷ୍ୟମାନଙ୍କୁ ... ଶିକ୍ଷା ଦେବା । ଶଙ୍କର ଅସୀମ ସତ୍ତାର ସ୍ୱରୂପ ଉଦ୍‌ଘାଟନ ନିମନ୍ତେ ମା... ନିର୍ଦ୍ଦେଶ କରିଥିଲେ । ବଶିଷ୍ଠ ରାମଚନ୍ଦ୍ରଙ୍କୁ 'ବିଶ୍ୱର ଭୂଷଣ ସେ...

ନିମନ୍ତେ ଜ୍ଞାନ ପ୍ରଦାନ କରିଥିଲେ । ଗୁରୁଙ୍କୁ ଯେପରି ପରମାତ୍ମାଙ୍କର ପ୍ରତିରୂପେ ସମ୍ମାନିତ କରାଯାଉଥିଲା, ଗୁରୁ ମଧ୍ୟ ଶିଷ୍ୟଙ୍କୁ ଈଶ୍ୱର ସ୍ୱରୂପ ମନେ କରୁଥିଲେ ।

ଭାରତୀୟ ପରମ୍ପରାରେ ଗୁରୁଶିଷ୍ୟଙ୍କ ସଂପର୍କ ଥିଲା ଅତ୍ୟନ୍ତ ମହନୀୟ । ସେହି ପରମ୍ପରାର ସୁନ୍ଦର ବ୍ୟାଖ୍ୟା କରି ଆଚାର୍ଯ୍ୟ ବିନୋବା ଭାବେ କହିଥିଲେ, "ଗୁରୁମାନେ ଛାତ୍ରପରାୟଣ, ଛାତ୍ରମାନେ ଗୁରୁପରାୟଣ ଏବଂ ଉଭୟେ ବିଦ୍ୟା ପରାୟଣ ହେବା ଉଚିତ ;" ଶିକ୍ଷାଲାଭ ଓ ଶିକ୍ଷାଦାନ ଯେ ସାତ୍ତ୍ୱିକ ଗୁଣର ବିକାଶ ଉପରେ ଆଧାରିତ ଏହି ତତ୍ତ୍ୱ ବୁଝାଇଦେବା ଆଚାର୍ଯ୍ୟଙ୍କ ଅଭିପ୍ରାୟ । ଅନ୍ୟ କଥାରେ କହିଲେ ମନ ନିୟନ୍ତ୍ରିତ ନହେଲେ ବିଦ୍ୟା ଲାଭ ହୁଏ ନାହିଁ । କଳା, ବିଜ୍ଞାନ ବା ବାଣିଜ୍ୟ ଯେ କୌଣସି ବିଷୟ ଆୟତ୍ତ କରିବା ପାଇଁ ବିବେକ ଓ ବୁଦ୍ଧି ତୀକ୍ଷ୍ଣ ହେବା ଆବଶ୍ୟକ । ବାସନା ହ୍ରାସ ଦ୍ୱାରା ଏହା ସମ୍ଭବ ହୋଇଥାଏ । ସେଥିପାଇଁ କାମ ରୂପକ ଦୁର୍ଜୟ ଶତ୍ରୁକୁ ଜୟ କରିବା ନିମନ୍ତେ ଶାସ୍ତ୍ରରେ ଉପଦେଶ ରହିଛି ।

ପ୍ରାଚୀନ ଭାରତରେ ଶାସ୍ତ୍ରକୁ ନେତ୍ର ଓ ପୁରାଣକୁ ପ୍ରମାଣ ରୂପେ ଗ୍ରହଣ କରାଯାଉଥିଲା । ଆଧ୍ୟାତ୍ମିକ ଶକ୍ତିରେ ପରିପୁଷ୍ଟ ହୋଇ ଗୁରୁଶିଷ୍ୟ ଜ୍ଞାନାନୁସରଣ କରୁଥିଲେ । ପରିବେଶ ଥିଲା ପ୍ରଶାନ୍ତ, ବ୍ୟକ୍ତିତ୍ୱ ଥିଲା ଆଦର୍ଶଦୀପ୍ତ ।

ଆମ ରାଷ୍ଟ୍ରନାୟକମାନଙ୍କ ମଧ୍ୟରୁ ଡଃ ସର୍ବପଲ୍ଲି ରାଧାକ୍ରିଷ୍ଣନ୍ ଭାରତୀୟ ସଂସ୍କୃତିର ଧାରାକୁ ନିର୍ଭୁଲ ଭାବେ ବୁଝିଥିଲେ । ଆମ ପରମ୍ପରାରେ ଶ୍ରଦ୍ଧା, ସଂଯମ ଓ ଆଗ୍ରହକୁ ଶିକ୍ଷା ଲାଭ ନିମନ୍ତେ ଅତ୍ୟାବଶ୍ୟକ ବୋଲି କୁହା ଯାଉଛି । କବିଗୁରୁ ରବିନ୍ଦ୍ରନାଥ କହିଛନ୍ତି ଜଳୁଥିବା ଦୀପ ଅନ୍ୟକୁ ଆଲୋକିତ କରିବା ପରି ଗୁରୁ ନିଜେ ଜ୍ଞାନବ୍ରତୀ ହୋଇ ଶିଷ୍ୟଙ୍କ ମନରେ ଜ୍ଞାନପିପାସା ଜାଗ୍ରତ କରିବେ । ରାଧାକ୍ରିଷ୍ଣନ୍ ଥିଲେ ଏପରି ଜଣେ ପ୍ରାତଃ ସ୍ମରଣୀୟ ଗୁରୁ । ଗାନ୍ଧିଜୀ, ଶ୍ରୀଅରବିନ୍ଦ ବା ରବିନ୍ଦ୍ରନାଥଙ୍କ ପରି ଜ୍ଞାନକୁ ସେ ଯାବତୀୟ ଜୀବନରେ ଆଚରଣ କରୁଥିଲେ । ଭାଷଣରେ, ନିବନ୍ଧରେ, ଶ୍ରେଣୀ ଗୃହରେ ତଥା ଦୈନନ୍ଦିନ ଗତିବିଧିରେ ସେ ଭାରତର ମହାନ ଆଦର୍ଶ 'ବସୁଧୈବ କୁଟୁମ୍ବକଂ' ନୀତି ଅନୁସରଣ କରୁଥିଲେ । ସେ ଥିଲେ ଜାତିର ଆଚାର୍ଯ୍ୟ ଆଚରଣ ଶୁଦ୍ଧ, ସତ୍ୟନିଷ୍ଠ, ଦେଶପ୍ରେମୀ ଓ ପରହିତକାରୀ । ଭାରତର ମହାର୍ଘ ରାଷ୍ଟ୍ରନାୟକ । ତାଙ୍କର ପବିତ୍ର ସ୍ମୃତି ସମୃଦ୍ଧ ଭାରତ ଗଠନ ପଥରେ ଅଗ୍ରସର ହେବା ପାଇଁ ଆମକୁ ଦିଗ୍‌ଦର୍ଶନ ଦେଉ । ନିଃସ୍ୱାର୍ଥ ପ୍ରେମ ସୂତ୍ରରେ ଗୁରୁ ଶିଷ୍ୟଙ୍କୁ କାନ କାନ ଧରି ନିବିଡ଼ କରନ୍ତୁ, ଶିକ୍ଷାକୁ ଚରିତ୍ର ଧର୍ମୀ, ଚରିତ୍ରକୁ ଜ୍ଞାନଧର୍ମୀ, ଏବଂ ଜ୍ଞାନକୁ ତ୍ୟାଗ ପଥରେ ପରିଚାଳିତ କରନ୍ତୁ ।

ସହକାରୀ ସଂପାଦକ,
ସୂଚନା ଲୋକସଂପର୍କ ବିଭାଗ, ଭୁବନେଶ୍ୱର ।







# ବୌଦ୍ଧପୀଠ ଲଳିତଗିରି ଓ ମାଧପୁର ମହାବିହାର

ଶ୍ରୀ ଗଣେଶ ପ୍ରସାଦ ପରିଡ଼ା

ଯେଉଁ ଆଡକୁ ଅନାଇବ ସେ ଆଡେ ସୁନ୍ଦର ଆଲେଖ୍ୟ । ସତେ ଯେପରି ଚିତ୍ରରେ ଗୋଟାଏ ବିରାଟ ଜାତିର ଇତିହାସ ଲେଖା ହୋଇଛି । ସେ ଜାତି ପ୍ରକୃତି ସହିତ, ପରିସ୍ଥିତି ସହିତ ସହସ୍ର ସହସ୍ର ବର୍ଷ ଧରି ଲଢ଼ି ଲଢ଼ି ତାର ସ୍ଥିତି ବଜାୟ ରଖିଛି । କେଉଁ ଆଦିମ କାଳରୁ— ସେହି ପ୍ରସ୍ତର ଯୁଗରୁ ସେ ଆଙ୍କି ଆସିଛି, ତା ଜୀବନ ଚିତ୍ରାବଳୀ । ପାହାଡର ଗୁମ୍ଫାରେ, ପାହାଡ ଉପରେ ସେ ଆଙ୍କିଛି ତା ଜୀବନ ଚରିତ । ଆଜି ବିଂଶ ଶତାବ୍ଦୀର ଶେଷ ଭାଗରେ ସେହି ଚିତ୍ର ଗୁଡ଼ିକୁ ଦେଖି ଚିତ୍ର କୁଶଳୀ ମନିଷ ବିସ୍ମୟାବିଷ୍ଟ ହୁଏ । ଖୁବ୍ ସମ୍ଭବତଃ ପ୍ରଥମେ ତାର ଲିପି କିଛି ନଥିଲା— ଚିତ୍ରରେ ସେ ତା ନିଜକଥା ଆଙ୍କୁଥିଲା । ତା ପରେ କେବେ ସେ ଲିପି ଶିଖିଲା ତାର ଠିକ୍ ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । ଯେତେବେଳେ ମିଳିଲା ସେତେବେଳେକୁ ଲିପିର ବିକାଶ ଶେଷ ସ୍ତରରେ ପହଞ୍ଚି ସାରିଥିଲା । ତାହା ହେଉଛି ବୌଦ୍ଧଯୁଗ ।

ବୌଦ୍ଧ ସଂସ୍କୃତି କଳିଙ୍ଗରେ ବୁଦ୍ଧଙ୍କ ସମୟରୁ ବିକାଶ ଲଭି ଆସିଛି । ତାହାର ପ୍ରମାଣ କଟକ ଜିଲ୍ଲାର ଲଳିତଗିରିରେ ବିଦ୍ୟମାନ । ଲଳିତଗିରିର ଖନନ କାର୍ଯ୍ୟ ଏହିମାନ୍ତ ଆରମ୍ଭ ହୋଇଛି । ପୂର୍ବରୁ ଯେଉଁ ବୌଦ୍ଧ ମୂର୍ତ୍ତିଗୁଡ଼ିକ ଉପରେ ପଡ଼ିଥିଲା ସେଗୁଡ଼ିକୁ ନେଇ ସେ ଅଞ୍ଚଳର ବିଧାୟକ ଶ୍ରୀ ମହବୁବ ଅଲ୍ଲି ଗୋଟିଏ ପକାଘର ନିର୍ମାଣ କରି ସଂରକ୍ଷଣ କରିଛନ୍ତି । ଏହି ସଂରକ୍ଷଣ ପୂର୍ବରୁ କେତେ ଯେ ମୂର୍ତ୍ତି ସେ ଅଞ୍ଚଳର ବଙ୍ଗାଳୀ ଜମିଦାର ଓଡ଼ିଶା ବାହାରକୁ ନେଇ ଯାଇଛନ୍ତି ତାର ହିସାବ ଆଉ କେହି ଦେଇ ପାରିବ ନାହିଁ । ଯେଉଁ ମୂର୍ତ୍ତିଗୁଡ଼ିକ ବର୍ତ୍ତମାନ ସଂରକ୍ଷିତ ହୋଇଛି ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ସପ୍ତମ ଅଷ୍ଟମ ଶତାବ୍ଦୀର ବଜ୍ରଯାନୀଙ୍କ ସମୟର । ବଜ୍ର ମୂର୍ତ୍ତିରେ ବଜ୍ରଯାନୀଙ୍କର ପରମ ଆୟୁଧ ବଜ୍ରର ଚିତ୍ର ଖୋଦିତ ହୋଇଛି । ଏହାଛଡା ୧୯୮୭ ମସିହାରେ କେତେଗୁଡ଼ିଏ ଛୋଟଛୋଟ ଆଶୋକଙ୍କ ସମୟର ବୌଦ୍ଧ ସ୍ତୂପ ମାଟି ତଳୁ ଖୋଳା ହୋଇ ବାହାରିଛି । ଏହି ସ୍ତୂପ ଗୁଡ଼ିକ ଗୋଲାକାର ବୃତ୍ତଟି ପଥରରେ ନିର୍ମିତ । ଏହାପରେ ସପ୍ତମ ଅଷ୍ଟମ ଶତାବ୍ଦୀରେ ଯେଉଁ ଛୋଟ ସ୍ତୂପ ନିର୍ମିତ ହେଲା ତାହା ଶିବଲିଙ୍ଗକୁ ଏ ସ୍ତୂପର ରୂପରେଖ ବଦଳାଇଲି ।

ବୌଦ୍ଧ ଶାସ୍ତ୍ରମାନଙ୍କରେ ଅଛି ଯେତେବେଳେ ଗୌତମ ବୁଦ୍ଧତ୍ୱ ପ୍ରାପ୍ତି ଲଭିଲେ ସେତେବେଳେକୁ ସେ ପ୍ରାୟ ସପ୍ତାହ ଧରି ଉପବାସ ରହିଥିଲେ । ଉପବାସ ଜନିତ କଷ୍ଟ ଯୋଗୁଁ ସେ ଖୁବ୍ ଦୁର୍ବଳ ହୋଇଥିଲେ । ଏହି ସମୟରେ ସେହି ବାଟ ଦେଇ କଳିଙ୍ଗର ଦୁଇଜଣ ବଣିକ ତପସ୍ସୁ ଓ ଭଲ୍ଲିକ ପାଞ୍ଚ ଶହ ଶଗଡରେ ମାଲ ବୋଝେଇ କରି ଯାଉଥିଲେ । ସେମାନେ ବୁଦ୍ଧଙ୍କୁ ଦେଖି ବିସ୍ମିତ ହୋଇ ପଡ଼ିଲେ । ସେହି ସମୟରେ ସେହି ଅଞ୍ଚଳ ଶାନ୍ତ ଜଙ୍ଗଲରେ ପୂର୍ଣ୍ଣ ଥିଲା । ଜଙ୍ଗଲ ମଧ୍ୟରେ ଜଣେ ମାନବ ଯାହାଙ୍କର ଚକ୍ଷୁଗୁଡ଼ିକରୁ ଜ୍ୟୋତି ନିର୍ଗତ ହେଉଛି, ତାଙ୍କୁ ଦେଖି ସେମାନେ ତାଙ୍କ ପାଖକୁ ଯାଇଥିଲେ ଓ ମଧୁ ପିଷ୍ଟକ ନିବେଦନ କରିଥିଲେ । ଖୁବ୍ ସମ୍ଭବତଃ ଏହି ମଧୁ ପିଷ୍ଟକ ଓଡ଼ିଆ ଘରର ଆରିସା ପିଠା ହୋଇ ପାରେ । ସେମାନେ ବୁଦ୍ଧ ମଧୁପିଷ୍ଟ ଗ୍ରହଣ କଲା ପରେ କିଛିଏ ଉପଦେଶ ଦେଇ ଦୁହିଁଙ୍କୁ ଧର୍ମରେ ଦୀକ୍ଷିତ କରିଥିଲେ । ଦୀକ୍ଷିତ ହେଲା ପରେ ସ୍ମାରକ ରୂପେ ବୁଦ୍ଧ ନିଜର କେଶ ଅର୍ପଣ କରିଥିଲେ । ସପ୍ତମ ଶତାବ୍ଦୀର ଚୀନ୍ ପରିବ୍ରାଜକ ହୁଏନ୍‌ସାଂ କାବୁଲ ନିକଟରେ ସେ ଦୁହେଁ ନିର୍ମାଣ କରିଥିବା କେଶସ୍ତୂପ, ନଖସ୍ତୂପ ଦେଖି ଆସିଥିବା ଉଲ୍ଲେଖ କରିଛନ୍ତି । [illegible] ଓ ବୌଦ୍ଧ ଜାତକରେ ସେ ଦୁହେଁ 'ଉକ୍କଳ' ବା [illegible] ବୋଲି ଲେଖା ହୋଇଛି । ଉତ୍କଳର ବଣିକ ଦ୍ୱୟ ବ୍ୟବସାୟ କରିବାକୁ ଯାଇ କାବୁଲ ନିକଟରେ କେଶସ୍ତୂପ ଓ ନଖସ୍ତୂପ ନିର୍ମାଣ କରିପାରନ୍ତି, ମାତ୍ର ସେମାନେ ଯେତେବେଳେ ତାଙ୍କ ଜନ୍ମ ଭୂମିକୁ ଫେରିଥିବେ ନିଶ୍ଚିତ ଭାବରେ କେତୋଟି ସ୍ତୂପ ନିର୍ମାଣ କରିଥାଇ ପାରନ୍ତି । ହୁଏତ ସେହି ସ୍ତୂପଗୁଡ଼ିକ ନଷ୍ଟ ହୋଇ ଗଲାଣି କିମ୍ବା କେଉଁଠି ମାଟିରେ ପୋତି ହୋଇ ରହିଛି । ତା'ର ଉଦ୍ଧାର ପାଇଁ ଏ ପର୍ଯ୍ୟନ୍ତ କୌଣସି ଯୋଜନା ହୋଇ ନାହିଁ ।

୧୯୮୭ ମସିହାରେ ଲଳିତଗିରିର ବୌଦ୍ଧ ସ୍ତୂପ ଓ ବିହାର ଥିବା ଅଞ୍ଚଳକୁ ଖନନ କଲାବେଳେ କେନ୍ଦ୍ରୀୟ ପ୍ରତ୍ନତାତ୍ତ୍ୱିକମାନେ ଅଶୋକଙ୍କ ସମୟରେ ଗୋଟିଏ ବୌଦ୍ଧସ୍ତୂପ ଖନନ କରିଥିଲେ । ଏହି ସ୍ତୂପରୁ ଦୁଇଟି ପଥର ସ୍ତୂପାକାର ପେଡ଼ିରୁ ଦୁଇଟି ଅସ୍ଥି ଆବିଷ୍କାର କରାଯାଇଥିଲା । ଅସ୍ଥି ଦୁଇଟି, ଦୁଇଟି ପଥର ପେଡ଼ିରେ ଯେଉଁଭଳି ସଂରକ୍ଷିତ ହୋଇଥିଲା ତାହା ବଡ କୌତୂହଳ ପ୍ରଦ । ଖଣ୍ଡଳମାଳ ପଥରର ଏକ ଛୋଟ ସ୍ତୂପ ମଧ୍ୟରେ ଗୋଟିଏ ନୀଳ ପଥରର ପେଡ଼ି । ସେହି ପେଡ଼ି ମଧ୍ୟରେ ରୁପାର ଏକ ଛୋଟ ବାକ୍ସ । ପୁଣି ସେହି ବାକ୍ସ ମଧ୍ୟରେ ସୁନାର ଏକ ଛୋଟ ଡବା ଭିତରେ ସବୁ ସୁନାପାତ ଗୁଡ଼ା ହୋଇ ଅସ୍ଥିଟିଏ । ସେହି ସ୍ତୂପ ମଧ୍ୟରେ ତିନୋଟି ପେଡ଼ି ଥିବାର ନିଦର୍ଶନ ରହିଛି । ଦୁଇଟି ପେଡ଼ିରୁ ଦୁଇଟି ଦୁଇଟି ପଥର ପେଡ଼ି ବାହାରି ଥିଲା । ମାତ୍ର ଆଉ ଗୋଟିକରୁ ଅସ୍ଥି ବା ସୁନା ରୁପା ବାକ୍ସ ଆଦି ନଥିଲା । ସ୍ତୂପ ମଧ୍ୟରୁ ସୁନା ଚୋରା ମିଳୁଛି ଏହି ପ୍ରବାଦକୁ ଶୁଣି କେହି ସେହି ସ୍ତୂପ ଭିତରୁ ଗୋଟିଏ ପେଡ଼ିରୁ ତାହା ନେଇ ଯାଇଛି । ଯେ ନେଇଛି ସେ ବୋଧେ ଜାଣି ନାହିଁ ସେହି ସ୍ତୂପ ମଧ୍ୟରେ ଆଉ ଦୁଇଟି ପେଡ଼ି ରହିଛି । ଖୁବ୍ ସମ୍ଭବତଃ ବୁଦ୍ଧ-ଧର୍ମ-ସଂଘର ପ୍ରତୀକ ରୂପେ ସ୍ତୂପ ମଧ୍ୟରେ ତିନୋଟି ବୁଦ୍ଧଙ୍କ ଦେହାବଶେଷ ଥିଲା । ବୁଦ୍ଧ ସମୟରୁ ବୁଦ୍ଧ, ଧର୍ମ, ସଂଘ ଉପରେ ବୌଦ୍ଧମାନେ ନିର୍ଭର କରୁଥିଲେ ।

ଲଳିତଗିରି ବୌଦ୍ଧ ବିହାର ଏବେବି ମାଟି ଭିତରେ ରହିଛି । ବର୍ତ୍ତମାନ କେବଳ ସ୍ତୂପ ଥିବା ଅଂଶ ଖୋଳା ହୋଇଛି । ଏହି ସ୍ତୂପାଞ୍ଚଳକୁ ଚିହ୍ନିବା ଭଳିଆ ପଥର ଚଟାଣ ଦେଖିବାକୁ ମିଳେ । ପ୍ରତ୍ୟେକ ପଥର ଚଟାଣ ଉପରେ କେତେକ ବୁଦ୍ଧଙ୍କ ମୂର୍ତ୍ତି ଓ ସ୍ତୂପ ରହିଛି । ଗୋଟିଏ ବ୍ୟାଖ୍ୟାନ ମୁଦ୍ରାର ବୁଦ୍ଧମୂର୍ତ୍ତି ଦେଖିବାକୁ ମିଳେ। ଏହି ମୂର୍ତ୍ତି ନିମ୍ନରେ ଧର୍ମଚକ୍ର ଅଙ୍କିତ ହୋଇଛି । ଏହି ଧର୍ମଚକ୍ର ଟିକିଏ ଦୂରରୁ ଶ୍ରଦ୍ଧାଳୁଙ୍କୁ ଆକୃଷ୍ଟ

ହେଉଥିବା ଶ୍ରୀଜଗନ୍ନାଥଙ୍କ ଭଳି ଦେଖାଯାଏ । ଏହି ଧର୍ମଚକ୍ରକୁ ଦୁଇ ପାର୍ଶ୍ବରେ ଦୁଇଟି ଲୋକ ଉପାସନା କରୁଥିବା ଦେଖାଯାଏ । ଗୋଟିଏ ଭଗ୍ନ ସ୍ତୂପ ମଧ୍ୟରୁ ପାଷାଣ ପଥରର ଗୋଟିଏ ବୁଦ୍ଧଙ୍କ ମୁଣ୍ଡ ବାହାରିଛି । ବଡ ବଡ ସ୍ତୂପମାନଙ୍କ ମଧ୍ୟରେ ବୁଦ୍ଧ କିମ୍ବା ବୌଦ୍ଧମାନଙ୍କର ନଖ, ବାଳ, ଅସ୍ଥି ଆଦି ବିଶେଷ ସ୍ମାରକ ରହିଥାଏ ଯଦି ସେଭଳି କିଛି ସ୍ମାରକ ନ ମିଳେ ତେବେ ବୁଦ୍ଧଙ୍କର ଏକ ମସ୍ତକ ନିର୍ମାଣ କରି ରଖିବା ପ୍ରଥା ରହିଛି । ଏହି ସ୍ତୂପ ମନ୍ଦିର ସଦୃଶ ନିର୍ମାଣ ହୋଇଥାଏ । ତକ୍ଷଶୀଳାରେ ଏହିଭଳି ସ୍ତୂପ ଆବିଷ୍କାର ହୋଇଛି । ଏହାକୁ ପ୍ରତ୍ନତାତ୍ତ୍ୱିକ ମାନେ ମନ୍ଦିର କହୁଛନ୍ତି । ଲଳିତଗିରିରେ ବାହାରି ଥିବା ଏହି ମନ୍ଦିରଟି ଭାଙ୍ଗି ଯାଇଛି । କେବଳ ମାଟି ତଳୁ ସ୍ତୂପର ନିମ୍ନ ଅଂଶ ବାହାରିଛି ।

ଗୌତମ ବୁଦ୍ଧ ଜୀବିତାବସ୍ଥାରେ କୌଣସି ଗ୍ରନ୍ଥ ଲେଖି ଯାଇ ନଥିଲେ । ତାଙ୍କ ପରିନିର୍ବାଣର କିଛି ସମୟ ପରେ ରାଜ ଗୃହର ସପ୍ତପର୍ଣ୍ଣି ଗୁହାରେ ରାଜା ଅଜାତଶତ୍ରୁଙ୍କ ସମର୍ଥନରେ ସ୍ଥବିର ମହାକାଶ୍ୟପଙ୍କ ମନ୍ତ୍ରଣାରେ ବୌଦ୍ଧଧର୍ମର ସ୍ଥିରତା ପାଇଁ ଏକ ଅଧିବେଶନ ବସିଥିଲା । ଏହି ଅଧିବେଶନରେ ପ୍ରାୟ ୫୦୦ ଭିକ୍ଷୁ ଯୋଗ ଦେଇଥିଲେ ଏହାକୁ ପ୍ରଥମବୌଦ୍ଧ ସଙ୍ଗୀତି କୁହାଯାଏ । ଏହା ପ୍ରାୟ ଖ୍ରୀଷ୍ଟ ପୂର୍ବ ୫୪୩ ରେ ବସିଥିଲା । ଏହି ସଭାରେ ମହାସ୍ଥବିର ଆନନ୍ଦ ଧର୍ମ ବିଷୟରେ ଯେଉଁସବୁ ବୁଦ୍ଧ ବଚନ ଆବୃତ୍ତି କରିଥିଲେ ତାହା ଧର୍ମ ନାମରେ ଓ ମହାସ୍ଥବିର ଉପାଲି ବିନୟ ବିଷୟରେ ଯେଉଁ ବୁଦ୍ଧ ବଚନ କହିଥିଲେ ତାହା ବିନୟ ନାମରେ ଲେଖା ହୋଇଥିଲା । ତଥାଗତ ବୁଦ୍ଧଙ୍କ ମହାପରିନିର୍ବାଣ ଖ୍ରୀଷ୍ଟପୂର୍ବ ୫୪୩ରେ ଘଟିଥିଲା । ଏହାର ୧୦୦ ବର୍ଷପରେ ବୈଶାଳୀରେ ରାଜା କାଳାଶୋକଙ୍କ ଆନୁକୂଲ୍ୟରେ ମହାମତି ଯଶ ମହାସ୍ଥବିରଙ୍କ ନେତୃତ୍ୱରେ ଦ୍ୱିତୀୟ ମହାସଙ୍ଗୀତି ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ୭୦୦ ଭିକ୍ଷୁ ଯୋଗ ଦେଇଥିଲେ । ଏହି ସଭାରେ ଛୋଟ ଛୋଟ ଶିକ୍ଷା ବିଷୟ ଆଲୋଚିତ ହୋଇ ଲେଖା ଯାଇଥିଲା । ପୁନର୍ବାର ବୁଦ୍ଧଙ୍କ ପରିନିର୍ବାଣର ୨୦୦ ବର୍ଷ ପରେ ପାଟଳିପୁତ୍ରରେ ସମ୍ରାଟ ଅଶୋକଙ୍କ ପୃଷ୍ଠପୋଷକତାରେ ତୃତୀୟ ସଙ୍ଗୀତି ଆହୂତ ହୋଇଥିଲା ଓ ଏହି ସଭାରେ ହଜାରେ ଭିକ୍ଷୁ ଯୋଗ ଦେଇଥିଲେ । ଏହି ସଭାରେ ପୌରହିତ କରିଥିଲେ ସ୍ଥବିର 'ମୋଦ୍‌ଗଲିପୁତ୍ର' । ତେଣୁ କେତେକ ଧାରଣା କରନ୍ତି ଅଶୋକଙ୍କୁ ଖୁବ୍ ସମ୍ଭବତଃ ବୌଦ୍ଧଧର୍ମରେ ଉପଗୁପ୍ତ ଦୀକ୍ଷିତ ନ କରି ମୋଦଗଲିପୁତ୍ର ଦୀକ୍ଷିତ କରିଥିଲେ । ସେ ଯାହାହେଉ ଏହି ସଭାରେ ପ୍ରଥମ ଓ ଦ୍ୱିତୀୟ ସଙ୍ଗୀତିରେ ସଂକଳିତ ବୌଦ୍ଧଶାସ୍ତ୍ରର ସୂତ୍ର ଓ ବିନୟପିଟକ ସମାଲୋଚିତ ଓ ସ୍ୱୀକୃତ ହେଲା ଏବଂ ପୃଥକ ଭାବେ ଅଭି ଧର୍ମପିଟକର ଅସ୍ତିତ୍ୱ ପ୍ରସ୍ତାବିତ ହେଲା । ନିଜେ ମୋଦ୍‌ଗଲିପୁତ୍ର ଅଭିଧର୍ମପିଟକର କଥାବସ୍ତୁ ସଂକଳନ କଲେ । ଏହି ତିନି ଧର୍ମ ମହାସଭାର ବିଷୟ ବସ୍ତୁକୁ ତ୍ରିପିଟକ କୁହାଯାଏ । ପିଟକ କହିଲେ ଝୁଡ଼ି ବା ପାତ୍ରକୁ ବୁଝାଏ । ମାତ୍ର ପାଲିଭାଷାରେ ପିଟକର ଅର୍ଥ କିମ୍ବଦନ୍ତୀ । ତ୍ରିପିଟକ କହିଲେ ସୂତ୍ର ପିଟକ– ବିନୟ ପିଟକ–ଅଭିଧର୍ମ ପିଟକକୁ ବୁଝାଏ ।

ଏହି ତ୍ରିପଟକ ବୌଦ୍ଧ ସାହିତ୍ୟର ପରିଭାଷିକ ଅର୍ଥରେ ବୁଦ୍ଧଙ୍କର ଉପଦେଶ, କଥୋପକଥନ, ଉପାଖ୍ୟାନ, ବିଧାନ ପ୍ରଭୃତିରେ ପରିପୂର୍ଣ୍ଣ ବିରାଟ ଶାସ୍ତ୍ର ନାମରେ ଅଭିହିତ । ସ୍ଥବିରବାଦ ବା ଥେରବାଦର ଭାଷା ପାଲି ଥିବାରୁ ତ୍ରିପିଟକର ଭାଷା ପାଲି । ମାତ୍ର ସର୍ବାସ୍ତିବାଦୀ ମାନଙ୍କର ତ୍ରିପିଟକ ମିଶ୍ର ସଂସ୍କୃତ ଓ ମହାସାଂଘିକମାନଙ୍କର ପ୍ରାକୃତ । ସେହି ସମୟରେ କଳିଙ୍ଗର ଭାଷା ପାଲି ଥିଲା ଓ ସମସ୍ତ ବୌଦ୍ଧ ଜଗତରେ ପାଲିଭାଷା ପ୍ରଚଳିତ ଥିଲା । ଏଥିରୁ ମନେହୁଏ ବୌଦ୍ଧମାନଙ୍କ ମଧ୍ୟରେ କଳିଙ୍ଗର ବହୁ ଶ୍ରମଣ ଥିଲେ । ସ୍ୱର୍ଗତଃ ଚକ୍ରଧର ମହାପାତ୍ର ଧାରଣା କରନ୍ତି ବୁଦ୍ଧଙ୍କର ଘର ଓଡ଼ିଶା ଥିଲା । ତା ନ ହେଲେ କଳିଙ୍ଗର ଭାଷା ସମସ୍ତ ବୌଦ୍ଧମାନଙ୍କର ଭାଷା ହୋଇ ନ ଥାନ୍ତା ।

ବୁଦ୍ଧଙ୍କ ପରଠୁ ଥେରବାଦ ବିଭିନ୍ନ ପର୍ଯ୍ୟାୟରେ ଆଗେଇ ଯାଇ ପ୍ରଥମେ ବାଧା ପାଇଥିଲା ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ କନିଷ୍କଙ୍କ ସମୟରେ । କନିଷ୍କ ପ୍ରଥମେ କେତେଗୋଷ୍ଠୀୟ ଦେବତାମାନଙ୍କର ଉପାସକ ଥିଲେ । ପରେ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଭଳି ବୌଦ୍ଧଧର୍ମ ଗ୍ରହଣ କରି ବୌଦ୍ଧଧର୍ମର ଉନ୍ନତି ପାଇଁ ସବୁ ପ୍ରକାର ତ୍ୟାଗ ସ୍ୱୀକାର କରିଥିଲେ । ତାଙ୍କ ସହାୟତାରେ କୁଣ୍ଡଳବନ ବା ଜାଳନ୍ଧର ବିହାରରେ ଆଚାର୍ଯ୍ୟ ଅଶ୍ୱଘୋଷଙ୍କ ଗୁରୁ ପାର୍ଶ୍ୱ ତଥା ବସୁମିତ୍ରଙ୍କ ସଭାପତିତ୍ୱରେ ସମ୍ମିଳ ହୋଇଥିଲା । ଏହି ମହାସଭାରେ ୫୦୦ ଭିକ୍ଷୁ ଯୋଗ ଦେଇଥିଲେ ଏବଂ ଏହି ସଙ୍ଗୀତିରେ ସଂଗୃହୀତ ବୁଦ୍ଧବାଣୀ ସମୂହ ସଂସ୍କୃତ ଭାଷାରେ ଅନୁଦିତ ହୋଇ ଅଶ୍ୱଘୋଷଙ୍କ ସଂଶୋଧନ ପରେ ତାମ୍ର ପତ୍ରରେ ଲେଖା ଯାଇଥିଲା । ଏହି ସଂଗୀତିରେ ସଂଗୃହୀତ ବାଣୀ ଗୁଡ଼ିକ ମହାବିଭାଷା ନାମକ ତ୍ରିପିଟକର ଭାଷ୍ୟ । ଏହି ମହାସଭାରେ ପୂର୍ବରୁ ପ୍ରଚ୍ଚର ହୋଇଥିବା ଥେରବାଦ ବଦଳରେ ମହାଯାନ ମତ ପ୍ରବଳ ହେଲା । ଫଳରେ ସମଗ୍ର ବୌଦ୍ଧ ଜଗତରେ ମହାଯାନ ମତ ପ୍ରଚ୍ଚର ହେଲା । ମହାଯାନମାନେ ପୂର୍ବରୁ ପ୍ରଚ୍ଚଳିତ ଥେରବାଦକୁ ହୀନଯାନ ଓ ନିଜକୁ ମହାଯାନୀ ବୋଲି ବ୍ୟକ୍ତ କଲେ, ମାତ୍ର ଥେରବାଦୀମାନେ କେବେ ନିଜକୁ ହୀନଯାନୀ ବୋଲି କହନ୍ତି ନାହିଁ । ହୀନଯାନୀମାନେ ଆସ୍ପୃହ ଓ ସାଧନା ଦ୍ୱାରା ନିଜର ନିର୍ବାଣ ଓ ଅର୍ହତ୍ୱ ପ୍ରାପ୍ତି ପାଇଁ ସତତ ବ୍ୟସ୍ତ– ସେମାନେ ନିଜର ନିର୍ବାଣ ବ୍ୟତୀତ ଅପରର କଥା ଚିନ୍ତା କରନ୍ତି ନାହିଁ । ମାତ୍ର ମହାଯାନୀମାନଙ୍କ ଆଦର୍ଶ ସଂପୂର୍ଣ୍ଣ ପୃଥକ । ସେମାନେ ନିଜର ନିର୍ବାଣ ସ୍ପୃହନ୍ତି ନାହିଁ । ସେମାନେ ଇଚ୍ଛା କରନ୍ତି ଜଗତ ହିତାର୍ଥେ ଜୀବନ ଉତ୍ସର୍ଗ କରିବା । ତେଣୁ ସମସ୍ତେ ନିର୍ବାଣ ବା ମୋକ୍ଷ ଲାଭକରିବା ସେମାନଙ୍କର କାମନା । ତେଣୁ ଭୀମଭୋଇ ଯଥାର୍ଥରେ ଗାଇଛନ୍ତି– 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।'

ଲଳିତଗିରି ଖନନ ସମୟରେ ଯେଉଁ ବିଭିନ୍ନ ସ୍ତରର ଚଟାଣମାନ ବାହାରିଛି ଖୁବ୍ ସମ୍ଭବତଃ ତାହା ମୂଳ ବୌଦ୍ଧ ଥେରବାଦର, ମହାଯାନୀମାନଙ୍କର ଏବଂ ବଜ୍ରଯାନୀ ମାନଙ୍କର । ପ୍ରତି ସ୍ତରରେ ସ୍ତୂପ, ବୁଦ୍ଧଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ସ୍ତୂପଗୁଡ଼ିକ କାଳକ୍ରମେ ଭାଙ୍ଗି ଯାଇଛି । ଏହି ଭାଙ୍ଗିବା କାର୍ଯ୍ୟ କୌଣସି ବୌଦ୍ଧ ସଂପ୍ରଦାୟ କରିଥିବେ ଏଭଳି ଧାରଣା କରିବା ଅମୂଳକ । କାହିଁକି ନା ସ୍ତୂପ ବା ବୁଦ୍ଧଙ୍କ ମୂର୍ତ୍ତି ସମସ୍ତଙ୍କର ଧ୍ୟେୟ । ତେଣୁ ସେମାନେ ତାହା କାହିଁକି ଭାଙ୍ଗିବେ ?

ମହାଯାନ ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀ ଠାରୁ ପ୍ରାୟ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଆସିଲା ପରେ ପ୍ରାୟ ୭ମ ୮ମ ଶତାବ୍ଦୀରେ ବିରାଟ ପରିବର୍ତ୍ତନ ଦେଖାଦେଲା । ମନ୍ତ୍ର, ତନ୍ତ୍ର, ମୁଦ୍ରା, ନ୍ୟାସ, ମଣ୍ଡଳ ପ୍ରଭୃତି ତାନ୍ତ୍ରିକକ୍ରିୟାକର୍ମ ମହାଯାନରେ ପ୍ରବେଶ କଲା । ଫଳରେ ଧର୍ମ ଜଗତରେ ଉଦ୍ଭବ ହେଲା ଏକ ଅଭିନବ ମହାଯାନ ଧର୍ମ । ଏହି ମହାଯାନକୁ ସାଧାରଣ ଭାବେ ତାନ୍ତ୍ରିକ ମହାଯାନ କୁହାଯାଏ । ଏହି ଧର୍ମର ଉତ୍ପତ୍ତି ସ୍ଥଳ ଓଡ଼ିଶାର ସିଦ୍ଧସାଧକ ସରହ, ଅନଙ୍ଗ ବଜ୍ର, ଇନ୍ଦ୍ରଭୂତି ଆଦି ବଜ୍ରଯାନର ସମୃଦ୍ଧି ଓ ପ୍ରସ୍ତାର ପାଇଁ ବହୁ ଚେଷ୍ଟା କରି ଥିଲେ । ସେମାନଙ୍କ ଚେଷ୍ଟା ଫଳରେ ବଜ୍ରଯାନ ଭାରତ ଭୂଇଁ ଟପି ତିବ୍ବତ, ଚୀନ, ଜାପାନ ଆଦିରେ ପ୍ରସ୍ତାରିତ ଓ ଗୃହୀତ ହୋଇଥିଲା । ଏବେବି ଚୀନ, ଜାପାନ ଆଦିରେ ବଜ୍ରଯାନ ପୂର୍ବଭଳି ଆଦର-ଲାଭ କରିଛି ।

ଲଳିତଗିରି, ମାଧବପୁର ମହାବିହାର ଓ ରତ୍ନଗିରି ମହାବିହାରରେ ବଜ୍ରଯାନ ସଂସ୍କୃତିର ବହୁ ସଙ୍କେତ ଦେଖିବାକୁ ମିଳେ । ପ୍ରତ୍ୟେକ ବିହାରରେ ବଜ୍ରସତ୍ତ୍ୱଙ୍କ ମୂର୍ତ୍ତି ରହିଛି ଏବଂ ବଜ୍ରସତ୍ତ୍ୱଙ୍କ ହାତରେ ବଜ୍ର ରହିଛି । ବଜ୍ରକୁ ଆଶ୍ରୟ କରି ସାଧନାର ଯେଉଁ ପଥ ତାହା ହେଉଛି ବଜ୍ରଯାନ । ଇନ୍ଦ୍ରଭୂତିଙ୍କ ଜ୍ଞାନସିଦ୍ଧିରେ କୁହା ହୋଇଛି– 'ବୋଧିଚିତ୍ତଂ ସ୍ଥିର ସ୍ୱଭାବ ବଜ୍ରମ୍'; ବୋଧିସତ୍ତ୍ୱ ହେଉଛନ୍ତି ବଜ୍ର । କଠୋର ସାଧନା ଫଳରେ ବୋଧିଚିତ୍ତ ସ୍ଥିର ସ୍ୱଭାବ ପ୍ରାପ୍ତ ହୁଏ । ଏହା ବଜ୍ରଭଳି ଅଚ୍ଛେଦ୍ୟ, ଅଭେଦ୍ୟ ଓ ଅଦାହ୍ୟ । ବୋଧିଚିତ୍ତର ବଜ୍ର ସ୍ୱଭାବ ଲାଭ ହେଲେ ସାଧକର ବୋଧିଜ୍ଞାନ ହୁଏ । ବୋଧିଚିତ୍ତର ଅର୍ଥ– ବୋଧି ବା ସମ୍ୟକ ଜ୍ଞାନ ଲାଭର ଦୃଢ଼ ସଂକଳ୍ପ । ବଜ୍ରଯାନ ମତରେ ସ୍ତ୍ରୀ ପୁରୁଷ ଏକତ୍ର ଅବସ୍ଥାରେ ଚିତ୍ତର ଯେଉଁ ଚରମ ଆନନ୍ଦ ଭାବ ଉତ୍ପତ୍ତି ହୁଏ ତାହା ହେଉଛି ବୋଧିଚିତ୍ତ । ଯେଉଁମାନେ ବଜ୍ର ସ୍ୱଭାବ ଲାଭ କରିଛନ୍ତି ତାଙ୍କୁ କୁହାଯାଏ ବଜ୍ର ସତ୍ତ୍ୱ ବା

ବଜ୍ରଧର । ବଜ୍ରଯାନରେ ଗୁରୁ ହେଉଛନ୍ତି ଯଥା ସର୍ବସ୍ୱ— ସେ ବଜ୍ରଧାରୀ ।

ଲଳିତଗିରିରେ ଖ୍ରୀଷ୍ଟାବ୍ଦ ପ୍ରଥମ ଶତକ ବା ତାହାର ଅଳ୍ପ ସମୟ ପୂର୍ବରୁ ଲଳିତ ବିସ୍ତର ନାମରେ ଏକ ଶାସ୍ତ୍ର ରଚିତ ହୋଇଥିଲା । ଲଳିତ ବିସ୍ତର ହେଉଛି ମହାଯାନ ବୌଦ୍ଧଙ୍କ ଗ୍ରନ୍ଥ ଏବଂ ତାହାରି ଅନୁସାରେ 'ଜାତକଜ୍ୟୋତି କଥା'ର ବୁଦ୍ଧ ଚରିତ ବର୍ଣ୍ଣିତ ହୋଇଛି । ଦୀର୍ଘନିକାୟର ମହାପଦାନ ସୁତ୍ତିକୁ ଭିତ୍ତି କରି 'ଲଳିତ ବିସ୍ତାର' ଲେଖା ଯାଇଛି । ଡଃ ନବୀନ କୁମାର ସାହୁ ଲଳିତ ବିସ୍ତର ଓଡ଼ିଶାରେ ଲେଖା ହୋଇଥିବା କଥା ଉଲ୍ଲେଖ କରିଛନ୍ତି । ଖୁବ୍ ସମ୍ଭବତଃ 'ଲଳିତ ବିସ୍ତର' ଲେଖା ହୋଇଥିବାରୁ ସ୍ଥାନଟି ଲଳିତଗିରି ନାମରେ ବିଖ୍ୟାତ । ଲଳିତଗିରିର ପୂର୍ବ ଏବଂ ପଶ୍ଚିମରେ ପାହାଡ ଉପରେ ଦୁଇଟି ବିରାଟ ବିରାଟ ସ୍ତୂପ ଥିଲା । ଏବେ ଯେଉଁ ପାହାଡର ଉପରେ ଥିବା ସ୍ତୂପରୁ ଦୁଇଟି ଅସ୍ଥି ମିଳିଛି ସେ ପାହାଡକୁ ଲଣ୍ଡା ପାହାଡ କହନ୍ତି । ତାହା ଲଳିତଗିରିର ପଶ୍ଚିମରେ ଅବସ୍ଥିତ । ପୂର୍ବରେ ଅବସ୍ଥିତ ବଡ ପାହାଡ ଉପରେ ଗୋଟି ଭଗ୍ନ ବୌଦ୍ଧ ସ୍ତୂପ ରହିଥିବା ଜଣାଯାଏ । ଏହି ସ୍ତୂପଟି ଏ ପର୍ଯ୍ୟନ୍ତ ଖୋଲା ଯାଇ ନାହିଁ । ଖୋଲା ହେଲାପରେ ତା ମଧ୍ୟରେ କଣ ଅଛି ଜଣାପଡ଼ିବ । ହୁଏତ ତା ମଧ୍ୟରେ ଥିବା ବୁଦ୍ଧଙ୍କ ପବିତ୍ର ଦେହାବଶେଷ ସୁନା ରୁପା ଲୋଭରେ ବହୁ ପୂର୍ବରୁ ଗ୍ଳି ଯାଇଥିବ ।

ଲଳିତଗିରି ସ୍ତୂପରୁ ମିଳିଥିବା ଅସ୍ଥି ବୁଦ୍ଧଙ୍କର ବୋଲି ଧାରଣା କରାଯାଏ । କାହିଁକି ନା ଅସ୍ଥି ଯେଉଁଭଳି ଭାବରେ ଥିଲା ତାହା ସାଧାରଣ ଶ୍ରମଣଙ୍କର କେବେ ହୋଇ ନଥିବ । ପୁଣି ସେହି ଅସ୍ଥି ଧାରରେ କାହାରି ନାମ ଉଲ୍ଲେଖ ହୋଇ ନାହିଁ । ସେଥିପାଇଁ ସାଧାରଣତଃ ମନେହୁଏ ଏହି ଅସ୍ଥି ବୁଦ୍ଧଙ୍କର । ପାଲି ସାହିତ୍ୟରୁ ଜଣାଯାଏ ବୁଦ୍ଧଙ୍କ ପରିନିର୍ବାଣ ପରେ ତାହାଙ୍କ ଦେହର ସ୍ମାରକ ଗୁଡ଼ିକୁ ନେବା ପାଇଁ ଲଛବୀ, ମଲ୍ଲ, ଶାକ୍ୟ, କୁଲୟ, କୋଳୀୟ ପ୍ରଭୃତିଙ୍କ ମଧ୍ୟରେ ବିବାଦ ଲାଗିଲା । ଦ୍ରୋଣ ନାମରେ ଜଣେ ବ୍ରାହ୍ମଣ ସେହି ବିବାଦକୁ ମେଣ୍ଟାଇବାକୁ ଯାଇ ଗୋଟିଏ କୁମ୍ଭ ଦ୍ୱାରା ମାପି ଆଠ ଭାଗ କରି ଅସ୍ଥିଗୁଡ଼ିକୁ କୁଶୀନଗରର ମଲ୍ଲଗଣଙ୍କୁ, ମଗଧରାଜ ଅଜାତଶତ୍ରୁଙ୍କୁ, ବୈଶାଳୀର ଲିଚ୍ଛବୀମାନଙ୍କୁ, କପିଳବସ୍ତୁର ଶାକ୍ୟମାନଙ୍କୁ, ଅଲକପ୍ପର ବୁଲୟମାନଙ୍କୁ, ରାମ ଗ୍ରାମର କୋଳୀୟମାନଙ୍କୁ, ବେଠଦ୍ୱୀପର ବ୍ରାହ୍ମଣ ଓ ପାବାର ମଲ୍ଲମାନଙ୍କୁ, ପ୍ରଦାନ କରିଥିଲେ । ସେମାନେ ସେହି ଅସ୍ଥିଗୁଡ଼ିକୁ ନେଇ ରାଜଗିରି, ରାମଗ୍ରାମ, ବୈଶାଳୀ, କପିଳବାସ୍ତୁ, ଅଲ୍ଲକପ୍ପ, ବେଟଦୀପ, ପାବା ଓ କୁଶୀନଗରରେ ସ୍ତୂପମାନ ନିର୍ମାଣ କରିଥିଲେ । ଅଶୋକ କେବଳ ରାମଗ୍ରାମ ବ୍ୟତୀତ ଅନ୍ୟ ସ୍ତୂପଗୁଡ଼ିକ ଖୋଳି ଓ ମଗଧରାଜ ଅଜାତଶତ୍ରୁଙ୍କ ଦ୍ୱାରା ସଂଗୃହୀତ ଓ ସୁନିହିତ ବୁଦ୍ଧଙ୍କ ଦେହାବଶେଷକୁ ନେଇ ୮୪ ହଜାର ଧର୍ମରାଜିକା ବା ସ୍ତୂପ ନିର୍ମାଣ କରିଥିଲେ। ସେହି ୮୪ ହଜାର ସ୍ତୂପରୁ ନିଶ୍ଚିତ ଭାବେ କଳିଙ୍ଗରେ ଶତାଧିକ ସ୍ତୂପ ନିର୍ମାଣ ହୋଇଥିବ । କିଏ ନାହିଁ କରିବ ସେହି ସ୍ତୂପରୁ କେତେକ ଲଳିତଗିରିରେ ନିର୍ମାଣ ହୋଇ ନଥିଲା ।

ଐତିହାସିକମାନେ ଧାରଣା କରନ୍ତି ଲଳିତଗିରି, ଉଦୟଗିରି ଓ ରତ୍ନଗିରିକୁ ନେଇ ପୁଷ୍ପଗିରି ବୌଦ୍ଧ ବିହାର ଗଢ଼ି ଉଠିଥିଲା । ଏହି ତିନୋଟି ବୌଦ୍ଧ ବିହାର ମଧ୍ୟରୁ ଲଳିତଗିରି ବୌଦ୍ଧ ବିହାର ପୁରାତନ । ଲଳିତଗିରି ସମ୍ପୂର୍ଣ୍ଣଭାବେ ଖନନ ହେଲା ପରେ କେତେକ ତଥ୍ୟ ମିଳି ପାରେ । ଲଳିତଗିରି ବୌଦ୍ଧ ବିହାର ନିକଟରେ ଗୋଟିଏ ପୁରୁଣା ବରଗଛ ରହିଛି । ସେହି ଗଛଟି ଯେ ଦୁଇ ହଜାର ବର୍ଷ ତଳର ଏହା କହିବା ଠିକ୍ ନୁହେଁ। ତେବେ ସେ ତାର ଶୈଶବ କାଳରେ ଲଳିତଗିରିର ବିଭବ ଦେଖିଥିବ । ତାର ଭାଷା ଯଦି ବୁଝି ହୁଅନ୍ତା ତେବେ ବହୁ କଥା ଜଣା ପଡନ୍ତା ।

ପରବର୍ତ୍ତୀ କାଳରେ ଗଢ଼ି ଉଠିଥିବା ଏକ ମନ୍ଦିର ସମ୍ମୁଖରେ ଗୁପ୍ତ ଯୁଗୀୟ ଏକ ସ୍ତମ୍ଭ ରଖାଯାଇଛି । ଏହି ସ୍ତମ୍ଭର ସୁରୁକଳା ଅତୀବ ଚମତ୍କାର । ସ୍ତମ୍ଭର ଉପରିଭାଗରେ ବୁଦ୍ଧଙ୍କ ମୁଖ ଚିତ୍ରିତ ହୋଇଛି । ତାର ନିମ୍ନ ଭାଗରେ ପ୍ରସ୍ଫୁଟିତ ପଦ୍ମର ଚିତ୍ର ଖୋଦିତ । ଏହି ଖମ୍ବ ବା ଦୀପ ସ୍ତମ୍ଭଟା ଭୂଷାର ସୃଷ୍ଟି ପାଖରେ ଏକ ଲକ୍ଷ୍ମୀ ଚିତ୍ର ଖୋଦିତ ହୋଇଛି । ଏହି ଖମ୍ବରେ ଖୋଦିତ କାରୁ କାର୍ଯ୍ୟ ଅତୀବ ଚମତ୍କାର ଏହା ଲେଖୁ… ଅନାବଶ୍ୟକ ।

ଉଦୟଗିରିର ନାମ ଶୁଣିଲେ ସ୍ୱତଃ ମନେ ହୋଇଥାଏ କାହା… ଉଦୟାଚଳରେ ସେ ପାହାଡଟି ଥିବାରୁ ତାହାକୁ ଉଦୟଗିରି କୁହାଯାଏ… ଏ ପ୍ରଶ୍ନର ଉତ୍ତର ୧୯୮୭ରେ ମିଳିଲା— ପ୍ରସିଦ୍ଧ 'ମାଧବପୁ… ମହାବିହାର'ର ଉଦୟାଚଳରେ ପାହାଡଟି ଥିବାରୁ ତାହା ଉଦୟଗି… ନାମରେ ନାମିତ ହୋଇଛି । ଲଳିତଗିରି ଭଳି ଉଦୟଗିରି ଖୁବ୍ ପୁରୁ… ବୌଦ୍ଧପୀଠ ନୁହେଁ । ଏହି ପୀଠଟି ୮ମ କିମ୍ବା ୯ମ ଶତାବ୍ଦୀ ପୂର୍ବ… ନୁହେଁ । ଏହି ପୀଠରେ ଥିବା ଶ୍ରମଣ ତଥା ଉପାସକମାନଙ୍କ ପାଇଁ ଖୋ… ହୋଇଥିବା ବାମ୍ଫୀରେ ଯେଉଁ ଶିଳାଲେଖଟି ଅଛି ତାହାର ଅକ୍ଷର ହେ… ନବମ ଶତାବ୍ଦୀର । ତେଣୁ ନବମ ଶତାବ୍ଦୀ ପୂର୍ବରୁ ସେଠାରେ ଥି… ବିହାର ଓ ସ୍ତୂପ ଗଢ଼ି ଉଠିଥିବା ସମ୍ଭବ ନୁହେଁ । କାହିଁକି… ବିହାର ଠାରୁ ମାଇଲକ ମଧ୍ୟରେ ପାଣିର କୌଣସି ସନ୍ଧାନ ମି… ନାହିଁ । ସାଧାରଣତଃ ମଠ— ବିହାର ଗୁଡ଼ିକ ଜଳାଶୟ ନିକଟରେ… ଉଠିଥାଏ । ଅବଶ୍ୟ ୨ ମାଇଲି ଖଣ୍ଡେ ଦୂରରେ ବିରୂପା ଓ ଗେଙ୍ଗୁଟି… ଅଛି । ତାହା କେବଳ ସ୍ନାନ ଶୌଚ ପାଇଁ ଆବଶ୍ୟକ ହୋଇପାରେ ।… ପାନୀୟ ଜଳ ପାଇଁ କୂପ ବା ବାମ୍ଫୀ ନିତ୍ୟାନ୍ତ ପ୍ରୟୋଜନ । ସେଥି… ମାଧବପୁର ମହାବିହାରକୁ ଲାଗି ଗୋଟିଏ ବାମ୍ଫୀ ସାମନ୍ତ ରାଜା ନାଗ… ଖୋଳାଇ ଥିଲେ । ବାମ୍ଫୀରେ ଲେଖା ହୋଇଥିବା ଅକ୍ଷରରୁ କେ… ଧାରଣା କରନ୍ତି ଏହା ହେଉଛି ତତ୍କାଳୀନ କଳିଙ୍ଗଲିପି । ପୂର୍ବ ଦ… ଭାରତୀୟ ଲିପି ନାମରେ ଏହା ବିଖ୍ୟାତ । ଲିପିଟିରେ ଲେଖା ହୋଇ… 'ରାଣକ ଶ୍ରୀ ବଜ୍ରଣାରସ୍ୟବାପୀ' । ଏହି ଲିପିଟି ଆରମ୍ଭ ପୂର୍ବରୁ ଗୋ… ସ୍ୱସ୍ତିକ ଚିହ୍ନ ଓଡ଼ିଆ ୨ ଭଳି ଅଛି ।

୧୯୮୭ ମସିହାରେ ଉଦୟଗିରିର ଗୋଟିଏ ମହାବିହାର… ଗୋଟିଏ ସ୍ତୂପ ଖୋଳା ହୋଇ ବାହାରିଛି । ପୂର୍ବରୁ ଏହି ପୀଠରେ… ବାମ୍ଫୀର ଟିକିଏ ପୂର୍ବକୁ ଗୋଟିଏ ବିହାର ଥିବା ଧାରଣା କରି କିଛି… ଖୋଳା ହୋଇଥିଲା । ମାତ୍ର ତାହା ଏପର୍ଯ୍ୟନ୍ତ ଖୋଳା ହୋଇ କିଛି ବ… ନାହିଁ । ବାମ୍ଫୀର ଦକ୍ଷିଣକୁ ଥିବା ମାଟି ଇଟା ଗଦାକୁ କେନ୍ଦ୍ରୀୟ ପ୍ରତ୍ନ… ମାନେ ଖୋଳି ବାହାର କରିଛନ୍ତି ଗୋଟିଏ ସ୍ତୂପ ଓ ଗୋଟିଏ ବିହ… ବାମ୍ଫୀ ଆଡ଼ୁ ଗଲେ ପ୍ରଥମେ ସ୍ତୂପଟି ପଡେ ଓ ତାର ଅଳ୍ପ ଦକ୍ଷିଣକୁ ବିହ… ରହିଛି । ସ୍ତୂପଟିର ଗଢ଼ଣ ରତ୍ନଗିରିରୁ ବାହାରିଥିବା ସ୍ତୂପର ଗଢ଼ଣ… ଟିକିଏ ଭିନ୍ନ । ବୋଧହୁଏ ତାହା ଘଣ୍ଟିଭଳି ଗଠିତ ହୋଇଥିଲା ।… କେତେବର୍ଷ ତଳେ ଭୁବନେଶ୍ୱର ନିକଟରେ ଥିବା ଧଉଳୀ ପ… ଉପରେ ଜାପାନୀ ବୌଦ୍ଧ ଗୁରୁ ଫୁଜି ମହାରାଜ ନିର୍ମାଣ କରିଥିବ… ଭଳି । ସ୍ତୂପ ଉପର ପାଞ୍ଚଟି ଛତା ଭଳି ଦେଖାଯାଏ । ଏହି ପାଞ୍ଚଟି… ପଞ୍ଚଶୀଳର ପ୍ରତୀକ ।

ସ୍ତୂପ ହେଉଛି ଉପାସନାର ବସ୍ତୁ । ପ୍ରଥମେ ସ୍ତୂପରେ ବୁଦ୍ଧଙ୍କର ବି… ସ୍ମାରକ ରଖି ସେହି ସ୍ତୂପକୁ ବୁଦ୍ଧ ମନେ କରି ଉପାସନା କରୁଥି… ବୌଦ୍ଧ ମହା ଭିକ୍ଷୁ ସଂଘ ମାଧବପୁରରେ ଯେଉଁ ସ୍ତୂପଟି ନିର୍ମାଣ କରି… ତାହାର ଚତୁର୍ଦ୍ଦିଗରେ ଚାରୋଟି ବୁଦ୍ଧଙ୍କର ମୂର୍ତ୍ତି ଗଠନ କରି… କରିଥିବାର ଦେଖାଯାଏ । ସ୍ତୂପଟି ଖନନ ହୋଇ ବାହାରିବା… ସ୍ତୂପରେ ଥିବା ଗୋଟିଏ ବୁଦ୍ଧ ମୂର୍ତ୍ତି ତଳେ ଖସି ପଡ଼ିଥିଲା । ଅ… ତିନୋଟି ବୁଦ୍ଧମୂର୍ତ୍ତି ସ୍ତୂପର ତିନି ଦିଗରେ ଏବେବି ରହିଛି । ଶାସ୍ତ୍ରାନୁ… କେନ୍ଦ୍ରରେ ବୈରୋଚନଙ୍କ ମୂର୍ତ୍ତି ରହିବାର କଥା । ସେ… ବୈରୋଚନଙ୍କ ମୂର୍ତ୍ତି କେଉଁଠାରେ ଦେଖିବାକୁ ମିଳେ ନାହିଁ । … ମୂର୍ତ୍ତିଟି ସ୍ତୂପ ଉପରେ ଥିଲା ବା ମଧ୍ୟରେ କେଉଁଠି ଥିବ । ବୈରୋ… ବ୍ୟତୀତ ପୂର୍ବ ଦିଗରେ ଅକ୍ଷୋଭ୍ୟ, ପଶ୍ଚିମରେ ଅମିତାଭ, ଉତ୍ତ… ଅମୋଘ ସିଦ୍ଧି ଓ ଦକ୍ଷିଣରେ ରତ୍ନସମ୍ଭବଙ୍କ ମୂର୍ତ୍ତି ରହିଛି । ଏହି ମୂର୍ତ୍ତି… ବୌଦ୍ଧମନ୍ତ୍ର 'ଓଁ ସ୍ତ୍ରୀ ଖଂ ହୁମ୍'ର ପ୍ରତୀକ ।

ମାଧବପୁର ମହାବିହାରର ପୂର୍ବ ଭାଗରେ ଥିବାଯେଉଁ ସ୍ତୂପଟି… ସେହି ସ୍ତୂପର ପୂର୍ବ ତରଫର ମଧ୍ୟ ଭାଗରେ ଯେଉଁ ବୁଦ୍ଧ ମୂର୍ତ୍ତି…

ତାହା ବଜ୍ର ପୂର୍ବେ ଖସି ପଡ଼ି ତଳେ ଥୁଆ ହୋଇଛି । ସେହି ମୂର୍ତ୍ତି ହେଉଛି ଅକ୍ଷୋଭ୍ୟଙ୍କର । ମୂର୍ତ୍ତିଟି ତଳେ ପଡ଼ିଯିବା ଦ୍ୱାରା ବୁଦ୍ଧ ମୂର୍ତ୍ତିଟିର ନାକ ଓ ମୁହଁରେ ଆଘାତ ଲାଗି ସାମାନ୍ୟ ଭାଙ୍ଗି ଯାଇଛି । ଅକ୍ଷୋଭ୍ୟ ଭୂମି ସ୍ପର୍ଶ ମୁଦ୍ରାରେ ବସିଛନ୍ତି । ତାଙ୍କର ବାମହାତ ପଦ୍ମାସନରେ ବସିଥିବା ନିଜ କୋଳରେ ରହିଛି । ଦକ୍ଷିଣ ହସ୍ତ ଦକ୍ଷିଣ ପାଦର ଆଣ୍ଠୁ ଉପର ଦେଇ ତଳକୁ ଲମ୍ବି ଆସିଛି ଭୂମିକୁ ସ୍ପର୍ଶ କରିବା ପାଇଁ । ସେ ବସିଛନ୍ତି ପ୍ରସ୍ଫୁଟିତ ପଦ୍ମ ଉପରେ । ପଦ୍ମର ନିମ୍ନରେ ... ଡେମ୍ଫ ତଳକୁ ଲମ୍ବି ଯାଇଛି । ତଳେ ସେହି ଡେମ୍ଫର ଦୁଇ ପାର୍ଶ୍ୱରେ ପାଞ୍ଚ ଫେଣା ସର୍ପର ନିମ୍ନରେ ଆଣ୍ଠୁ ଉଠାଇ ଦୁଇଜଣ ପୁରୁଷଙ୍କ ଚିତ୍ର । ସେହି ପୁରୁଷ ଦୁଇଜଣଙ୍କ ଦୁଇ ପାର୍ଶ୍ୱରେ ଦୁଇଟି ପଦ୍ମ କଢ଼ି ମଧ୍ୟରେ ଗୋଟିଏ ପଦ୍ମ ଫୁଲର ଚିତ୍ର । ଧ୍ୟାନମଗ୍ନ ଅକ୍ଷୋଭ୍ୟଙ୍କ ଦୁଇ ପାର୍ଶ୍ୱରେ ଦୁଇଟି ଶ୍ରମଣଙ୍କ ମୂର୍ତ୍ତି । ସେମାନେ ମଧ୍ୟ ପଦ୍ମ ଉପରେ ଛିଡ଼ା ହୋଇଛନ୍ତି । ତାଙ୍କ ବାମ କାନ୍ଧରେ ପଇତା । କଣ୍ଠରେ ରୁଦ୍ରାକ୍ଷର ମାଳା ଓ ମୁଣ୍ଡ ଉପରେ ଖୋସା । ଅକ୍ଷୋଭ୍ୟଙ୍କ ବାମ ଭାଗରେ ଥିବା ମୂର୍ତ୍ତିଟିର ଦକ୍ଷହସ୍ତରେ ଚାମର ଓ ବାମରେ ପଦ୍ମ ଥିବା ଦେଖାଯାଏ । ବାମ ଭାଗ ମୂର୍ତ୍ତିର ଦକ୍ଷହସ୍ତରେ ଚାମର ଓ ବାମରେ ଫୁଲ ସହିତ ଡାଳ ଥିବା ମନେ ହୁଏ । ଅକ୍ଷୋଭ୍ୟ କାହିଁକି ସବୁ ବୁଦ୍ଧଙ୍କ ମସ୍ତକରେ 'ଉଦିଷ୍ଟ । ମସ୍ତକ କାନ ମଧ୍ୟ ଲମ୍ବା । କେବଳ ଅକ୍ଷୋଭ୍ୟ ନୁହନ୍ତି ସ୍ତୂପରେ ଖଞ୍ଜା ଯାଇଥିବା ଅକ୍ଷୋଭ୍ୟ, ଅମିତାଭ, ଅମୋଘ ସିଦ୍ଧି ଓ ରତ୍ନ ସମ୍ଭବଙ୍କର ସ୍ତରରେ ବୌଦ୍ଧମାନଙ୍କର ଧାରଣୀ ମନ୍ତ୍ର "ୟେ ଧର୍ମା ହେତୁ ପ୍ରଭବାଃ ହେତୁଂ ତେଷାଂ ତଥାଗତୋ ହ୍ୟ ବଦ ତେଷାଞ୍ଚ ଯୋ ନିରୋଧ ଏବମ୍ବାଦି ମହାଶ୍ରମଣ" ଗୋଲାକାର ଭାବେ ଲେଖା ଯାଇଛି । ଏହି ସ୍ତରର ଦୁଇ ପାର୍ଶ୍ୱରେ ଦୁଇଟି ଗନ୍ଧର୍ବ ଫୁଲମାଳ ଧରି ବୁଦ୍ଧ ବା ଅକ୍ଷୋଭ୍ୟଙ୍କ ଆଡ଼କୁ ଉଡ଼ି ଆସୁଛନ୍ତି ।

ଅକ୍ଷୋଭ୍ୟ ହେଉଛନ୍ତି ନିଜେ ବୁଦ୍ଧ । ବହୁ ହିନ୍ଦୁ ଦେବତାଙ୍କ ପୂଜାରେ ଅକ୍ଷୋଭ୍ୟଙ୍କ କଥା ଲେଖା ହୋଇଛି । ହିନ୍ଦୁ ତନ୍ତ୍ରର ତାରାଙ୍କ ମସ୍ତକରେ ଅକ୍ଷୋଭ୍ୟ ଥିବା କୁହା ହୋଇଛି । ମାତ୍ର ଓଡ଼ିଶାର ଚିତ୍ର କଳା ସହିତ ଉତ୍ତର ଭାରତୀୟ ଚିତ୍ରକଳା ତଥା ସଂସ୍କୃତିରେ ଟିକିଏ ତଫାତ୍ ଅଛି । ଉତ୍ତର ଭାରତୀୟ ଅକ୍ଷୋଭ୍ୟଙ୍କ ବାହାନ ହାତୀ ନିମ୍ନରେ ଚିତ୍ରିତ ହୋଇଥିଲା ବେଳେ ମାଧବପୁର ମହାବିହାର ସମ୍ମୁଖରେ ଥିବା ସ୍ତୂପର ଅକ୍ଷୋଭ୍ୟଙ୍କ ତଳେ ମୁଚିଲିନ୍ଦ ସର୍ପ ଓ ବୋଧିସତ୍ତ୍ୱଙ୍କ ଚିତ୍ର ରହିଛି । ଯେତେବେଳେ ବୋଧିସତ୍ତ୍ୱ ଗୌତମ ବୁଦ୍ଧ ଦୀର୍ଘଦିନ ଧ୍ୟାନମଗ୍ନ ଥିଲେ ସେତେବେଳେ ତାଙ୍କୁ ଖରାବର୍ଷାରୁ ରକ୍ଷା କରିବା ପାଇଁ ମୁଚିଲିନ୍ଦ ନାମକ ଏକ ସର୍ପ ତାଙ୍କ ମୁଣ୍ଡ ଉପରେ ଫେଣା ଟେକି ରହିଥିଲା । ତାହାରି ଚିତ୍ର ଅକ୍ଷୋଭ୍ୟ ରୂପୀ ବୁଦ୍ଧଙ୍କ ତଳେ ଖୋଦିତ ହୋଇ ସେହି କାଳର କଥାକୁ ସ୍ମରଣ କରାଇ ଦେଉଥାଏ ।

ମାଧବପୁର ମହାବିହାରର ସମ୍ମୁଖରେ ଯେଉଁ ସ୍ତୂପଟି ବାହାରିଛି ସେହି ସ୍ତୂପର ଚତୁର୍ଦ୍ଦିଗରେ ସ୍ଥିତ ଚାରୋଟି ବୁଦ୍ଧ ମୂର୍ତ୍ତି ତଳେ ଯେଉଁ ପଞ୍ଚ ଫେଣା ନାଗର ଚିତ୍ର ଅଛି ତାହା ପଞ୍ଚଶୀଳର ପ୍ରତୀକ । ପଞ୍ଚଶୀଳ କହିଲେ ପ୍ରାଣୀହତ୍ୟା– ଚୋରୀ,– ବ୍ୟଭିଚାର–ମିଥ୍ୟା କଥନ ମାଦକଦ୍ରବ ସେବନ ନ କରିବା । ଭିକ୍ଷୁମାନେ, ପରିବ୍ରାଜକମାନେ ବୌଦ୍ଧ ବିହାରକୁ ଆସିଲେ ସେମାନେ ସ୍ତୂପକୁ ପରିକ୍ରମଣ କରିଥାନ୍ତି । ସେହି ସମୟରେ ବୁଦ୍ଧଙ୍କ ନିମ୍ନରେ ଥିବା ବୋଧିସତ୍ତ୍ୱଙ୍କ ମୂର୍ତ୍ତି ଉପରେ ଥିବା ପଞ୍ଚ ଫେଣା ନାଗ ସେମାନଙ୍କୁ ସୂଚେଇ ଦେଉଥାଏ ତୁମେ ପଞ୍ଚଶୀଳ ପାଳନ କର ।

ସାଧାରଣତଃ ବୁଦ୍ଧଙ୍କର ମୁଦ୍ରା ( ହେଉଛି ଆଠ ପ୍ରକାର– ଧ୍ୟାନମୁଦ୍ରା, ଭୂମିସ୍ପର୍ଶ ମୁଦ୍ରା, ଧର୍ମଚକ୍ର ମୁଦ୍ରା, ପିଣ୍ଡପାତ ମୁଦ୍ରା, ଅଭୟ ମୁଦ୍ରା, ପଦ୍ମାସନ ମୁଦ୍ରା, ପରି ନିର୍ବାଣ ମୁଦ୍ରା ଓ ବରଦ ମୁଦ୍ରା । ପଦ୍ମାସନେ ଉପବିଷ୍ଟ ହୋଇ କୋଳ ଉପରେ ଗୋଟିଏ ହାତ ଉପରେ ଆଉ ଗୋଟିଏ ହାତ ରଖିବା ମୁଦ୍ରାକୁ ଧ୍ୟାନ ମୁଦ୍ରା କୁହାଯାଏ । ପଦ୍ମାସନେ ଉପବିଷ୍ଟ ବୁଦ୍ଧଙ୍କ ବାମହାତ କୋଳରେ ଏବଂ ଦକ୍ଷ ହସ୍ତର ତର୍ଜନୀ ଅଙ୍ଗୁଳି ଭୂମି ନିର୍ଦ୍ଦେଶ କରିବା ମୁଦ୍ରାକୁ ଭୂମି ସ୍ପର୍ଶ ମୁଦ୍ରା କୁହାଯାଏ । ଯେତେବେଳେ ଶାକ୍ୟମୁନି ଗୌତମ ସମ୍ବୋଧିପ୍ରାପ୍ତର ପାଇଁ ତପସ୍ୟାରେ ବସିଥିଲେ ସେତେବେଳେ ମାର ତାଙ୍କ ସାଧନାକୁ ଭାଙ୍ଗି ବିଭିନ୍ନ ପ୍ରଶ୍ନ ପଚାରିଥିଲା ଓ ଶାକ୍ୟମୁନି ସେ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ତାର ସତ୍ୟତା ନିମିତ୍ତ ଭୂମିକୁ ସାକ୍ଷୀ ରଖିଥିଲେ । ଏହି ମୁଦ୍ରାଙ୍କର ମାର–ବିଜୟର ଅବ୍ୟବହିତ ପରେ ବୋଧିପ୍ରାପ୍ତି ସୂଚିତ ହେଉଛି । ଆସୀନ ବୁଦ୍ଧମୂର୍ତ୍ତିମାନଙ୍କରେ ସାଧାରଣତଃ ଏହି ମୁଦ୍ରା ବ୍ୟବହୃତ ହୁଏ । କୌଣସି ସ୍ଥାନରେ ବୋଧି ବୃକ୍ଷର ପତ୍ରବଳୀ ମସ୍ତକର ଉପରି ଭାଗରେ ଅଙ୍କିତ ହୋଇ ବୁଦ୍ଧତ୍ୱ ପ୍ରାପ୍ତିର ସୂଚନା ପ୍ରଦାନ କରେ । ମୟୂରଭଞ୍ଜ ଜିଲ୍ଲାର ଖିଚିଂରେ ଏହିଭଳି ଏକ ବୁଦ୍ଧ ମୂର୍ତ୍ତି ଥିବା ଦେଖିବାକୁ ମିଳେ । କେତେକ ଭୂମି ସ୍ପର୍ଶ ମୁଦ୍ରାର ବୁଦ୍ଧଙ୍କ ଦକ୍ଷହସ୍ତ ତଳେ ବସୁନ୍ଧରାର ଏକ ଛୋଟ ମୂର୍ତ୍ତି ଖୋଦିତ ହୋଇଥାଏ । ମାଧବପୁର ମହାବିହାର ଖନନ ପରେ ଗୋଟିଏ ବସୁନ୍ଧରାର ସୁନ୍ଦର ମୂର୍ତ୍ତି ମିଳିଛି । ଭୂମିସ୍ପର୍ଶ ମୁଦ୍ରାର ଅପର ନାମ ବଜ୍ରାସନ । ପରବର୍ତ୍ତୀ ବୌଦ୍ଧ ସାହିତ୍ୟରେ ଏହି ମୁଦ୍ରାକୁ ସାକ୍ଷୀ ମୁଦ୍ରା କୁହାଯାଇଛି । ୩– ଧର୍ମଚକ୍ର ମୁଦ୍ରାର ବୁଦ୍ଧମୂର୍ତ୍ତି ସାଧାରଣତଃ ଧର୍ମ ବିଷୟରେ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିବା ଅବସ୍ଥାକୁ ବୁଝାଏ । ଏହି ମୁଦ୍ରାରେ ବୁଦ୍ଧଙ୍କର ହାତ ଦୁଇଟି ବକ୍ଷ ସମ୍ମୁଖରେ ଏଭଳି ଭାବରେ ଥାଏ ଯେ, ଦକ୍ଷିଣ ହସ୍ତର ବୁଢ଼ାଆଙ୍ଗୁଠି ଏବଂ ତର୍ଜନୀ, ବାମ ହସ୍ତର ତର୍ଜନୀ ଅଥବା ମଧ୍ୟମାକୁ ନାମକୁ ମାତ୍ର ସ୍ପର୍ଶ କରିଥାଏ । ୪–ଅଭୟଦାନ ମୁଦ୍ରା ସାଧାରଣତଃ ବୁଦ୍ଧଙ୍କର ଦକ୍ଷିଣହସ୍ତ ବକ୍ଷ ସ୍ଥଳ ପର୍ଯ୍ୟନ୍ତ ଉଠି କରତଳ ସମ୍ମୁଖ ଭାଗ ଆଡ଼କୁ ମେଲାହୋଇ ରହିଥାଏ । ଏହି ମୁଦ୍ରାରେ ଦଣ୍ଡାୟମାନ ତଥା ଉପବିଷ୍ଟ ଏହି ଦୁଇ ପ୍ରକାର ବୁଦ୍ଧଙ୍କୁ ଦେଖିବାକୁ ମିଳେ । କୁଷାଣ ଯୁଗରେ ଏହି ପ୍ରକାର ମୁଦ୍ରାର ବୁଦ୍ଧ ମୂର୍ତ୍ତି ଅଧିକ ନିର୍ମିତ ହୋଇଥିଲା । ୫–ବରଦାନ ସୂଚକ ଆକୃତିର ବୁଦ୍ଧମୂର୍ତ୍ତିକୁ ବରଦମୁଦ୍ରା ବୁଦ୍ଧ କୁହାଯାଏ । ପଦ୍ମାସନରେ ଉପବିଷ୍ଟ ବୁଦ୍ଧଙ୍କ ବାମହସ୍ତ କୋଳରେ ରହି ଦକ୍ଷହସ୍ତ ଦକ୍ଷ ଆଣ୍ଠୁ ଉପରେ ଦେଇ ତଳ ଆଡ଼କୁ କରତଳ ଉପରକୁ ରଖିବା ମୁଦ୍ରାକୁ ବରଦ ମୁଦ୍ରା କୁହାଯାଏ । ଶାୟିତ ବୁଦ୍ଧମୂର୍ତ୍ତି ପରିନିର୍ବାଣ ମୁଦ୍ରା ଓ ଭିକ୍ଷାପାତ୍ର ଧାରଣ ବୁଦ୍ଧମୂର୍ତ୍ତି ପିଣ୍ଡପାତ ମୁଦ୍ରା ।

ସ୍ତୂପର ଉତ୍ତର ଦିଗରେ ଅମୋଘ ସିଦ୍ଧ ବୁଦ୍ଧଙ୍କ ମୂର୍ତ୍ତି ରହିଛି । ତାଙ୍କର ପାର୍ଶ୍ୱରେ ସାମନ୍ତ ଭଦ୍ର ଓ ଅବଲୋକିତେଶ୍ୱର ଦଣ୍ଡାୟମାନ । ସେ ଦୁହେଁ ତାଙ୍କ ଦକ୍ଷ ହସ୍ତରେ ଚାମର ଧାରଣ କରିଛନ୍ତି । ଉପବିଷ୍ଟ ଅମୋଘସିଦ୍ଧଙ୍କ ଦକ୍ଷପାର୍ଶ୍ୱରେ ଦଣ୍ଡାୟମାନ ପୁରୁଷଙ୍କ ବାମ ହାତରେ ପ୍ରସ୍ଫୁଟିତ ପଦ୍ମ । ସେହିଭଳି ଦକ୍ଷିଣ ଦିଗରେ ବରଦମୁଦ୍ରାରେ ଉପବିଷ୍ଟ ରତ୍ନସମ୍ଭବ । ରତ୍ନ ସମ୍ଭବ ବୁଦ୍ଧଙ୍କର ଏକ ନାମ । ସେ ବରଦ ମୁଦ୍ରାରେ ଉପବିଷ୍ଟ । ତାଙ୍କ ଦୁଇପାର୍ଶ୍ୱ ଉପବିଷ୍ଟ ଅବଲୋକିତେଶ୍ୱର ଓ ସାମନ୍ତଭଦ୍ରଙ୍କ ଦକ୍ଷ ହସ୍ତରେ ଚାମର ଏବଂ ବାମ ହାତରେ ପଦ୍ମ ରହିଛି । ରତ୍ନ ସମ୍ଭବଙ୍କ ଦକ୍ଷ ଭାଗରେ ଥିବା ସାମନ୍ତଭଦ୍ରଙ୍କ ବାମହାତରେ ଧରିଥିବା ପଦ୍ମ ଉପରେ ଗୋଟିଏ ଖଡ୍ଗ ଥିବା ଦେଖାଯାଏ । ଖଡ୍ଗ ଜ୍ଞାନର ପ୍ରତୀକ । ଖୁବ୍ ସମ୍ଭବତଃ ଏଠାରେ ବଜ୍ର ବଦଳରେ ଖଡ୍ଗ ରହିଛି । ଖଡ୍ଗଟି ଊର୍ଦ୍ଧ୍ୱକୁ ନିର୍ଦ୍ଦେଶିତ ହୋଇଥିବା ଦ୍ୱାରା ତାହା ଶୂନ୍ୟର ପ୍ରତୀକ ବୋଲି ଧାରଣା କରାଯାଏ । ଏହା ମଧ୍ୟ ବଜ୍ରର ଅନ୍ୟ ଏକ କଳ୍ପନା । ବଜ୍ରମଧ୍ୟ ଜ୍ଞାନର ପ୍ରତୀକ । ପଦ୍ମ ଉପରେ ଖଡ୍ଗ ବା ବଜ୍ର ସୃଷ୍ଟିର କଥା ବ୍ୟକ୍ତ କରୁଛି । ଜ୍ଞାନସିଦ୍ଧି ଗ୍ରନ୍ଥର ୧/୪୭ରେ କୁହା ହୋଇଛି– "ଆକାଶ ଯେପରି ସର୍ବବ୍ୟାପକ ଓ ପ୍ରତିଷ୍ଠିତ ରୂପ ଲକ୍ଷଣାଦି ରହିତ ସେହିପରି ବୁଦ୍ଧ ସର୍ବବ୍ୟାପୀ, ଅରୂପ ଓ ମହାଶୂନ୍ୟ । ସେହି ଶୂନ୍ୟ ସ୍ୱରୂପ ହେଉଛି ବଜ୍ର । ବଜ୍ରତତ୍ତ୍ୱ ସମନ୍ୱୟ ଜ୍ଞାନ ହିଁ ପରମ ଓ ସର୍ବଶ୍ରେଷ୍ଠ ଜ୍ଞାନ ।"

ସ୍ତୂପର ପଶ୍ଚିମ ଦିଗରେ ଅମିତାଭଙ୍କ ମୂର୍ତ୍ତି ରହିଛି । ଏହି ମୂର୍ତ୍ତିଟି ଧର୍ମଚକ୍ର ପ୍ରବର୍ତ୍ତନ ମୁଦ୍ରାରେ ବୁଦ୍ଧଙ୍କ ରୂପ । ଖୋଳାହୋଇ ବାହାରିଥିବା ମହାବିହାର ମଧ୍ୟରେ ଧର୍ମଚକ୍ର ପ୍ରବର୍ତ୍ତନ ମୁଦ୍ରାରେ ବୁଦ୍ଧଙ୍କର ଗୋଟିଏ ମୂର୍ତ୍ତି ଅଛି । ବୁଦ୍ଧଙ୍କର ଉଭୟପାର୍ଶ୍ୱରେ ଛଅଟି ପୁରୁଷ ଚକ୍ର ଉପର ପଦ୍ମଧରି ବସିଛନ୍ତି । ବୁଦ୍ଧ ହେଉଛନ୍ତି ବଜ୍ର ବା ଶୂନ୍ୟ । ପଦ୍ମ ଏବଂ ବଜ୍ରର ସଂଘର୍ଷରେ ନୂତନ ସୃଷ୍ଟି ହେବ ଏହାହିଁ ସେମାନଙ୍କର ପରିକଳ୍ପନା । ଧର୍ମଚକ୍ର ମୁଦ୍ରାରେ ବୁଦ୍ଧଙ୍କ ତଳେ ଚକ୍ରର ଚିତ୍ର, ମୃଗ ଓ ମହିଷଙ୍କ ମୂର୍ତ୍ତି ଖୋଦିତ ହୋଇଛି । ଏହାହିଁ ବାରଣାସୀ ନିକଟରେ ଥିବା ସାରନାଥ ବା ଋଷିପତନର କଥା ସୂଚାଇ ଦେଉଛି । ସେଠାରେ ବୁଦ୍ଧ ପ୍ରଥମେ ପଞ୍ଚବର୍ଗୀୟ ସାଧୁଙ୍କୁ ଧର୍ମୋପଦେଶ ଦେଇ ଥିଲେ । ଏହାର ପ୍ରାୟ ତିନିମାସ ପୂର୍ବରୁ

ଭଲ୍ଲୁକିଲ୍ଲୁଠାରେ ଉତ୍କଳୀୟ ବଣିକ ଦ୍ୱୟ ତାଙ୍କଠାରୁ ଧର୍ମ ବିଷୟ ଶୁଣିଥିଲେ । ତେଣୁ ଗୃହୀ ବୌଦ୍ଧଙ୍କ ମଧ୍ୟରେ ତପସୁ ଓ ଭଲ୍ଲୁକ ପ୍ରଥମ ।

ମହାଭିକ୍ଷୁ ସଂଘର ମାଧବପୁର ମହାବିହାର ମଧ୍ୟରେ ଗୋଟିଏ ବଜ୍ରସତ୍ତ୍ୱଙ୍କ ମୂର୍ତ୍ତି ରହିଛି । ବଜ୍ରସତ୍ତ୍ୱ ତାଙ୍କ ବାମହାତଟିକୁ ତଳେ ଭରା ଦେଇ ଲଳିତା ସନରେ ଏକ ପଦ୍ମ ଉପରେ ବସିଛନ୍ତି । ତାଙ୍କ ଦକ୍ଷ ହସ୍ତରେ ବଜ୍ର । ଏହି ବଜ୍ରସତ୍ତ୍ୱ ଜଟା ମୁକୁଟ ମଣ୍ଡିତ । ତାଙ୍କ ବାହୁରେ ନାଗ ବାହୁଟି । ଗଳାରେ ସୁନ୍ଦର ରତ୍ନ ହାର । କାନରେ କୁଣ୍ଡଳ । ତାଙ୍କ ବାମ କାନ୍ଧରେ ରୁଦ୍ରାକ୍ଷ ମାଳାର ପଇତା ତିନିସରି ହୋଇ ପଡ଼ିଛି । ତାଙ୍କ ପଛପଟରେ ଥିବା ପ୍ରଭାରେ ବୌଦ୍ଧମାନଙ୍କ ଧାରିଣୀମନ୍ତ୍ର, ୟେ ଧର୍ମା ହେତୁ ପ୍ରଭବାଦ ହେତୁଂ... । ବଜ୍ରଯାନର ପ୍ରସିଦ୍ଧ ଆଚାର୍ଯ୍ୟ ସିଦ୍ଧ ଇନ୍ଦ୍ରଭୂତି ତାଙ୍କ ଜ୍ଞାନସିଦ୍ଧି ୧/୯ରେ ଗାଇଛନ୍ତି–''ବଜ୍ରସତ୍ତ୍ୱ ସ୍ୱୟଂ ଅନ୍ତର୍ଯ୍ୟାମୀ । ସେ ପ୍ରାଣୀମାନଙ୍କ ହୃଦୟ ଓ ମନରେ ପୂର୍ଣ୍ଣ ଭାବେ ପରିବ୍ୟାପ୍ତ । ଏହି ସତ୍ୟକୁ ଉତ୍ତମ ରୂପେ ଚିନ୍ତା କରି ଯୋଗୀ କେବେହେଲେ କୌଣସି ପ୍ରକାର ଅସାଧୁ କଳ୍ପନା ମନରେ ପୋଷଣ କରିବା ଉଚିତ ନୁହେଁ ।'' ବୌଦ୍ଧମାନଙ୍କର ଧାରିଣୀମନ୍ତ୍ର ''ୟେ ଧର୍ମା ହେତୁ ପ୍ରଭବାଃ ହେତୁଂ ତେଷାଂ ତଥାଗତୋ ହ୍ୟ ବଦ ତେଷାଞ୍ଚ ଯୋ ନିରୋଧ ଏବଂବାଦି ମହାଶ୍ରମଣ'' ର ଅର୍ଥ–''ଯେଉଁ ଧର୍ମ ବୁଦ୍ଧ ପ୍ରଚାର କରିଥିଲେ ତାହା ହେତୁବାଦୀ ଧର୍ମ ଏବଂ ସମସ୍ତ ସଂସାର ହେତୁମୂଳକ । ହେତୁର ବିଲୋପରେ ସଂସାରର ବିଲୋପ–ଏହି ହେତୁର ବିଲୋପମାର୍ଗ ମଧ୍ୟ ମହାଶ୍ରମଣ ବୁଦ୍ଧ ଦର୍ଶାଇ ଯାଇଛନ୍ତି ।'' ଏହି ଧାରିଣୀ ମନ୍ତ୍ର ସ୍ତୂପର ଚତୁର୍ଦ୍ଦିଗରେ ଥିବା ବୁଦ୍ଧ ମୂର୍ତ୍ତିଙ୍କ ପ୍ରଭାରେ ଉଲ୍ଲେଖ ଅଛି ।

ମହାବିହାର ମଧ୍ୟରେ ହିନ୍ଦୁମାନଙ୍କ କୁବେରଙ୍କ ମୂର୍ତ୍ତି ଭଳି ଜମ୍ଭାଳାଙ୍କର ଏକ ମୂର୍ତ୍ତି ରହିଛି । ଜମ୍ଭାଳ କୁବେରଙ୍କ ଭଳି ପେଟ ଓହଳେଇ ବସିଛନ୍ତି । ଯକ୍ଷମାନଙ୍କ ମୂର୍ତ୍ତି ମଧ୍ୟ ସେହିଭଳି । ଜମ୍ଭାଳଙ୍କର ସର୍ବାଙ୍ଗରେ ରତ୍ନାଭରଣ । ତାଙ୍କ କର୍ଣ୍ଣରେ କୁଣ୍ଡଳ ଓ ମସ୍ତକରେ ମୁକୁଟ । ହାତରେ, ବାହୁରେ ସୁନ୍ଦର ଗହଣା । ସେ ସମୟ ବା ତତ୍ ପୂର୍ବରୁ ଓଡ଼ିଶାର ପ୍ରସ୍ତର ଶିଳ୍ପୀମାନେ ବିଭିନ୍ନ କାରୁକାର୍ଯ୍ୟ ଖଚିତ ମୂର୍ତ୍ତି ଗଠନ କରୁଥିଲେ । ଭୁବନେଶ୍ୱର ନିକଟରେ ହୀରାପୁରଠାରେ ବୌଦ୍ଧମାନଙ୍କ ଉପାସ୍ୟା ଯୋଗିନୀମାନଙ୍କୁ ଦେଖିଲେ ମାଧବପୁର ମହାବିହାରର ମୂର୍ତ୍ତିମାନଙ୍କ ଦେହରେ ଥିବା ପଥରର ଅଳଙ୍କାରର ଶିଳ୍ପୀ ଓଡ଼ିଆ ଏହା ସାଧାରଣତଃ ମନେ ହୋଇଥାଏ ।

ସମସ୍ତଙ୍କ ଠାରୁ ଅଧିକ ସୁନ୍ଦର ବିହାରର ତୋରଣଟି । ଏହି ତୋରଣଟି ରତ୍ନଗିରିର ତୋରଣ ଭଳି ହେଲେ ମଧ୍ୟ ଚିତ୍ରରେ କେତେକ ବୈଶିଷ୍ଟ୍ୟ ଅଛି । ରତ୍ନଗିରି ବୁଦ୍ଧ ବିହାର ତୋରଣ ଉପରେ ଲକ୍ଷ୍ମୀଙ୍କ ଚିତ୍ର 'ଭାରହୁତ' ବୁଦ୍ଧବିହାର ଭଳି ଥିଲାବେଳେ ଏଠାରେ ବୁଦ୍ଧଙ୍କ ଚିତ୍ର ଖୋଦିତ ହୋଇଛି । ତାଙ୍କର ଉଭୟ ପାର୍ଶ୍ୱରେ ଭିକ୍ଷୁ ଓ ଭିକ୍ଷୁଣୀମାନେ ମାଳ୍ୟଧରି ତାଙ୍କ ଆଡ଼କୁ ଅନାଇ ରହିଛନ୍ତି । ତୋରଣ ତଳେ ତାରା ଓ ବୋଧିସତ୍ତ୍ୱଙ୍କ ଚିତ୍ର । ଏହି ତୋରଣକୁ ଅତିକ୍ରମ କଲେ ବିହାରର ଅଭ୍ୟନ୍ତର । ବିହାର ଭିତରେ ତିନୋଟି ପଥରରେ ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧଙ୍କ ମୂର୍ତ୍ତି । ବୌଦ୍ଧ ମାନଙ୍କର ବୁଦ୍ଧ–ଧର୍ମ–ସଂଘର ପ୍ରତୀକ ରୂପେ ଏହି ବୁଦ୍ଧଙ୍କ ମୂର୍ତ୍ତି ତିନି ଖଣ୍ଡ ପଥରରେ ନିର୍ମିତ ।

ରତ୍ନଗିରିରେ ଯେଉଁଭଳି ଦୁଇଟି ବିହାର ରହିଛି ସେହିଭଳି ମାଧବପୁର ମହାବିହାରରେ ଦୁଇଟି ବିହାର ନିର୍ମିତ ହୋଇଥିଲା । ଖୁବ୍ ସମ୍ଭବତଃ ବିଷୟ ବା ଶ୍ରେଣୀ ଉପରେ ନିର୍ଭର କରି ଦୁଇଟି ବିହାର ନିର୍ମିତ । ବାମର ପୂର୍ବକୁ ଆଉ ଗୋଟିଏ ବିହାର ଥିବାର ଜଣାପଡ଼େ । ମାତ୍ର ଏହି ବିହାର ଆୟତନରେ ଛୋଟ । ଏଠାରେ ମଧ୍ୟ ଭୂମିସ୍ପର୍ଶ ମୁଦ୍ରାର ବୁଦ୍ଧଙ୍କ ମୂର୍ତ୍ତି ଦେଖାଯାଉଛି । ବିହାରର ଦକ୍ଷିଣକୁ ଆଉ ଗୋଟିଏ ସ୍ତୂପ ମାଟିତଳେ ରହିଛି । ସେହି ମାଟି ଇଟା ଗଦା ପାଖରେ ଗୋଟିଏ ବଡ଼ ଜଟାମୁକୁଟ ଅବଲୋକିତେଶ୍ୱର ବୁଦ୍ଧଙ୍କ ମୂର୍ତ୍ତି । ଏହି ମୂର୍ତ୍ତି ପଛରେ ୨୫ ଧାଡ଼ିର ଶିଳାଲେଖାର ଅକ୍ଷର ନବମ ଶତାବ୍ଦୀର ବୋଲି ଡଃ ନବୀନ କୁମାର ସାହୁ BUDHISM IN ORISSA ରେ ଲେଖିଛନ୍ତି । ତେଣୁ ମାଧବପୁର ମହାବିହାର ନବମ ଶତାବ୍ଦୀରେ ନିର୍ମିତ ହୋଇଥିଲା ବୋଲିଧାରଣା କରାଯାଏ । ସେତେବେଳେ ବୌଦ୍ଧମାନଙ୍କ ମଧ୍ୟରୁ ଦଳେ ବଜ୍ରକୁ ଆଶ୍ରାକରି ବହୁ ଅଦ୍ଭୁତ କଥାମାନ ଦେଖାଇବା ସହିତ ନିର୍ବାଣମୁଖୀ ହେଉଥିଲେ । ଚର୍ଯ୍ୟାପଦର ସାଧକମାନେ ଏହି ବଜ୍ରଯାନର ଅନ୍ତର୍ଭୁକ୍ତ । ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳରେ ବଜ୍ରଯାନର ପ୍ରସାର ଥିଲା । ପରେ ଯେତେବେଳେ ବୌଦ୍ଧଧର୍ମ ହ୍ରାସ ଲଭି ଆସିଲା ସେତେବେଳେ ବୌଦ୍ଧମାନଙ୍କର ତଥା ବଜ୍ରଯାନର ଦେବତାଙ୍କୁ ହିନ୍ଦୁମାନେ ତାଙ୍କର ବୋଲି ଧାରଣା କରି ପୂଜା ଉପାସନା କଲେ । ମହେଞ୍ଜୋଦାରୋ, ହରପା ଆଦି ସଭ୍ୟତା ପରେ ପ୍ରଥମେ ବୌଦ୍ଧମାନେ ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀ ଠାରୁ ମୂର୍ତ୍ତିମାନ ନିର୍ମାଣ କରିଥିଲେ । ଗବେଷକମାନେ ଧାରଣା କରନ୍ତି ବଜ୍ରପାଣି ବୁଦ୍ଧ, ଚକ୍ରପାଣି ବୁଦ୍ଧ, ପଦ୍ମପାଣି ବୁଦ୍ଧ ପରବର୍ତ୍ତୀ କାଳରେ ହିନ୍ଦୁମାନେ ଇନ୍ଦ୍ର, ବିଷ୍ଣୁ, ସୂର୍ଯ୍ୟ ଭାବେ ଗ୍ରହଣ କଲେ । ଓଡ଼ିଶାର ବାଙ୍କିର ଇଷ୍ଟଦେବୀ ଚର୍ଚ୍ଚିକା, କାକଟପୁରର ମଙ୍ଗଳା, ଝଙ୍କଡର ଶାରଳା, ମହାନଦୀ କୂଳର ଭଟ୍ଟାରିକା ଆଦି ବୌଦ୍ଧମାନଙ୍କର ଦେବତା । ଏଭଳି ଶ୍ରୀକ୍ଷେତ୍ରରେ ଆରାଧିତ ଶ୍ରୀଜଗନ୍ନାଥ ବୁଦ୍ଧ ବୋଲି ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ମହାକବି ଶାରଳା ଦାସଙ୍କ ଠାରୁ ଏପର୍ଯ୍ୟନ୍ତ ବହୁ କବି ଐତିହାସିକ ଉଲ୍ଲେଖ କରିଛନ୍ତି ।

ଓଡ଼ିଶାକୁ ବୁଦ୍ଧ ଆସିଥାଆନ୍ତୁ ବା ନ ଆସିଥାନ୍ତୁ ତାଙ୍କ ସମୟରୁ ଓଡ଼ିଶା ବୌଦ୍ଧଧର୍ମକୁ ଗ୍ରହଣ କରି ଆସିଛି । ବୁଦ୍ଧ ଯେଉଁଠି ଜନ୍ମ ହୋଇଥାନ୍ତୁ, ଯେଉଁଠି ସେ ତପସ୍ୟା କରିଥାନ୍ତୁ ବା ଯେଉଁଠି ସେ ଶିଷ୍ୟମାନଙ୍କୁ ଦୀକ୍ଷା ଦେଇଥାନ୍ତୁ, କଳିଙ୍ଗ ତାଙ୍କୁ ସମଗ୍ର ବିଶ୍ୱରେ ପ୍ରସିଦ୍ଧ କରି ତୋଳିଲା । କାରଣ କଳିଙ୍ଗ ଯୁଦ୍ଧ ନ ହୋଇଥିଲେ ବୌଦ୍ଧଧର୍ମ ପୃଥିବୀ ବିଖ୍ୟାତ ହୋଇ ପାରି ନଥାନ୍ତା । ତେଣୁ ବୌଦ୍ଧ ଜଗତରେ କଳିଙ୍ଗ ଚିର ସ୍ମରଣୀୟ ।

ଆଜି କଳିଙ୍ଗ ତଥା ଉତ୍ତ୍ର ଦେଶରୁ ବୌଦ୍ଧ ଧର୍ମ ଲିଭି ଯାଇଛି ସତ, ମାତ୍ର ଓଡ଼ିଶାର ବିଭିନ୍ନ ସ୍ଥାନରେ ଯେଉଁ ବୌଦ୍ଧବିହାର, ସ୍ତୂପ ଓ ମୂର୍ତ୍ତି ରହିଛି ସେ ନୀରବରେ ଗାଇ ଚାଲିଛନ୍ତି ବୁଦ୍ଧଂ ଶରଣଂ ଗଚ୍ଛାମି–ଧର୍ମଂ ଶରଣଂ ଗଚ୍ଛାମି–ସଂଘଂ ଶରଣଂ ଗଚ୍ଛାମି ।

କ୍ୱାଟର ନଂ ୭୭ ଟାଇପ–୪
ତେଲ୍‌ଟା କଲୋନି, ଭୁବନେଶ୍ୱର–୧୨ ।

# ସ୍ୱାମୀଜୀଙ୍କ ମାନସ ପୁତ୍ର ନେତାଜୀ



ଶ୍ରୀ ପ୍ରଶାନ୍ତ କୁମାର ମିଶ୍ର

ସ୍ୱାମୀ ବିବେକାନନ୍ଦ କିଭଳି ପ୍ରଗାଢ଼ ଭାବରେ ଭାରତବର୍ଷକୁ ଭଲ ପାଉଥିଲେ ସେ ସଂପର୍କରେ ବର୍ଣ୍ଣନା କରି ଭଗିନୀ ନିବେଦିତା କହିଛନ୍ତି:—————

"India was the Queen of his adoration. India was his day dream. India was his night mare."

ବାସ୍ତବିକ୍ ସେହି ବିଶ୍ୱବରେଣ୍ୟ (Cyclonic Saint) ଯୋଦ୍ଧ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦ ପ୍ରସିଦ୍ଧ ଚିକାଗୋ ନଗରୀରେ ସନାତନ ଧର୍ମର ବୈଜୟନ୍ତୀ ଉଡ଼ାଇ ଯେଉଦିନ ଭାରତରେ ପଦାର୍ପଣ କଲେ ସେହି ପବିତ୍ର ଦିବସରେ ଭାରତମାତାଙ୍କର ବୀରପୁତ୍ର ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓଡ଼ିଶାର ଇତିହାସ ପ୍ରସିଦ୍ଧ କଟକ ନଗରୀରେ ଜନ୍ମ ଗ୍ରହଣ କରିଥିଲେ ।

ଦୀପରୁ ଦୀପ ପ୍ରଜ୍ଜ୍ୱଳିତ ହେଲାପରି ଗୁରୁଙ୍କ ଆତ୍ମାରୁ ଶିଷ୍ୟଙ୍କ ଆତ୍ମାରେ ଆଲୋକର ସଞ୍ଚାର ଘଟେ । ଏଥିରେ ପ୍ରଥମ ଦୀପର ଆଲୋକର କୌଣସି ହାନି ହୁଏ ନାହିଁ କିମ୍ବା ପ୍ରଜ୍ଜ୍ୱଳିତ ହୋଇଥିବା ଦୀପ ପୂର୍ବ ଦୀପଠାରୁ ଅଧିକ ତର ଉଜ୍ଜ୍ୱଳ ହେବାରେ କୌଣସି ପ୍ରତିବନ୍ଧକ ନାହିଁ । ଗୋଟିଏ ଦୀପ କେତେ ପ୍ରଜ୍ଜ୍ୱଳିତ ହେବ ତାହା ତା'ର ଅବସ୍ଥା ଓ ପାରିପାର୍ଶ୍ୱିକ ସ୍ଥିତି ଉପରେ ନିର୍ଭର କରେ । ଗୁରୁଙ୍କଠାରୁ ଶିଷ୍ୟ ଆଲୋକ ଲାଭ କରିଛନ୍ତି ବୋଲି ଗୋଟିଏ ଅର୍ଥରେ ଗୁରୁ ଓ ଶିଷ୍ୟ ଉଭୟଙ୍କଠାରେ ଏକ ଅଲୋକର ବିଭିନ୍ନ ପରିପ୍ରକାଶ ଘଟିଛି ବୋଲି ବୁଝାଯାଇପାରେ । ଗୁରୁଶିଷ୍ୟ ସଂପର୍କ ପରମ୍ପରା ଅନୁସାରେ ବିଦ୍ୟା, କୁଶଳତା, ତେଜସ୍ୱୀତା, ଆଚାର ବ୍ୟବହାର, ମନୋବୃତ୍ତି, ଦୃଷ୍ଟିଭଙ୍ଗୀ ପୁରୁଷାନୁକ୍ରମେ ସଞ୍ଚାରିତ ହୋଇଥାଏ । ସର୍ବଭାରତୀୟ ସ୍ତରରେ ଆଧୁନିକ ସମାଲୋଚକମାନେ ସ୍ୱାମୀ ବିବେକାନନ୍ଦ ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଗୁରୁଶିଷ୍ୟ ଧାରାରେ ସମନ୍ୱିତ କରି ଅଛନ୍ତି । ନେତାଜୀ ସୁଭାଷ ଚନ୍ଦ୍ର ନିଜେ ମଧ୍ୟ ତାହା ସ୍ୱୀକାର କରିଛନ୍ତି । ନେତାଜୀ କହିଛନ୍ତି, ଆଜି ଯଦି ସ୍ୱାମୀଜୀ ଜୀବିତ ଥାଆନ୍ତେ ସେ ନିଶ୍ଚୟ ମୋର ଗୁରୁ ହୋଇଥାଆନ୍ତେ, ଅର୍ଥାତ୍ ତାଙ୍କୁ ମୁଁ ଗୁରୁପଦରେ ବରଣ କରିଥାନ୍ତି । ଯାହାହେଉ ଯେତେଦିନ ଜୀବିତ ରହିବି ସେତେଦିନ ରାମକୃଷ୍ଣ ଓ ବିବେକାନନ୍ଦଙ୍କର ଏକାନ୍ତ ଅନୁଗତ ଓ ଅନୁରକ୍ତ ରହିବି ।

ନେତାଜୀ ମୁକ୍ତ କଣ୍ଠରେ କହିଥିଲେ, "ଶ୍ରୀ ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ନିକଟରେ ମୁଁ ଯେ କେତେ ଋଣୀ ତାହା ଭାଷାରେ କିପରି ପ୍ରକାଶ କରିବି ? ତାଙ୍କର ପୁଣ୍ୟ ପ୍ରଭାବରେ ମୋ ଜୀବନର ପ୍ରଥମ ଉନ୍ମେଷ" ।

ସୁଭାଷ ଚନ୍ଦ୍ର ବୋଷ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପାଠ ପଢ଼ୁଥିଲାବେଳେ ସ୍ୱାମୀ ବିବେକାନନ୍ଦଙ୍କ ଅଗ୍ନିମୟୀ ବାଣୀର ଅପ୍ରତିହତ ଶକ୍ତି ଅନୁଭବ କଲେ । ତାଙ୍କ ମଧ୍ୟରେ ବିପ୍ଳବର ବୀଜ ସୃଷ୍ଟି ହେଲା ଓ ତାଙ୍କ ଜୀବନ ବଡ଼ଦାଣ୍ଡର ଶ୍ରୀ ଜଗନ୍ନାଥ ରୂପେ ସେ ସ୍ୱାମୀଜୀଙ୍କୁ ଗ୍ରହଣ କଲେ । ଏହା ସେହି ସମୟର କଥା । ସେ ନିବିଷ୍ଟ ଚିତ୍ତରେ ମନଦେଇ ପାଠ ପଢ଼ୁଥିବା ବେଳେ ତାଙ୍କ ମା ଦୁର୍ଗାଙ୍କ ପ୍ରସାଦ ନେଇ ତାଙ୍କ ଆଗରେ ରଖିଦେଇ କହିଲେ—"ଏତେ ମନଦେଇ କଣ ପଢ଼ୁଛୁ ? ଆଗ ମା ଦୁର୍ଗାଙ୍କର ପ୍ରସାଦ ନେ । ସେ ଠିଆହୋଇ କହିଲେ, ମା, ପ୍ରସାଦ ଗ୍ରହଣ କଲେ କଣ ମା'ଙ୍କର ଶକ୍ତି ମିଳିଯିବ ? ତୁମେ କେତେଥର କହିଛ ଦୁର୍ଗା ଶକ୍ତିର ଦେବୀ । ଏଣୁ ଶକ୍ତିର ଉପାସନା ଶକ୍ତିରେ ହେବା ଉଚିତ୍ । ଫୁଲ, ଫଳ, ମିଠେଇ ଦେଇ ତାଙ୍କର ଉପାସନା କଲେ ମା'ଙ୍କର ଅପମାନ ହେବ" ।

ମା ତାଙ୍କର କଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ ଏସବୁ କଣ କହୁଛୁ ?

ହଁ ମା, ଭାରତମାତା ସହସ୍ର ଯୁବକ ବଳି ଚାହାନ୍ତି । ଚନ୍ଦନ, ପୁଷ୍ପ, ଫଳ, ତୋୟ ଦ୍ୱାରା ତାଙ୍କର ଉପାସନା କରାଯାଇ ନପାରେ । ଅଞ୍ଜଳି ଦ୍ୱାରା ମା'ଙ୍କର ପୂଜା ହେବା ଉଚିତ୍ ମା' ତାହାହିଁ ଚାହାନ୍ତି ।

ଏହା କହି ସେ ଟେବୁଲ ଉପରେ ଥିବା ଛୁରୀଟି ଉଠାଇ ଆଣି ନିଜ ଆଙ୍ଗୁଠି କାଟି ସମ୍ମୁଖରେ ଟଙ୍ଗା ହୋଇଥିବା ମା' ଦୁର୍ଗାଙ୍କର ଚିତ୍ରରେ ରକ୍ତର ତିଳକ ଲଗାଇ ଦେଲେ ।

ବିପ୍ଳବୀ ହେମଚନ୍ଦ୍ର କିଭଳି ସ୍ୱାମୀଜୀଙ୍କ ତୃଣଜ୍ଞାନ ... ପ୍ରଭାବିତ ହୋଇଥିଲେ ତାହା ସୁଭାଷ ଜାଣିବାକୁ ପାଇଥିଲେ । ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ବିପ୍ଳବୀ ହେମଚନ୍ଦ୍ର ... ଢାକାଠାରେ ସ୍ୱାମୀଜୀଙ୍କୁ ପ୍ରଣାମକରି କହିଲେ, ... ମୋତେ କିଛି ଧର୍ମ ଉପଦେଶ ଦିଅନ୍ତୁ । ଏକଥା ଶୁଣି ... ସ୍ୱାମୀଜୀ ରାଗିଯାଇ କହିଲେ, ତୋତେ ଲଜ୍ଜା ନାହିଁ । ପରାଧୀନ ଜାତିର ପୁଣି ଧର୍ମ କଣ ? ଏକମାତ୍ର ସ୍ୱାଧୀନତା ଅର୍ଜନ ହିଁ ତୋର ଧର୍ମ ।

ହେମଚନ୍ଦ୍ର ସେହି ପ୍ରସଙ୍ଗରେ କହିଲେ, ଏକଥା ଶୁଣିବା ସଙ୍ଗେ ସଙ୍ଗେ ସାରା ଦେହରେ ଯେପରି ବିଦ୍ୟୁତ୍ ତରଙ୍ଗ ଖେଳିଗଲା । କଣ କିପରି ହୋଇଗଲା, ମୁ କିଛି ବୁଝି ପାରିଲି ନାହିଁ । ଭାସିଗଲା ମୋର ଘର ସଂସାର, ମୁ ନିଜକୁ ସମର୍ପଣ କଲି ସ୍ୱାଧୀନତା ସଂଗ୍ରାମରେ । ସର୍ବସ୍ୱ ତ୍ୟାଗକରି ସ୍ୱାମୀ ବିବେକାନନ୍ଦଙ୍କୁ ଚକ୍ଷୁ ସମକ୍ଷରେ ରଖି ବାହାରି ପଡ଼ିଲେ ।

ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର ସୁ-ପ୍ରାଚୀନ ରାଜଧାନୀ କଟକ ନଗରୀ ହେଉଛି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ବାଲ୍ୟଲୀଳାଭୂମି । କଟକରେ ପ୍ରତିଷ୍ଠିତ ଶିକ୍ଷାୟତନ ରେଭେନ୍ସା କଲେଜିଏଟ୍ ସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ଶ୍ରୀ ବେଣୀ ମାଧବ ଦାସଙ୍କ ବ୍ୟକ୍ତିଗତ ପ୍ରଭାବ ନେତାଜୀଙ୍କୁ ଜୀବନରେ ଏକ ନବ ଦିଗର ପ୍ରତି ଉଦ୍‌ବୋଧିତ କରିଥିଲା । ଶ୍ରୀ ବେଣୀମାଧବ ଦାସ ଏକ ସାଧାରଣ ଅର୍ଥରେ ପ୍ରଧାନ ଶିକ୍ଷକ ନ ଥିଲେ । ସେ ଥିଲେ ଦେଶଭକ୍ତ,ଆଦର୍ଶ ପ୍ରଣୋଦିତ ଏକ ଜ୍ୱଳନ୍ତ ଅଗ୍ନିପିଣ୍ଡ । ସେଥିପାଇଁ ସେ କାଳରେ ଏକ ଅସମ୍ମାନଜନକ ବ୍ରିଟିଶ କର୍ମକର୍ତ୍ତାମାନଙ୍କ ନିର୍ଦ୍ଦେଶରେ ସ୍ଥାନାନ୍ତରିତ ହେବାକୁ ପଡ଼ିଥିଲା । ଏହି ଘଟଣା ନେତାଜୀ ସୁଭାଷଚନ୍ଦ୍ରଙ୍କ ସମ୍ବେଦନଶୀଳ ହୃଦୟରେ ଗଭୀର ଆଘାତ ସୃଷ୍ଟି କରିଥିଲା । ସେ କିଛି କାଳ ଛିନ୍ନମୂଳ ବୃକ୍ଷପ୍ରାୟ ଅସହାୟ ଓ ଅସଂଲଗ୍ନ ବୋଧ କରିଥିଲେ । ଶ୍ରୀ ବେଣୀମାଧବ ଦାସ ଥିଲେ ବୌଦ୍ଧିକ କ୍ଷେତ୍ରରେ ଜଣେ ବେଦାନ୍ତବାଦୀ ଚିନ୍ତାଶୀଳ ବ୍ୟକ୍ତି ଓ ସ୍ୱାମୀ ବିବେକାନନ୍ଦଙ୍କ ଦୃଢ଼ ବ୍ୟକ୍ତିତ୍ୱର ଅନୁଗାମୀ । ଏହି ଶିକ୍ଷକଙ୍କ ଗମ୍ଭୀର ବ୍ୟକ୍ତିତ୍ୱ, ଆଦର୍ଶ ପ୍ରବଣତା ଦେଶାତ୍ମବୋଧ ଓ ସର୍ବୋପରି ବେଦାନ୍ତବାଦୀ ଚେତନା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆଦ୍ୟ ପ୍ରେରଣାର ଉତ୍ସଥିଲା । ସ୍ୱାମୀ ବିବେକାନନ୍ଦଙ୍କ ଚେତନା ସହିତ ସମନ୍ୱିତ ହେବାଲାଗି ନେତାଜୀଙ୍କର ସହାୟକ ଥିଲେ ଶିକ୍ଷକ ବରିଷ୍ଠ ଶ୍ରୀ ବେଣୀମାଧବ ଦାସ, କିନ୍ତୁ ଏହା ମଧ୍ୟ ଅନୁଧ୍ୟାନରେ ରଖିବାକୁ ହେବ ଯେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ବାଲ୍ୟକାଳରୁ ବୈରାଗ୍ୟଦୀପ୍ତ, ତେଜସ୍ୱୀ ଓ ନିର୍ଭୀକତାର ଅଧିକାରୀ ଥିଲେ । ତାଙ୍କ ପ୍ରାଣରେ ଜାତୀୟ ସମ୍ମାନ ଜାତୀୟ ଗୌରବବୋଧ ତଥା ଦେଶାତ୍ମବୋଧର ଯେଉଁ ସ୍ୱାଭାବିକ ବିସ୍ଫୋରଣ ଘଟୁଥିଲା, ସେହି ଆଗ୍ନେୟ ସ୍ରୋତ ସହିତ ବୈରାଗ୍ୟ ସର୍ବବନ୍ଧନ ମୁକ୍ତି କାମନା ନିର୍ଲେପ ଚେତନାର ଆଲୋକମୟ ସ୍ରୋତ ସହିତ ସମ୍ମିଳିତ ହୋଇଯାଇଥିଲା । ସକଳ ଦୁର୍ବଳତା, ପରାଧୀନତା ଓ ଲୋଲୁପତାକୁ ପରିହାର କରି ବୈରାଗ୍ୟଦୀପ୍ତ ଚେତନାରେ ସେ ନିଜ ଆତ୍ମାର ମୁକ୍ତି ତଥା ଜଗତର ହିତ ନିମିତ୍ତ ଆତ୍ମୋତ୍ସର୍ଗକୁ ବ୍ରତ ବୋଲି ଗ୍ରହଣ କରିଥିଲେ "ଆତ୍ମନୋ ମୋକ୍ଷାର୍ଥଂ—ଜଗଦ୍ଧିତାୟଚ" । ସ୍ୱାମୀଜୀଙ୍କ ଭାଷାରେ ଏହି ବାଣୀ ସ୍ୱତଃ ସ୍ୱାଭାବିକ ଭାବରେ ନେତାଜୀଙ୍କ ଅନ୍ତଃସ୍ଥଳରୁ ଉଚ୍ଚାରିତ ହେଉଥିଲା । ଏହି ଦୃଷ୍ଟିରୁ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଥିଲେ ସ୍ୱାମୀ ବିବେକାନନ୍ଦଙ୍କର ପ୍ରକୃତିସିଦ୍ଧ ଦାୟାଦ । ସେଥିପାଇଁ ଶିକ୍ଷକ୍ ଶ୍ରୀ ବେଣୀମାଧବ ଦାସଙ୍କୁ ସେ ନିଜର ଦିଗ୍‌ଦର୍ଶକରୂପେ ସ୍ୱୀକାର କରିଥିଲେ ।

ଅନେକ ବିସ୍ମୟ ପ୍ରକାଶ କରିଥାନ୍ତି ଯେ ସ୍ୱାମୀ ବିବେକାନନ୍ଦ ସର୍ବତ୍ୟାଗୀ ସନ୍ନ୍ୟାସୀ ହୋଇ ଦେଶ ମାତୃକାର ବନ୍ଧନ ମୁକ୍ତିଲାଗି ଓ ପୁନର୍ଜାଗରଣ ଲାଗି ଏତେ ବ୍ୟାକୁଳ ହୋଇ ଉଠିଲେ କାହିଁକି ? ବୈରାଗ୍ୟ ସହିତ ଏତେ ନିଷ୍ଠାପର ଭକ୍ତିର ସମ୍ବନ୍ଧ କଣ ? ଯେଉଁମାନଙ୍କୁ ସ୍ୱାମୀଜୀଙ୍କ ଚରିତ୍ରର ଏହି ଦୃଷ୍ଟିରୁ ବିସ୍ମୟକର ବୋଧ ହୋଉଛି ସେମାନେ ନେତାଜୀ ସୁଭାଷଙ୍କ ବ୍ୟକ୍ତିତ୍ୱରେ ଓ ଆଚରଣରେ ଯେ ବିସ୍ମୟ ପ୍ରକାଶ କରିବେ ଏଥିରେ ସନ୍ଦେହର ଅବକାଶ ନାହିଁ । ବୈରାଗ୍ୟ ଓ ଦେଶ ଭକ୍ତିକୁ ବିଚ୍ଛିନ୍ନ କରି ଯେଉଁମାନେ ଚିନ୍ତା କରନ୍ତି; ଆତ୍ମାର ମୁକ୍ତି ଓ ଜଗତର ହିତକୁ ଯେଉଁମାନେ ବିଚ୍ଛିନ୍ନ କରି ଚିନ୍ତା କରନ୍ତି ସେମାନଙ୍କ ପାଇଁ ସ୍ୱାମୀଜୀ ଓ ନେତାଜୀ ଉଭୟ ବ୍ୟକ୍ତି ଦୁର୍ବୋଧ୍ୟ ହୋଇ ରହିବେ ।

ସ୍ୱାମୀଜୀଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ନେତାଜୀ କହିଥିଲେ—"ସ୍ୱାମୀ ବିବେକାନନ୍ଦ ତ୍ୟାଗରେ ଦ୍ୱିଧାହୀନ, କର୍ମରେ ଅବିଶ୍ରାନ୍ତ, ପ୍ରେମରେ ଉଦାର, ଜ୍ଞାନରେ ଅଗାଧ ଓ ବହୁମୁଖୀ ଭାବୋଚ୍ଛ୍ୱାସମୟ ଆଘାତ ଦେବାରେ ନିର୍ମମ ତଥାପି ଶିଶୁବତ୍ ସରଳ ଆମ୍ଭମାନଙ୍କର ଦୁନିଆଁରେ ଏକ ଦୁର୍ଲ୍ଲଭ ପୁରୁଷ । ମୁଁ ଘଣ୍ଟା ଘଣ୍ଟା ଧରି କହିପାରେ, ମାତ୍ର ଏହି ମହାତ୍ମାଙ୍କ ପ୍ରତି ସାମାନ୍ୟ ଶ୍ରଦ୍ଧା ଜ୍ଞାପନ କରିବା ନିମିତ୍ତ ଅସମର୍ଥ ହେବି । ସେ ବିରାଟ, ଅସୀମ, ବହୁମୁଖୀ ପ୍ରତିଭା" ।

ନେତାଜୀ କହିଛନ୍ତି; ସ୍ୱାମୀଜୀ ଥିଲେ ଜଣେ ପୂର୍ଣ୍ଣପ୍ରାଣ, ପୌରୁଷଯୁକ୍ତ ବ୍ୟକ୍ତିତ୍ୱ—ଏବଂ ନିଜର ଅନ୍ତଃସ୍ଥଳରୁ ଜଣେ ସାରଙ୍ଗତ ଯୋଦ୍ଧା । ସ୍ୱାମୀଜୀଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା ଯେ ସେ ମଣିଷ ଗଢ଼ି ତୋଳିବେ ଏବଂ ସେହି ବଳିଷ୍ଠ, ଚରିତ୍ରବାନ ଓ ବ୍ୟକ୍ତିତ୍ୱବାନ ବ୍ୟକ୍ତିମାନେ ରାଷ୍ଟ୍ର ଓ ଜାତିର କର୍ମସଂସ୍ଥା ସ୍ଥାପନ କରିବେ । ସ୍ୱାଧୀନ ଚିନ୍ତା, ନିର୍ଭୀକ ବ୍ୟକ୍ତିତ୍ୱର ବିକାଶ ଲାଗି ଯାହା ପ୍ରତ୍ୟବାୟ ସୃଷ୍ଟି କରିବ ତାହାକୁ ଘୁଞ୍ଚାଇ ଦେବାଲାଗି ସ୍ୱାମୀଜୀ ଆହ୍ୱାନ ଦେଇଥିଲେ । ଶାରୀରିକ ଶକ୍ତି ଓ ମାନସିକ ଶକ୍ତିର ସମତୁଲ ଉନ୍ନତି କରିବାକୁ ହେବ । ଦୁଃସାହସିକ କାର୍ଯ୍ୟ ପାଇଁ ଦୁଃସାହସିକ ବ୍ୟକ୍ତିତ୍ୱ ଓ ପୌରୁଷ ପ୍ରୟୋଜନ । ପୌରୁଷହୀନ ଦୁର୍ବଳ ବ୍ୟକ୍ତିମାନଙ୍କ ଦ୍ୱାରା କୌଣସି ମହାନ କାର୍ଯ୍ୟ ସାଧିତ ହୋଇ ପାରିବ ନାହିଁ । ଏହା ଥିଲା ଯୋଦ୍ଧୃ—ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦଙ୍କ ରଣ ହୁଙ୍କାର । ଏହି ରଣ ହୁଙ୍କାରର ପ୍ରତ୍ୟକ୍ଷ ଫଳ ହେଉଛନ୍ତି ନେତାଜୀ ସୁଭାଷଚନ୍ଦ୍ର ବୋଷ ।

ନେତାଜୀଙ୍କ ଆହ୍ୱାନରେ ଭାରତର ଯୁବଶକ୍ତିଙ୍କ ପ୍ରାଣରେ ଯେଉଁ ଜାଗରଣର ବିଦ୍ୟୁତ ତରଙ୍ଗ ଖେଳି ଯାଇଥିଲା ତାହାର ମୌଳିକ ଆହ୍ୱାନ ଶୁଭିଥିଲା ସ୍ୱାମୀ ବିବେକାନନ୍ଦଙ୍କ କଣ୍ଠରେ—"ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ", ମଣିଷ ଦରକାର ବୀର୍ଯ୍ୟବାନ, ସଂପୂର୍ଣ୍ଣ ଅକପଟ, ସଂପୂର୍ଣ୍ଣ ବିଶ୍ୱାସୀ ଯୁବକହିଁ ଦରକାର । ଏହି ଯୁବକମାନଙ୍କ ଦ୍ୱାରାହିଁ ଏହି କାର୍ଯ୍ୟ ସମ୍ଭବ ସାଧିତ ହେବ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସ୍ୱାମୀଜୀଙ୍କର ଆକାଂକ୍ଷିତ ସେହି ଯୁବକମାନଙ୍କ ମଧ୍ୟରେ ସର୍ବୋତ୍ତମ ଦୃଷ୍ଟାନ୍ତ । ଏକ ସାମାଜିକ ଦୃଷ୍ଟିରେ ଉଭୟଙ୍କୁ ବିଚାର କଲେ ସ୍ପଷ୍ଟ ବୋଧହୁଏ ଯେ ଉଭୟ ହେଉଛନ୍ତି ବେଦାନ୍ତନିଷ୍ଠ, ବୈରାଗ୍ୟଦୀପ୍ତ ଜନନାୟକ, ଇତିହାସ ନିର୍ମାତା ଓ ଚିନ୍ତାନାୟକ । ମନେହୁଏ ସ୍ୱାମୀଜୀଙ୍କ ଆତ୍ମଦୀପରୁ ହିଁ ନେତାଜୀଙ୍କ ଆତ୍ମଦୀପ ପ୍ରଜ୍ୱଳିତ ହୋଇ ଉଠିଛି । ନେତାଜୀ ସୁଭାଷ ସ୍ୱାମୀ ବିବେକାନନ୍ଦଙ୍କର ଦ୍ୱିତୀୟ ଆତ୍ମା (Second self) କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମୋର ମନେହୁଏ ଯଦି ପୁତ୍ର ଓ ଶିଷ୍ୟ ଅଭେଦ ହେବେ ସ୍ୱାମୀଜୀଙ୍କ ମାନସପୁତ୍ର ହେଉଛନ୍ତି ନେତାଜୀ । ସୁନିର୍ଦ୍ଦିଷ୍ଟ

ଦୃଢ଼ତା, ଆତ୍ମବିଶ୍ୱାସ, ନିର୍ଭୀକତା, ଜ୍ୱଳନ୍ତ ଦେଶପ୍ରେମ, ତେଜ, ଶ୍ରଦ୍ଧା ଓ ଭକ୍ତି ଦୃଷ୍ଟିରୁ ବିଗ୍ରହକଲେ ସୁଭାଷ ଚନ୍ଦ୍ରଙ୍କ ପରିଅଳ କୌଣସି ଭାରତୀୟ ସ୍ୱାମୀଜୀଙ୍କର ଏତେ ନିକଟବର୍ତ୍ତୀ ହୋଇ ପାରି ନାହାନ୍ତି । ତେଣୁ ଦୃଢ଼ତାର ସହିତ କୁହାଯାଇ ପାରେ ଯେ, ସ୍ୱାମୀଜୀଙ୍କର ମାନସ ପୁତ୍ର ନେତାଜୀ ।

ନେତା କିଏ ? ସ୍ୱାମୀଜୀଙ୍କ ଭାଷାରେ—"ନେତା କଣ ତିଆରି କରାଯାଏ ? Leader (ନେତା) ଜନ୍ମ ହୁଅନ୍ତି । ନେତୃତ୍ୱ କରିବା ପୁଣି ବଡ କଠିନ—ଦାସସ୍ୟ ଦାସଃ; ହଜାରେ ଲୋକଙ୍କ ମନ ତୁଷ୍ଟି କରିବା, ଈର୍ଷା, ସ୍ୱାର୍ଥପରତା ଆଦୌ ରହିବ ନାହିଁ ।——ତେବେ ଯାଇ Leader (ନେତା) ହେବା ପ୍ରଥମେ by birth (ଜନ୍ମଗତ), ଦ୍ୱିତୀୟ Unself fish (ନିସ୍ୱାର୍ଥ), ତେବେ ଯାଇ Leader (ନେତା)...... ଶିରଦାର ଓ ସର୍ଦ୍ଦାର, ମୁଣ୍ଡ ଦେଇ ପାରନ୍ତ ନେତା ହେବ । ସେଭଳିକି ନେତା ସୁଭାଷ ଚନ୍ଦ୍ର.................ଦେଶବାସୀଙ୍କର ପ୍ରିୟନେତାଜୀ ।

୧୯୪୨ ମସିହା ଅଗଷ୍ଟମାସ ୭ତାରିଖ ଦିନ ମହାତ୍ମା ଗାନ୍ଧି ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟି ଆଗରେ ନିଜର 'ଭାରତଛାଡ଼' ପ୍ରସ୍ତାବ ଆଗତ କଲେ ଓ ଇଂରେଜମାନଙ୍କୁ ସଙ୍ଗେ ସଙ୍ଗେ ଭାରତଛାଡ଼ି ଚାଲିଯିବାକୁ ଉପଦେଶ ଦେଲେ । ଅଗଷ୍ଟମାସ ୮ତାରିଖ ଦିନ ସନ୍ଧ୍ୟାରେ ନିଖିଳ ଭାରତ କଂଗ୍ରେସ କମିଟି ବିପୁଳ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ମହାତ୍ମା ଗାନ୍ଧିଙ୍କ ପ୍ରସ୍ତାବ ଅନୁମୋଦନ କଲେ । ୧୯୪୨ ମସିହାର ସେହି 'ଭାରତଛାଡ଼' ଆନ୍ଦୋଳନ ହେଉଛି ବ୍ରିଟିଶ୍ ବିରୁଦ୍ଧରେ ଭାରତର ଶେଷ ବିପ୍ଳବ । 'ଭାରତଛାଡ଼' ଆନ୍ଦୋଳନ ଚାଲିଥିଲାବେଳେ ଭାରତର ବାହାରେ ଜାତୀୟ ସଂଗ୍ରାମର ଅନ୍ୟ ଏକ ଅଧ୍ୟାୟ ଦେଶର ଅନ୍ୟତମ ତରୁଣନେତା ସୁଭାଷଚନ୍ଦ୍ର ବୋଷ ପୂର୍ବ ସୀମାନ୍ତର ଅପର ପାଖରେ ଭାରତୀୟମାନଙ୍କୁ ସଂଗଠିତକରି ଯୁଦ୍ଧପାଇଁ ପ୍ରସ୍ତୁତ ହେଉଥାଆନ୍ତି ।

୧୯୪୧ରେ ସୁଭାଷଚନ୍ଦ୍ର ବୋଷ ଆତ୍ମଗୋପନକରି କଲିକତାରେ ଭାରତ ବାହାରକୁ ଚାଲିଯାଇଥିଲେ । ଜର୍ମାନୀର ସ୍ୱୈର ଶାସକ ହିଟଲରଙ୍କ ସହିତ ପ୍ରଥମେ ସେ ସଂପର୍କ ସ୍ଥାପନ କଲେ । ସେ ଅହିଂସା ନୀତି ବର୍ଜନ କରି ବୀରୋଚିତ ଭାବରେ ଇଂରେଜମାନଙ୍କ ସହିତ ଯୁଦ୍ଧକରିବା ଉଚିତ୍‌ବୋଲି ସଂକଳ୍ପ କଲେ । ପ୍ରାଚ୍ୟଖଣ୍ଡରେ ଜାପାନ ଯୁଦ୍ଧରେ ଯୋଗଦେବାରୁ ସେ ଜର୍ମାନୀରୁ ଜାପାନକୁ ଯାତ୍ରାକଲେ । ଧୀରେ ଧୀରେ ଜାପାନୀମାନେ ମାଲୟ, ସିଙ୍ଗାପୁର ଓ ବ୍ରହ୍ମଦେଶ ଅଧିକାର କରିଗଲେ ଓ ସେହିସବୁ ସ୍ଥାନରେ ଇଂରେଜମାନେ ଯୁଦ୍ଧରେ ପରାସ୍ତ ହୋଇଥିଲେ । ଇଂରେଜମାନେ ସେମାନଙ୍କ ସୈନ୍ୟବାହିନୀରେ ରହିଥିବା ଅସଂଖ୍ୟ ଭାରତୀୟ ସୈନ୍ୟଙ୍କୁ ବିପଦ ମଧ୍ୟକୁ ଠେଲିଦେଇ ପଳାଇ ଆସିଥିଲେ । ସୁଭାଷଚନ୍ଦ୍ର ବୋଷ ସେହି ଭାରତୀୟ ସୈନ୍ୟମାନଙ୍କୁ ନେଇ ଆଜାଦ୍ ହିନ୍ଦ ଫୌଜ (Indian National Army) ନାମକ ଗୋଟିଏ ଭାରତୀୟ ଜାତୀୟ ବାହିନୀ ଗଠନ କଲେ । ତାପରେ ସେ ସିଙ୍ଗାପୁରଠାରେ ଭାରତପାଇଁ ଗୋଟିଏ ସ୍ୱାଧୀନ ସରକାର ପ୍ରତିଷ୍ଠାକରି ବ୍ରିଟିଶ୍ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ଭାରତୀୟମାନେ ତାଙ୍କପ୍ରତି ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନକରି 'ନେତାଜୀ' ଉପାଧିରେ ତାଙ୍କୁ ଭୂଷିତ କରିଥିଲେ ।

୧୯୪୩ ବେଳକୁ ନେତାଜୀଙ୍କ ପରିଚାଳିତ ଆଜାଦ୍ ହିନ୍ଦ ଫୌଜର ସୈନ୍ୟମାନେ ଭାରତ ସୀମାରେ ଉପସ୍ଥିତ ହେଲେ । ଏହି ସମୟରେ ଆସାମର କୋହିମାଠାରେ ସେମାନେ ସ୍ୱାଧୀନ ପତାକା ଉତ୍ତୋଳନକଲେ । ନେତାଜୀଙ୍କ ଆଦେଶଥିଲା 'ଦିଲ୍ଲୀ ଚଲୋ' । ସେ ଅନୁଭବ କରିଥିଲେ ବିନା ସୈନ୍ୟବାହିନୀରେ ଦେଶ ସ୍ୱାଧୀନତା ଲାଭ କରିବା ଅସମ୍ଭବ । ଜର୍ଜ ୱାସିଂଟନ୍, ଆମେରିକା ଓ ଗାରିବାଲ୍‌ଡ଼ି ଇଟାଲୀକୁ ସୈନ୍ୟବାହିନୀର ସାହାଯ୍ୟରେ ସ୍ୱାଧୀନ କରିପାରିଥିଲେ । ସେ କହୁଥିଲେ—ମୋତେ ରକ୍ତଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି । ୧୯୪୩ମସିହା ଜୁଲାଇ ୫ତାରିଖ ଦିନ ସେ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନଙ୍କୁ ଉଦ୍‌ବୋଧନଦେଇ କହିଥିଲେ—

Throughout my public career I have always felt that though India in otherwise ripe for independence in every way, she has lacked one thing, namelv an army of liberation. George Washington of America could fight and win freedom, because he had his army. Garibaldi could liberate Italy, because he had his armed volunteers behind him. It is your privilege and honour to be the first to come forward and Organize India's national army, By doing so, you have removed the last obstacle in our path to freedom. Be happy and proud that you are the pioneers, the vanguard, in such a noble cause. Let me remind you that you have a two-fold task to perform. with the force of arms and the cost of your blood you will have to win liberty. Then, when India is free, you will have to organize the permanent army of Free India, whose task it will be to preserve our liberty for all time. We must build up our national defence on such an unshakable foundation that never again in our history shall we lose our ftsedom.

୧୯୪୩ ମସିହା ଅକ୍ଟୋବର ୨ତାରିଖ ଦିନ ମହାତ୍ମା ଗାନ୍ଧିଙ୍କର ୭୫ତମ ଜୟନ୍ତୀ ଯେତେବେଳେ ଖୁବ୍ ଜାକ୍‌ଜମକରେ ସାରା ବିଶ୍ୱରେ ଭାରତୀୟମାନେ ପାଳନ କରୁଥିଲେ ସେତେବେଳେ ସୁଭାଷଚନ୍ଦ୍ର ବୋଷ ବ୍ୟାଙ୍କକ୍‌ଠାରେ ଜାତିର ପିତା ମହାତ୍ମା ଗାନ୍ଧିଙ୍କପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ସେତେବେଳେ ସେ ପ୍ରକାଶ କରିଥିଲେ ୧୯୨୦ ମସିହା ଡିସେମ୍ବର ମାସରେ ମହାତ୍ମା ଗାନ୍ଧି ନାଗପୁରଠାରେ କଂଗ୍ରେସର ବାର୍ଷିକ ଅଧିବେଶନରେ କହିଥିଲେ—ଭାରତର ଯଦି ତରବାରୀ ଥାଆନ୍ତା ତେବେ ମୁଁ ଯୁଦ୍ଧକରିବାକୁ କହିଥାଆନ୍ତି । ଅସଶସ୍ତ୍ର ଅଭାବରେ ଅସହଯୋଗ ଆନ୍ଦୋଳନ ବା ସତ୍ୟାଗ୍ରହ ଛଡ଼ା ଅନ୍ୟବାଟ ନାହିଁ । ସୁଭାଷଚନ୍ଦ୍ର ବୋଷଙ୍କ ଭାଷାରେ—

I would like to remind you that when Mahatma Gandhi commended his non-co-operation programme to the Indian nation at the annual session of the Congress at Nagpur in December 1920, he said, "If India had the sword to day, she would have drawn the sword." And proceeding further with his argument, Mahatmaji then said that since armed revolution was out of

the question, the only other alternative before the country was that of non-co-operation or Satyagraha. Since then times have charged and it is now possible for the Indian people to draw the sword.

୧୯୪୪ ମସିହା ଜୁଲାଇ ୬ତାରିଖ ଦିନ ଜାତିର ପିତା ମହାତ୍ମା ଗାନ୍ଧିଙ୍କ ନିକଟକୁ ଆଜାଦ୍ ହିନ୍ଦ୍ ରେଡ଼ିଓରୁ ବାର୍ତ୍ତା ପ୍ରେରଣକରି ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଆଶୀର୍ବାଦ ଭିକ୍ଷା କରିଥିଲେ । ସୁଭାଷଚନ୍ଦ୍ରଙ୍କ ଭାଷାରେ–

Father of our Nation ! In this holy war of India's liberation, we ask for your blessings and good wishes

ସେହି ବାର୍ତ୍ତାରେ ସେ ଜାତିର ପିତାଙ୍କୁ ବୁଝାଇ କହିଥିଲେ ଭାରତର ମୁକ୍ତିପାଇଁ ସେ ବାଧ୍ୟହୋଇ ଦେଶ ଛାଡ଼ିଛନ୍ତି । ଏହିଭଳି ସଙ୍କଟ ସମୟରେ ବହିଃ ଶକ୍ତିର ସାହାଯ୍ୟ ବ୍ୟତିରେକେ ଦେଶ ସ୍ୱାଧୀନ ହୋଇପାରିବ ବୋଲି ସେ ଭାବୁ ନ ଥିଲେ । ନେତାଜୀଙ୍କ ଭାଷାରେ–

If I had the slightest hop that without action from aboroad we could win freedom, I would never have left India during a crisis If I had any hope that within our life-time we would get another chance—another golden opportunity for winning freedom, as during the present war, I doubt if I would have set out for home.

୧୯୪୫ ମସିହାରେ ମହାଯୁଦ୍ଧ ଶେଷ ହୋଇଗଲା ସେହିବର୍ଷ ମେ ମାସରେ ଜର୍ମାନୀର ପତନ ଘଟିଲା । ଅଗ ମାସରେ ଜାପାନ ଉପରେ ପରମାଣୁ ବୋମା ନିକ୍ଷେପ ହେବା ଜାପାନ ଆତ୍ମସମର୍ପଣକଲା । ପରେ ପରେ ଆଜାଦ ହିନ୍ଦ୍ ଫୌଜ ସେନାପତିମାନେ ଇଂରେଜଙ୍କ ହସ୍ତରେ ବନ୍ଦୀହେଲେ । ନେତାଜ ବିମାନ ଦୁର୍ଘଟଣାରେ ଜୀବନ ହରାଇଲେ । ଜନ୍ମଭୂମିର ମୁକ୍ତିପା ଆଜାଦ୍ ହିନ୍ଦ୍ ଫୌଜ ଯେଉଁ ଅପୂର୍ବ ବୀରତ୍ୱ ଦେଖାଇ ଜୀବ ଦେଇଥିଲେ ତାହାର ରୋମାଞ୍ଚକର କାହାଣୀମାନ ଦେଶର ବ୍ୟାପିଗଲା । ଇଂରେଜ ସରକାର ବନ୍ଦୀ ସେନାପତିମାନ ଦେଶଦ୍ରୋହୀ ଅପରାଧରେ ଦୋଷୀ କରିବାରୁ ଲୋକଙ୍କ ମଧ୍ୟର ପ୍ରବଳ ବିକ୍ଷୋଭ ପ୍ରକାଶ ପାଇଲା ।

ଓଡ଼ିଶାର ବରପୁତ୍ର ନେତାଜୀଙ୍କ କୃତିତ୍ୱ ସ୍ୱାଧୀନ ସଂଗ୍ରାମର ଏକ ବୀରତ୍ୱପୂର୍ଣ୍ଣ ଓ ଗୌରବମୟ ସ୍ମୃତିରୂ ଜାତୀୟ ପ୍ରାଣରେ ଶିହରଣ ସୃଷ୍ଟିକରେ ।

ଏମ-୯, ଉଦ୍ୟାନ ମାର୍ଗ
ଭୁବନେଶ୍ୱର-୭୫୧୦୦୯



ମାର୍ଚ୍ଚ୍ୟଙ୍କାରେ ଜଗନ୍ନାଥ ମହାପାତ୍ର
ପୁରସ୍କୃତ



ଦେଶ ଖଣ୍ଡରୁ ଐତିହାସିକ ମୃତ୍ତିକା ସଂଗ୍ରହ






## ରାଜଲକ୍ଷ୍ମୀ ହାର୍ଡ୍‌ୱେୟାର ଷ୍ଟୋର ହାର୍ଡ୍ ଟାଇମ୍‌ସ୍‌ର ମୁକାବିଲା

କଟକ ଜିଲ୍ଲା ନରସିଂହପୁର ବ୍ଲକ୍‌ର ହରିଚନ୍ଦନପୁର ଶାସନ ଗ୍ରାମର ଶ୍ରୀ ପ୍ରସନ୍ନ କୁମାର ଦାଶ ଜଣେ ଶିକ୍ଷିତ ବେକାର ଯୁବକ । ବୟସ ୩୭ ବର୍ଷ । ବାପା ମା ବହୁ ଦିନରୁ ଇହଧାମ ତ୍ୟାଗ କରିଛନ୍ତି । ୨ପୁଅ ଏବଂ ୩ଟି ଝିଅଙ୍କୁ ମିଶାଇ ୭ଜଣ ପରିବାର । ଘରଡିହ ୩ଗୁଣ୍ଠ ବ୍ୟତୀତ ଜମିବାଡ଼ି ଆଦୌ ନାହିଁ । ପ୍ରସନ୍ନ ମାଟ୍ରିକ୍ ପାଶ୍‌ପରେ ପରେ ଚାକିରୀ କରିବେ ନାହିଁ ବୋଲି ସଂକଳ୍ପ ନେଲେ । ନରସିଂହପୁର ହାଟରେ ତାଙ୍କର ନିଜସ୍ୱ ଏକ ଗୃହରେ ତେଜରାତି ଦୋକାନ ଦେଲେ ଯେଉଁ ଦୋକାନ ପଚାଶର କରଜ ଟଙ୍କାରେ ଗଢିଉଠିଲା । ଫଳରେ କରଜ ସୁଝିବା ଏବଂ ନିଜର ଘରଖର୍ଚ୍ଚ ଯୋଗୁଁ ଦୋକାନର ଉନ୍ନତି ବିଶେଷ କିଛି ହୋଇ-ପାରିଲା ନାହିଁ । ପୁନଶ୍ଚ ଚିହ୍ନାପରିଚିତ ଲୋକଙ୍କ ଉପରେ ଅନେକ ଟଙ୍କା ବାକି ରହିଗଲା ।

ନରସିଂହପୁରରେ ଅନେକ ତେଜରାତି ଦୋକାନ ଅଛି । କିନ୍ତୁ ଏକ 'ହାର୍ଡୱେୟାର' ଷ୍ଟୋର (ଲୁହାଦୋକାନ) ଏଠାରେ କରାଗଲେ ଭଲଚାଲିବ ବୋଲି ସେ ମନେ ମନେ ସ୍ଥିର କଲେ । କିନ୍ତୁ ୪୦ ହଜାରରୁ ଅଧିକ ଟଙ୍କା ହେଲେ ଲୁହା ଦୋକାନ ଖୋଲି ପାରିବ । ଏତେ ଟଙ୍କା ପାଇବ କେଉଁଠୁ? ଏଇଟଙ୍କା ବିଷୟରେ ସେ ଅନେକ ଚିନ୍ତା କରୁଥାଆନ୍ତି । ଦିନେ କୌଣସି ଏକ କାର୍ଯ୍ୟରେ ନରସିଂହପୁର ବ୍ଲକ ଚେୟାରମେନ ଶ୍ରୀ ପ୍ରସନ୍ନ କୁମାର ମିଶ୍ର ଅସି ଥାଆନ୍ତି । କଥା ପ୍ରସଙ୍ଗରେ ସେ କହିଲେ—ପ୍ରସନ୍ନ ବାବୁ ଆଉ କିଛି ଅଧିକ ଟଙ୍କା ଖର୍ଚ୍ଚ କରି ଦୋକାନକୁ ବଢାଉନାହଁ କାହିଁକି ? ସେ ତାଙ୍କ ମନରେ ଥିବା ଲୁହା ଦୋକାନ ବିଷୟ ଚେୟାରମେନଙ୍କୁ କହିଲେ । ଚେୟାରମେନଙ୍କ ଆଦେଶ କ୍ରମେ ସେ ଜାଣିବାକୁ ପାଇଲେ ଯେ ଜିଲ୍ଲା ଶିଳ୍ପ କେନ୍ଦ୍ର ସହାୟତାରେ ବେକାରମାନଙ୍କୁ ସରକାର ୨୫ ହଜାର ଟଙ୍କା ଋଣ ଦେଉଛନ୍ତି । ଏଣୁ ସେ ସରକାରଙ୍କ ନିୟମ ଅନୁସାରେ ଏକ ଦରଖାସ୍ତ କଲେ । ସ୍ଥାନୀୟ ବି.ଡି. ଓ. ଏବଂ ଜିଲ୍ଲା ଶିଳ୍ପ କେନ୍ଦ୍ରର ଜଣେ ଅଫିସରଙ୍କ ଦ୍ୱାରା ହୋଇଥିବା ଇଣ୍ଟରଭ୍ୟୁରେ ଶ୍ରୀ ଦାସ କୃତକାର୍ଯ୍ୟ ହୋଇ ନରସିଂହପୁର କମରସିଆଲ ବ୍ୟାଙ୍କ ଜରିଆରେ ୨୫ ହଜାର ଟଙ୍କାର ଦୋକାନପାଇଁ ଲୁହା ସାମଗ୍ରୀ କିଣିଲେ । ପୂର୍ବଥିବା ତେଜରାତି ଦୋକାନର ସମସ୍ତ ଜିନିଷ ବିକ୍ରୀକରି ସେଥିରୁ ପ୍ରାପ୍ୟ ୧୫ ହଜାର ଟଙ୍କା ଉକ୍ତ ଲୁହା ଦୋକାନରେ ଲଗାଇଥିଲେ । ୧୯୮୬ ଜୁଲାଇ ମାସରେ ଦୋକାନ ଆରମ୍ଭ ହେଲା । ଦୋକାନରେ ସପ୍ତାହରେ ଦୁଇଟି ହାଟ ପାଇଁରେ ଅଧିକ ବିକ୍ରୀହୁଏ । ପୁନଶ୍ଚ ସରକାର ଇ. ଆର. ଆର. ପି. ଏବଂ ଆଇ. ଆର. ଡି. ପି. ଋଣ କରୁଥିବା ଗରିବ ଲୋକମାନେ ଆଉ ଦୂରକୁ ନଯାଇ ଉକ୍ତ ରାଜଲକ୍ଷ୍ମୀ ଦୋକାନରୁ ସୁବିଧା ମୂଲ୍ୟରେ ବଳଦର କମାର, ମିସ୍ତ୍ରୀକାର୍ଯ୍ୟ ପାଇଁ ବିଭିନ୍ନ ସରଞ୍ଜାମ କ୍ରୟ କରୁଛନ୍ତି । ଦୋକାନରୁ ବର୍ତ୍ତମାନ ଦିନରେ ହାରାହାରି ୫୦୦ ଟଙ୍କା ବିକ୍ରୀ ହେଉଛି ଏବଂ ଦିନରେ ହାରାହାରି ୭୫ ଟଙ୍କା ଲାଭ ହେଉଛି । ମାସରେ ୨୨୫୦ ଟଙ୍କା ଲାଭ ମିଳୁଛି । ୧୯୮୬ ମସିହା ଅଗଷ୍ଟ ମାସଠାରୁ ୧୯୮୬ ମସିହା ମଇ ମାସ ମଧ୍ୟରେ ମାସକୁ ୨୫୦ ଟଙ୍କା ହିସାବରେ ୨୫୦୦ ଟଙ୍କା ଋଣ ବାବଦକୁ ପରିଶୋଧ କରି ପାରିଛନ୍ତି । ପ୍ରତିମାସରେ ୮୦୦ ଟଙ୍କାରୁ ୧୦୦୦ ଟଙ୍କା ପର୍ଯ୍ୟନ୍ତ ଘରଖର୍ଚ୍ଚ ହେଉଛି । ମଫସଲ ଲୋକାନ ସମୟରେ ବାକିଥିବା କିଛି କରଜଟଙ୍କା ମଧ୍ୟ ପରିଶୋଧ କରି ଦେଇପାରିଛନ୍ତି । ୩ ହଜାର ଟଙ୍କା ଖର୍ଚ୍ଚ କରି ନିଜ ଅଗଣାରେ ଏକ କୂପ ଖୋଳାଇ ପାରିଛନ୍ତି । ନିଜର ଛୋଟ ଛୋଟ ଦୁଇଟି ପିଲା ବର୍ତ୍ତମାନ ସ୍କୁଲକୁ ଯାଉଛନ୍ତି । ସରକାରଙ୍କ ଠାରୁ ପାଇଥିବା ଋଣର ୨୫ ପରସେଣ୍ଟ ଗଲେ ତାଙ୍କୁ ୧୮,୭୫୦ ଟଙ୍କା ସୁଝିବାକୁ ହେବ । ଉକ୍ତ ଋଣ ଟଙ୍କାକୁ ପ୍ରତିମାସରେ ୨୫୦ ଟଙ୍କା ହିସାବରେ ସୁଝିବା ପାଇଁ ସେ ସଂକଳ୍ପ ନେଇଛନ୍ତି ।

ଶ୍ରୀ ବିଧୁଭୂଷଣ ମାନସିଂହ

ଅନୁବିଭାଗୀୟ ସୂଚନା ଓ ଲୋକ ସଂପର୍କ ଅଧିକାରୀ
କଟକ

## ପୁରସ୍କୃତ ଗୋ-ପାଳକ

ଢେଙ୍କାନାଳ ଜିଲ୍ଲା ଗଁଦିଆ ବ୍ଲକ୍ ଅନ୍ତର୍ଗତ ଅଡିଶା ଗାଁରେ ଶ୍ରୀ ବିଷ୍ଣୁ ଚରଣ ଦାସଙ୍କର ଘର । ତାଙ୍କ ପରିବାରରେ ତାଙ୍କ ମା, ୪ ଭାଇ, ୨ ଟି ଭାଇବୋହୂ, ଗୋଟିଏ ପୁଅ, ୪ଟି ଝିଅ, ୨ଟି ପୁତୁରା ଓ ୨ଟି ଝିଆରୀଙ୍କୁ ମିଶାଇ ମୋଟ ୧୮ ଜଣ କୁଟୁମ୍ବ । ଘରଡିହ ୮ ଡେସିମିଲ ଓ ଚାଷଜମି ୪ ଏକର । ଉକ୍ତ ପାଇଲେ ବର୍ଷକୁ ୧୦/୧୨ ଭରଣ ବା ୪୦ ରୁ ୪୮ କୁଇଣ୍ଟାଲ

ଧାନ ପାଆନ୍ତି, ନଚେତ୍ ୨୦/୨୫ ହୁଉଣ୍ଡାଇ ହୁଏ । ଭଲଫସଲ ହେଲେ ଏଥିରୁ ଘର ଖାଇବା ମାତ୍ର ଛ'ମାସ ଚଳେ । ଯେଉଁ ବର୍ଷ ଭଲ ଫାଳକ ହୁଏ ନାହିଁ, ସେହିବର୍ଷ ୨/୩ ମାସ ବି ଯାଏନି । ୫ ଭାଇଯାକ ବର୍ଷକରେ ୪/୫ ମାସ ଦୈନିକ ୧୦ ଟଙ୍କା ଲେଖାଏଁ ମଜୁରୀରେ ମୂଲ ଲାଗନ୍ତି । ନିଜ ବିଲବାଡ଼ିରେ ପନିପରିବା ଚାଷ କରି ବିକ୍ରୀ କରନ୍ତି ଓ ଘରର ଗୁଜୁରାଣ କୌଣସିମତେ କଷ୍ଟେ ମଷ୍ଟେ ମେଣ୍ଟିଯାଏ । ତଥାପି ବର୍ଷ ତମାମ ବହୁ ଅଭାବ ଅସୁବିଧାରେ ସଂସାର ଚଳେ । ପିଲାଙ୍କ ପଢ଼ିବା ଓ ଖାଇବା ଖର୍ଚ୍ଚରୁ ଯାହା ବଳେ, ସେଥିରେ ବଡ ମଣିଷ ୨ ଜଣ କେତେବେଳେ ଓଳିଏ ବା କେତେବେଳେ ଦୁଇଓଳି ଖାଇ ଚଳନ୍ତି । ଏଇ ଅଭାବ ଅସୁବିଧା ଦୂର କରି ଗୁଜୁରାଣ ମେଣ୍ଟାଇ ବଡସାନ ସମସ୍ତେ ତିନିବକ୍ତ ଖାଇବାର ବନ୍ଦୋବସ୍ତ କରିବାକୁ ଓ ଭଲରେ ଚଳିବା ପାଇଁ ସ୍ଥାନୀୟ ଯୋରନ୍ଦା ସହ ପଶୁଶଲ୍ୟ ଚିକିତ୍ସକ ଡ଼ାଃ ଶ୍ୟାମ-ସୁନ୍ଦର ସାହୁଙ୍କ ପରାମର୍ଶରେ ଜର୍ସିଗାଈ ପାଳିବାକୁ ଶ୍ରୀ ବିଷ୍ଣୁ ଚରଣ ଦାସ ମନସ୍ଥ କଲେ । ୧୯୮୬ ମସିହାରେ ଢେଙ୍କାନାଳ ଜିଲ୍ଲା ଦୁଗ୍ଧ ସମବାୟ ସଂଘ ଋଣସୂତ୍ରରେ ଉତ୍କଳ ଗୋ-ମଙ୍ଗଳ ସମିତିଙ୍କ ଭୋଷରା ଛଡା ପାଳନ କେନ୍ଦ୍ରରୁ ଗୋଟିଏ ଗର୍ଭିଣୀ ସଙ୍କର ଜସିଛଡା ୪ ହଜାର ଟଙ୍କା ଦାମ୍‌ରେ ତାଙ୍କ ପାଇଁ କିଣି-କରି ଦେଲେ । ଏହି ଛଡାଟି ଆସିବାର ୫ ଦିନ ପରେ ମାଈ ବାଛୁରୀଟିଏ ଜନ୍ମଦେଇ ଦୈନିକ ୧୦ ଲିଟର କ୍ଷୀର ଦେଲା । ବର୍ତ୍ତମାନ ବର୍ଷେ ୨ ମାସ ପରେ ମଧ୍ୟ ୪/୫ ଲିଟର ଲେଖାଏଁ କ୍ଷୀର ଦେଉଛି ଓ ପୁଣି କୃତ୍ରିମ ପ୍ରଜନନରେ ୬ ମାସ ଗର୍ଭ ଅଛି । ଏହାକୁ ଯୋରନ୍ଦା ପଶୁ ଚିକିତ୍ସାଳୟରେ ପ୍ରଜନନ କରାଯାଇଛି ।

ଏ ଦୁଗ୍ଧ ବିକ୍ରୀ ଲାଭରୁ ଓ ପରିବା ବିକ୍ରୀରୁ କିଛି ଟଙ୍କା ସଂଚୟ କରି ନିଜ ହାତରୁ ଦୁଇ ହଜାର ଟଙ୍କା ଦାମ୍‌ରେ ସେ ମାଈ ବାଛୁରୀ ସହ ଦୈନିକ ୨ ଲିଟର କ୍ଷୀର ଦେଉଥିବା ଆଉ ଗୋଟିଏ ସଂକର ଜର୍ସିଗାଈ କିଣିଛନ୍ତି । ଯେତେବେଳେ ପ୍ରଥମ ଗାଈଟି ୧୦ ଲିଟର ଦେଉଥିଲା ସେ ଦୁଗ୍ଧ ସମବାୟ ସମିତିକୁ ଲିଟର ଟ ୩.୨୫ ପଇସା ଦରରେ ବିକି ଦିନକୁ ଟ ୩୨.୫୦ ପଇସା ପାଉଥିଲେ ଏବଂ ଦାନା ବାବଦକୁ ୧୦ ଟଙ୍କା ଓ ନଡା ପାଇଁ ଟ ୧.୫୦ ପଇସା, ଏପରି ମୋଟ୍ ଟ ୧୧.୫୦ ପଇସାରୁ ୧୨ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ଯାଇ ୨୦ ଟଙ୍କାରୁ ୨୧ ଟଙ୍କା ଲାଭ ପାଉଥିଲେ । ଏବେ ଦୁଇଟି ଗାଈଙ୍କର ମୋଟ୍ ସାଢ଼େ ୭ ଲିଟର କ୍ଷୀର ଦେଇ ଟ ୨୪.୩୭ ପଇସା ପାଉଛନ୍ତି ଓ ଦାନା ନଡା ବାବଦ ଟ ୧୬.୫୦ ପଇସା ଖର୍ଚ୍ଚକରି ଦିନକୁ ମାତ୍ର ଟ ୭.୮୭ ପଇସା ଲାଭ ପାଉଛନ୍ତି । ଘାସ ନିଜେ କାଟି ନେଉଥିବାରୁ ଖର୍ଚ୍ଚ ପଡୁନାହିଁ । ଗତ ୭ ମାସରେ ମାସିକ ୧୫୦ ଟଙ୍କା ଲେଖାଏଁ କିସ୍ତି ମୋଟ୍ ୧୦୫୦ ଟଙ୍କା ଶୁଝିଛନ୍ତି । ଗାଈ ଦୁଇଟି ୩/୪ ମାସରେ ପୁଣି ଜନ୍ମ କଲେ ଆଉ ବର୍ଷକରେ ସେ ବାକୀ ଋଣ ଶୁଝିଦେବେ ଓ ଗାଈ ବାଛୁରୀ ୬ଟି ତାଙ୍କ ନିଜର ସଂପତ୍ତି ହୋଇଯିବ ବୋଲି କହନ୍ତି । ତାଙ୍କ ଗାଈ ବ୍ଲକ୍ ପ୍ରଦର୍ଶନୀରେ ପ୍ରଥମ ପୁରସ୍କାର ଲାଭ କରିଛି ।

କହିବାକୁ ଗଲେ ଗୋ-ପାଳନରେ ଆଜି ଶ୍ରୀ ବିଷ୍ଣୁ ଦାସଙ୍କ ଆର୍ଥିକାବସ୍ଥାର ଉନ୍ନତି ଘଟିଛି ଏବଂ ସେ ନିଜର ଗୁଜୁରାଣ ମେଣ୍ଟାଇବାକୁ ତାଙ୍କୁ ଆଉ ପୂର୍ବଭଳି ଅଧିକ ପରିଶ୍ରମ କରିବାକୁ ପଡୁନାହିଁ ବୋଲି ସେ କହନ୍ତି ।

# କମଳା ପାଇଁ ଦ୍ୱିତୀୟବାର ଋଣ

କଟକ ଜିଲ୍ଲା ମାହାଙ୍ଗା ବ୍ଲକ୍ ଅନ୍ତର୍ଗତ ସ୍ୱର୍ଣ୍ଣ... ଗ୍ରାମର ୬୦ ବର୍ଷର ବୃଦ୍ଧା କମଳା ସାହୁ । ଘରଡିହ ସ୍ଥ... ଡେସ୍‌ମିଲ ବ୍ୟତୀତ ଜମିବାଡ଼ି କିଛି ନାହିଁ । ସ୍ୱରି ପୁଅ ଓ ସ୍ୱରି ଝି... ଛାଡ଼ି ସ୍ୱାମୀ ବିରକିଶୋର ସାହୁ ଇହଧାମ ତ୍ୟାଗ କରିଛ... ଝିଅ ଗୁରୋଟିଙ୍କର ବିବାହ କାର୍ଯ୍ୟ ଶେଷ ହେଲଣି । ପୁଅ ବୁ... ବୁଢ଼ୀ ଉପରେ ସଂପୂର୍ଣ୍ଣ ଭାବରେ ନିର୍ଭର କରନ୍ତି । କ... ଅନ୍ୟର ମୂଲପାତି କରି ପରିବାର ପ୍ରତିପୋଷଣ କରେ । ... ନମିଳିଲେ ସମୟେ ସମୟେ ଉପବାସ ରହିବାକୁ ପଡ଼ିଥାଏ... ଅନ୍ୟ ଦୁଇପୁଅ ବୁଢ଼ୀଠାରୁ ଭିନ୍ନେ ଅଛନ୍ତି । କମଳା ମନ... ଥାଏ, ପୁଅ ବାବୁନା ଟେଲର କାମ ଅନ୍ୟ ପାଖରେ ଶିଖିଛି । ... ନିଜର ମେସିନ ଥୁଅନ୍ତା ତାହା ହେଲେ କିଛି ଭରଣ ପୋ... ପାଇଁ ମିଳିଯାଆନ୍ତା, କିନ୍ତୁ ସିଲେଇ ମେସିନର ଦାମ୍ ଏକ ହଜା... ଊର୍ଦ୍ଧ୍ୱ, ଯାହା କମଳା ପକ୍ଷେ ଏକ ଦିବା ସ୍ୱପ୍ନ—ଏତେ ଟଙ୍କା ପା... କେଉଁଠୁ ?

କମଳା ଶୁଣିବାକୁ ପାଇଲା ବ୍ଲକ୍ ଜରିଆରେ ଗରିବ ଲୋ... ମାନଙ୍କୁ ବିଭିନ୍ନପ୍ରକାର ଋଣ ମିଳୁଛି । ସେଥିରେ ମଧ୍ୟ କେତେ ଟ... ଛାଡ଼ ମିଳିବ । ବୁଢ଼ୀ ଭାବିଲା ତାଙ୍କ ଗ୍ରାମର ବିଜୟ ବାବୁ ବ୍ଲକ... ଚେୟାରମାନ ଅଛନ୍ତି । ତେଣୁ କମଳା ତାର ମନ କଥା ଚେୟା... ମ୍ୟାନ୍‌କୁ କହିଲା । ଚେୟାରମ୍ୟାନ୍, ଗୋଷ୍ଠୀ ଉନ୍ନୟନ ଅଧିକାରୀ... ସହ ଆଲୋଚନା କରି ଆଇ. ଆର. ଡ଼ି. ପି. ଯୋଜନା ମାଧ୍ୟମ... ସ୍ଥାନୀୟ ୟୁନାଇଟେଡ୍ ବ୍ୟାଙ୍କ୍ ଜରିଆରେ କମଳାକୁ ଟ ୧,୩... ଟଙ୍କା ଦାମ୍‌ର ଏକ ସିଲେଇ ମେସିନ୍ ଯୋଗାଇ ଦେଲେ... ଯେଉଁଥିରେ କି ସେ ଶତକଡ଼ା ୩୩ ଭାଗ ରିହାତି ପାଇଲା ।

ଭାଗ୍ୟର ପରିବର୍ତ୍ତନରେ କମଳାର ପୁଅ ରାଜକିଶୋ... ସାହୁ (ବାବୁନା) ଜୁଆଁ ପାଳ ଠାରେ ଟେଲର କାମ କରି ରୋଜଗା... କ୍ଷମ ହେଲା । ସାନପୁଅ ପ୍ରତାପ ଟେଲର କାମରେ ସାହାଯ୍... କରିବା ସଙ୍ଗେ ସଙ୍ଗେ ଗୋଟିଏ ପାନ ଦୋକାନ ନେଇ କି... ରୋଜଗାର କଲା । ଦୁଇଭାଇଙ୍କ ଅକ୍ଳାନ୍ତ ପରିଶ୍ରମରେ କମଳା... ଘର ସୁରୁଖୁରୁରେ ଚାଲିଲା । ଠିକ୍ ସମୟରେ ବ୍ୟାଙ୍କ୍ ଋଣପରିଶୋ... କରି ପାରିଲେ । ତା ପରେ କମଳା ଭାବିଲା ସିଲାଇ ଦୋକାନରେ... କିଛି ନିଜସ୍ୱ କପଡ଼ା ରଖିଲେ ଅଧିକ ରୋଜଗାର ହୋଇ ପାରିବ... ସେ ପ୍ରଥମ ଋଣ ପରିଶୋଧ କରି ଦେଇଥିବାରୁ ସରକାର... ନୀତି ଅନୁସାରେ ଦ୍ୱିତୀୟ କିସ୍ତି ୫,୦୦୦ ଟଙ୍କା ପାଇଲା... କମଳାର ନାତି ଅଜୟ ବର୍ତ୍ତମାନ ଟେଲର କାମରେ ସାହାଯ୍... କରୁଛି । ଦିନକୁ ହାରାହାରି ୨୦ ଟଙ୍କା ହିସାବରେ ମାସକୁ... ୬୦୦ ଟଙ୍କା ରୋଜଗାର ହୋଇ ପାରୁଛି । ବର୍ତ୍ତମାନ କମଳା... ପରିବାର ଖୁବ୍ ଖୁସିରେ ଚଳୁଛନ୍ତି ଏବଂ ବ୍ୟାଙ୍କ୍ ଋଣ ମଧ୍... ପରିଶୋଧ କରୁଛନ୍ତି । କମଳା କହେ ଭଗବାନଙ୍କର ଅପାର... କରୁଣା ଏବଂ ଲୋକପ୍ରିୟ ସରକାରଙ୍କ ଗରିବଙ୍କ ପାଇଁ ଅର୍ଥନୈତିକ... ଯୋଜନା—ଆଜି ତାର ମୁହଁରେ ହସ ଫୁଟାଇ ପାରିଛି ।

ଶ୍ରୀ ବିଶେଶ୍ୱର ଦେ, ...

# ଶିକୁଲା ଗ୍ରାମର ବିକାଶ କାହାଣୀ

ପଲ୍ଲୀ ବିକାଶ ହିଁ ପ୍ରଗତିର ଗୁବିକାଠି । ଆମ ଗ୍ରାମାଞ୍ଚଳରେ ନବଜାଗରଣ ପାଇଁ ଶିକ୍ଷା ଓ ମାନସିକ ଚିନ୍ତାଧାରାରେ ପରିବର୍ତ୍ତନ ନିତାନ୍ତ ଆବଶ୍ୟକ । ଆମ ଦେଶରେ ୧୯୫୨ ମସିହା ପରେ ହିଁ ବିଭିନ୍ନ ବିକାଶମୂଳକ ଯୋଜନା କ୍ରମାଗତ ଭାବେ ପଞ୍ଚବାର୍ଷିକ ଯୋଜନା ଜରିଆରେ କାର୍ଯ୍ୟକାରୀ ହେଉଛି । ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ଦେଶର ସମସ୍ତ ଜନ ସାଧାରଣଙ୍କ ପ୍ରତି ଉଦ୍ଦିଷ୍ଟ । ମାନବ ସମ୍ବଳ ବିନିଯୋଗ କରି ଉତ୍ପାଦନକୁ ଦ୍ୱିଗୁଣିତ କରି ଜନସାଧାରଣଙ୍କୁ ଏକ ସ୍ୱଚ୍ଛଳ ଓ ସୁସ୍ଥ ଜୀବନ ଯାପନ ପାଇଁ ସୁଯୋଗ ଦେବା, ଜାତୀୟ ସମୃଦ୍ଧିର ଉପଯୁକ୍ତ ବିକାଶ ଘଟାଇବା ଏହି ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମର ଲକ୍ଷ୍ୟ ।

ଭାରତରେ ଶତକଡ଼ା ୭୭ ଭାଗ ଲୋକ ପଲ୍ଲୀ ଅଞ୍ଚଳରେ ରହନ୍ତି । ସମୁଦାୟ ଜନ ସଂଖ୍ୟାର ଶତକଡ଼ା ୨୫ରୁ ୩୦ଭାଗ ଲୋକ ହିଁ ସାକ୍ଷର । ପଲ୍ଲୀ ବାସୀଙ୍କୁ ବିଭିନ୍ନ ଯୋଜନା ଉପରେ ଧାରଣା ଦେବା ନିତାନ୍ତ ଆବଶ୍ୟକ । ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ଧାରାବାହିକଭାବେ ପଲ୍ଲୀବିକାଶ ସଂକ୍ରାନ୍ତୀୟ କାର୍ଯ୍ୟକ୍ରମମାନ "ପଲ୍ଲୀ ଶ୍ରୋତା ମଣ୍ଡଳୀ" କାର୍ଯ୍ୟକ୍ରମ ଜରିଆରେ ପ୍ରସାର କରାଯାଏ ।

ଏହି କାର୍ଯ୍ୟକ୍ରମ ବିଶେଷତଃ ପଲ୍ଲୀବାସୀଙ୍କ ସ୍ୱାସ୍ଥ୍ୟ, ଶିକ୍ଷା, କୃଷି, ବୟନ ଶିଳ୍ପ, କୁଟୀର ଶିଳ୍ପ ଓ ପଶୁପାଳନ ଇତ୍ୟାଦି ଉପରେ ଆଧାରିତ ଥାଏ । ଯାହାକୁ ଶ୍ରବଣ କରି ଏବଂ କାର୍ଯ୍ୟକାରୀ କରି ପଲ୍ଲୀବାସୀ ନିଜର ଅଜ୍ଞାନତା, କୁ ସଂସ୍କାରକୁ ଦୂର କରିବା ସଙ୍ଗେ ସଙ୍ଗେ ବହୁଭାବେ ଉପକୃତ ମଧ୍ୟ ହେଉଛନ୍ତି । ଏଣୁ ଏହି କାର୍ଯ୍ୟକ୍ରମ ଅତି ପଲ୍ଲୀ ଅଞ୍ଚଳରେ ଲୋକପ୍ରିୟ ହୋଇପାରିଛି ।

ଗଞ୍ଜାମ ଜିଲ୍ଲାର ୨୯ଟି ବ୍ଲକ୍ ମଧ୍ୟରୁ ପୁରୁଷୋତ୍ତମପୁର ବ୍ଲକ୍ ଅନ୍ୟତମ । ୧୯୮୫ ମସିହାରେ ଅରଖପୁର ଗ୍ରାମ ପଞ୍ଚାୟତ ଅଧୀନରେ ଥିବା "ଶିକୁଳା"କୁ ନୂଆ ଗ୍ରାମପଞ୍ଚାୟତ ଭୂଷଣ ଦିଆଗଲା । ଏହି ଗ୍ରାମର ଲୋକସଂଖ୍ୟା ପ୍ରାୟ ୫,୨୩୫ । ପୁରୁଷଙ୍କ ସଂଖ୍ୟା ୩,୧୦୮ ଓ ସ୍ତ୍ରୀଙ୍କ ସଂଖ୍ୟା ୨,୦୨୭ । ଗ୍ରାମର ଶିକ୍ଷିତ ପୁରୁଷଙ୍କ ସଂଖ୍ୟା ଶତକଡ଼ା ୪୦ ଥିବା ସ୍ଥଳେ ଶିକ୍ଷିତ ସ୍ତ୍ରୀ ଲୋକଙ୍କ ସଂଖ୍ୟା ମାତ୍ର ଶତକଡ଼ା ୮ ଅଟେ । ଶତକଡ଼ା ୯୦ ଭାଗ ଗ୍ରାମବାସୀ କୃଷୀ । ଗିରିଜନ ଓ ତଫସିଲଭୁକ୍ତ ଜାତିର ଲୋକସଂଖ୍ୟା ୧,୬୦୦ । ଶିକୁଳା ଗ୍ରାମର ପ୍ରାୟ ୮୦୦ ଏକର କୃଷି ଜମି ଉପରେ ଶିକୁଳାର ଦୁଇଟି ହଳଗାର ପାଣି ମାଡ଼ୁଛି । ଗୋଟିଏ ଫସଲ ସହ ରବି ଫସଲ ହୁଏ । ପାଣି ମାଡ଼ି ଜଳସେଚିତ ହେବା ବ୍ୟତୀତ ଉଠା ଜଳସେଚନର ବ୍ୟବସ୍ଥା ନାହିଁ । ବର୍ଷରେ ପ୍ରାୟ ୬,୦୦୦ ବସ୍ତା ଧାନ ଅମଳ ହୁଏ । ମାଣ୍ଡିଆ, ମୁଗ, ବିରି ଓ ଚଣା ଇତ୍ୟାଦି ଅନ୍ୟାନ୍ୟ ରବି ଫସଲ ମଧ୍ୟ ଉତ୍ପନ୍ନ ହୁଏ । ଗ୍ରାମରେ ଯେଉଁ ପନିପରିବା ଉତ୍ପନ୍ନ ହୁଏ ତାହା ଦୁଇ ମାସର ପରିବା ଖର୍ଚ୍ଚ ତୁଲାଇ ନିଏ । କିନ୍ତୁ ଅନ୍ୟ ସମୟରେ ବାହାରର ବଜାରରୁ ପରିବା କିଣିବାକୁ ପଡ଼େ । ଗାଁରେ ହଜାରେ ଗାଈ, ଏକଶହ ମଇଁଷି ଓ ପ୍ରାୟ ତିନିଶହ ଛେଳି ଦେଖିବାକୁ ମିଳେ । ନିଜର କ୍ଷୀର ଚାହିଦା ମେଣ୍ଟାଇବା ସହ ଗ୍ରାମଟି ବାହାରକୁ ପ୍ରାୟ ୪୦ ଲିଟର କ୍ଷୀର ବିକ୍ରୀ ନିମିତ୍ତ ପଠାଏ ।

ସଂପୂର୍ଣ୍ଣ ସରକାରୀ ଅନୁଦାନରେ "ଶ୍ରୀ ଗୁଣେଶ୍ୱର ହାଇସ୍କୁଲ" ଖୋଲିଛି ଓ ଗ୍ରାମରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ରହିଛି । ସ୍ୱାସ୍ଥ୍ୟସେବା ନିମନ୍ତେ ଗ୍ରାମବାସୀଙ୍କ ପାଇଁ ସରକାରୀ ଆୟୁର୍ବେଦିକ ଚିକିତ୍ସାଳୟ ରହିଛି । ଏତଦ ବ୍ୟତୀତ ସ୍ୱାସ୍ଥ୍ୟକର୍ମୀ, ମହିଳା ଓ ପୁରୁଷଙ୍କ ପାଇଁ ଦୁଇଟି ସ୍ୱାସ୍ଥ୍ୟ କେନ୍ଦ୍ର ଓ ସ୍ୱାସ୍ଥ୍ୟ ନିରୀକ୍ଷକ ରହିଛନ୍ତି । ଗ୍ରାମର ପ୍ରାୟ ୨୭୦ ଜଣ ପୁରୁଷ ଓ ସ୍ତ୍ରୀ ପରିବାର କଲ୍ୟାଣ ଅସ୍ତ୍ରୋପଚାର କରାଇଛନ୍ତି । ଏମାନଙ୍କ ମଧ୍ୟରୁ ସାତଜଣ "ସବୁଜ ପତ୍ରିକାର ଅଧିକାରୀ" ହୋଇପାରିଛନ୍ତି ।

ପାନୀୟ ଜଳଯୋଗାଣ ନିମିତ୍ତ ସରକାରଙ୍କ ତରଫରୁ ୧୧ଟି ନଳକୂପ ଓ ୭ଟି ସୁଅ କୂପ ଯୋଗାଇ ଦିଆଯାଇଛି । ନିରକ୍ଷରତା ଦୂର କରିବା ପାଇଁ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ଦ୍ୱାରା ପ୍ରାୟ ଶତାଧିକ ବୟସ୍କଙ୍କୁ ସାକ୍ଷର କରାଯାଇ ପାରିଛି । ଗ୍ରାମର ଅର୍ଥନୈତିକ ବିକାଶ ପାଇଁ "ସମବାୟ ସେବା ସମିତି" ପ୍ରାୟ ଲକ୍ଷାଧିକ ଟଙ୍କାର ମୂଳଧନ ଗ୍ରାମବାସୀଙ୍କ ମଧ୍ୟରେ ବିନିଯୋଗ କରିଛି । ଏହି ସମିତିରେ ପ୍ରାୟ ୭୫୦ରୁ ଅଧିକ ଗ୍ରାମବାସୀ ସଭ୍ୟ ଅଛନ୍ତି । ଗ୍ରାମର ପ୍ରାୟ ୫୦ ଜଣ ଅତି ଗରିବ ପରିବାରଙ୍କୁ E. R. R. P., I. R. D. P. ଦ୍ୱାରା ଉପକୃତ କରାଯାଇ ପାରିଛି ।

ଏହି ଗ୍ରାମର ଶ୍ରୀ ମୋହନୀ ପଣ୍ଡାଙ୍କୁ ପ୍ରଥମେ ତିନି ହଜାର ଟଙ୍କା ମନୋହରି ଦୋକାନ କରି ଜୀବିକା ନିର୍ବାହ କରିବାକୁ E.R.R.P. ଋଣ ଦିଆଯାଇଥିଲା । ଏହି ଋଣକୁ ସୁଝିଦେବା ପରେ ପୁଣି ଦ୍ୱିତୀୟ ଥର ଋଣ ପାଇଛନ୍ତି । ସେହିପରି ଅନ୍ୟଜଣେ ଶ୍ରୀ ଜଗ ବେହେରା ଯିଏ କି ଜଣେ ସବୁଜ ପତ୍ରିକାର ଅଧିକାରୀ ସେ ମଧ୍ୟ E.R.R.P. ଋଣ ଦ୍ୱାରା ହଳ ଶଗଡ଼ ପାଇଛନ୍ତି । ଏହିପରି ସରକାରୀ କାର୍ଯ୍ୟକ୍ରମ ଦ୍ୱାରା ଗାଁର ଗରିବ ଲୋକଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଘଟୁଛି ।

ଗାଁରେ ଧର୍ମାନୁଷ୍ଠାନ କହିଲେ ୧୭ଟି ମନ୍ଦିର, ଗୋଟିଏ ମଠ ଓ ଦୁଇଟି ଦଣ୍ଡନାଚ ଅନୁଷ୍ଠାନକୁ ବୁଝାଏ । ପାଞ୍ଚଟି ଭାଗବତ ଘର (ପଢ଼ାଘର) ଗାଁରେ ରହିଛି । ଯୁବକମାନେ "ଅଭୟ ନୃସିଂହ ଯୁବ ସଂସଦ" ନାମକ ଏକ ରେଜିଷ୍ଟ୍ରିକୃତ ସଂସ୍ଥା ୧୯୮୬-୮୭ରେ ଗଠନ କରିଛନ୍ତି ।

କୃଷକ ଓ ଯୁବକମାନେ ମିଶି ଗ୍ରାମରେ "ଶିକୁଳି ପଲ୍ଲୀଶ୍ରୋତା ମଣ୍ଡଳୀ" ଗଠନ କରିଛନ୍ତି । ଏହି ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମ ଶୁଣି ଉତ୍ସାହିତ ହୋଇ ଗାଁର ଯୁବ ସଂସଦର ସଭ୍ୟ ଓ ଅନ୍ୟମାନେ ଦାନ୍ ଅଟକୁଥିବା ସ୍ଥାନରେ ଶ୍ରମଦାନ କରି ୨୫,୦୦୦ ଟଙ୍କାର ଏକ ବିଶ୍ରାମାଗାର ନିର୍ମାଣ କରିଛନ୍ତି ଏବଂ ପ୍ରାଥମିକ ବିଦ୍ୟାଳୟର ନୂତନ ଗୃହ ଲାଗି ମୂଳଦୁଆ ମଧ୍ୟ ସ୍ଥାପନ କରିଛନ୍ତି । ଏହି ପଲ୍ଲୀଶ୍ରୋତାମଣ୍ଡଳୀର ଉଦ୍ୟମ ଫଳରେ ପୁରୁଷୋତ୍ତମପୁର ବ୍ଲକର ଚେୟାରମ୍ୟାନ୍ ଓ ବି. ଡି. ଓ. ଶିକୁଳା ଗ୍ରାମରେ ଥିବା ଜଳ ଭଣ୍ଡାରରେ ବିଶ୍ରାମାଗାର ନିର୍ମାଣ ପାଇଁ ୬ ହଜାର ଟଙ୍କା ମଞ୍ଜୁର କରିଥିଲେ ।

ଶ୍ରୀ ରମେଶ ଚନ୍ଦ୍ର ନାୟକ, ଝିଲିମିଲି ପଲ୍ଲୀଶ୍ରୋତା ମଣ୍ଡଳୀର ଜଣେ ଉତ୍ସାହୀ ସଭ୍ୟ । ଚାଷ ହେଉ ତାଙ୍କ ପେଶା । ସେ ନିୟମିତ ଏହି କାର୍ଯ୍ୟକ୍ରମ ଶୁଣନ୍ତି । ସେ ତାଙ୍କ ବଗିଚାରେ ଝାଉଁ ଓ ଲଙ୍କାଆମ୍ବ ଆଦି ଅର୍ଥକରୀ ବୃକ୍ଷମାନ ଲଗାଇଛନ୍ତି । ଲଙ୍କା ଆମ୍ବ ଚାଷ ସଂପର୍କରେ ପଲ୍ଲୀଶ୍ରୋତାମଣ୍ଡଳୀ କାର୍ଯ୍ୟକ୍ରମରେ ହେଉଥିବା ଆଲୋଚନା ଶୁଣି ଓ ତାହାକୁ ସେ କାର୍ଯ୍ୟରେ ଲଗାଇବା ଦ୍ୱାରା ଏଥର ତାଙ୍କ ଲଙ୍କାଆମ୍ବ ବଗିଚାରେ ଭଲ ଫଳ ଓ ମଞ୍ଜି ଫଳିଅଛି । ସ୍ଥାନୀୟ ଲୋକମାନେ ମଧ୍ୟ ବର୍ତ୍ତମାନ ତାଙ୍କ ପରାମର୍ଶ ଅନୁସାରେ ଲଙ୍କାଆମ୍ବ ଚାଷ କରୁଛନ୍ତି । ଲଙ୍କାଆମ୍ବ ଚାଷୀମାନଙ୍କ ମଧ୍ୟରେ ଶ୍ରୀ ଉଦୟନାଥ ସାହୁ ବିଶେଷ ସଫଳତା ଲାଭ କରିଛନ୍ତି । ଶ୍ରୀ ସାହୁ ତାଙ୍କର ୩ ଏକର ଜମିରେ ପ୍ରାୟ ୨୦୦ ଲଙ୍କାଆମ୍ବ ଗଛ ଲଗାଇଛନ୍ତି ।

ପଲ୍ଲୀଶ୍ରୋତା ମଣ୍ଡଳୀ ଚାଷ କାର୍ଯ୍ୟକ୍ରମ ଶୁଣି ଏହି ଗ୍ରାମର ଚାଷୀ ସର୍ବଶ୍ରୀ ଯୋଗେନ୍ଦ୍ର ବଡ଼ତିଆ, ପ୍ରଭାକର ମହାରଣା, ବୃନ୍ଦାବନ ସାହୁ, ଗଗନ ବିହାରୀ ପଟ୍ଟନାୟକ ଓ ରାମଚନ୍ଦ୍ର ସାହୁ ଇତ୍ୟାଦି ଉନ୍ନତ ପ୍ରଣାଳୀରେ ମୁଗ, ବିରି ଓ ଚିନାବାଦାମ ପ୍ରଭୃତି ଅର୍ଥକାରୀ ଫସଲ ଉତ୍ପାଦନ କରି ବିଶେଷ ଭାବେ ଲାଭବାନ ହୋଇଛନ୍ତି । ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମ ଚାଷୀମାନଙ୍କୁ ବିଶେଷ ଭାବେ ପ୍ରଭାବିତ କରି ପାରିଛି । ଏହି କାର୍ଯ୍ୟକ୍ରମ ଦ୍ୱାରା ଗାଁର ଚାଷୀମାନେ ଆଧୁନିକ ଧରଣର କୃଷି ଯନ୍ତ୍ରପାତି, ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାରର ବ୍ୟବହାର ଶିଖିପାରିଛନ୍ତି ଏବଂ ମରହଟି ପୁରୁଣାକାଳର ଚାଷ ପଦ୍ଧତିକୁ ସବୁଦିନ ପାଇଁ ପରିତ୍ୟାଗ କରି ପାରିଛନ୍ତି ।

ଶ୍ରୀ ଦାମୋଦର ପାଢ଼ୀ ଏମ୍. ଏ.
ମଣ୍ଡଳ ସଙ୍ଗଠକ, ଛତ୍ରପୁର

## ଘଡ଼ି ବେହେରା ଓ ୟଙ୍ଗ୍ ଟେଲର ଦୋକାନ

ବଲାଙ୍ଗିର ଜିଲ୍ଲା ସୋନପୁର ଉପଖଣ୍ଡର ସୋନପୁର ବ୍ଲକ୍ ଅନ୍ତର୍ଗତ ଖମସରିପାଲି ଗ୍ରାମରେ ଘଡ଼ି ବେହେରାଙ୍କ ଜନ୍ମ । ତପସିଲଭୁକ୍ତ ସଂପ୍ରଦାୟର ୨୬ ବର୍ଷର ଯୁବକ, ତାହାର ପରିବାର କହିଲେ ବାପ, ମା ଓ ୪ ଭାଇ । ଘରଟିଏ ବ୍ୟତୀତ ଭୂସଂପତ୍ତି ଆଉ କିଛି ନାହିଁ କହିଲେ ଚଳେ । ବାପା ବୃଦ୍ଧ ତଥା ଅନ୍ୟାନ୍ୟ ଭାଇମାନେ ଛୋଟ ଛୋଟ । ଏଣୁ ଏତେ ବଡ଼ ୬ ଜଣ ବିଶିଷ୍ଟ ପରିବାରକୁ ଦୁଇବେଳା ପେଟପୂରା ଖାଇବା ଯୋଗାଇବା ଏକ କଷ୍ଟକର ବ୍ୟାପାର ବୋଲି ସେ ଜାଣି ପାରିଥିଲେ । ଏଥିପାଇଁ ସେ ଖୁବ୍ ଚିନ୍ତିତ, କିପରି ତାହାର ଏହି ଦାରିଦ୍ର୍ୟ ଦୂର ହେବ ସେ ତଥା ପରିବାର ଦର୍ଶ ଶାନ୍ତିରେ ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ବର୍ତ୍ତି ପାରିବେ, ଏଥିପାଇଁ ସେ ଖୁବ୍ ଚିନ୍ତିତ ଥାଏ ।

କିନ୍ତୁ ତାହାର ଏହି ଚିନ୍ତା ବା ଦୁଃଖ ଆଉ ବେଶୀଦିନ ରହିଲା ନାହିଁ । ତାହାର ସୁଖର ସ୍ୱପ୍ନ ସତ୍ୟ ହେବାକୁ ଆସିଲା । ତାହା ଜୀବନର ପରିବର୍ତ୍ତନ ଘଟିଲା ସରକାରଙ୍କ ଇ. ଆର. ଆର. ପି. ଯୋଜନାରେ । ସରକାରଙ୍କ ବିଭିନ୍ନ ଉନ୍ନତିମୂଳକ ଯୋଜନା ଆସ୍ତେ ଆସ୍ତେ ଜାଣିବାକୁ ପାଇଲା । ପୂର୍ବରୁ ସେ ଗ୍ରାମରେ ଥିବା ଏକ ଟେଲର ଦୋକାନରେ ଟେଲରିଙ୍ଗ କା... ଶିଖି କାର୍ଯ୍ୟ କରୁଥିଲା । ଯାହା ସେଥିରୁ ମଜୁରୀ ବାବଦ୍ ପ... ତାହା ତାର ପରିବାର ପାଇଁ ସମୁଦ୍ରକୁ ଶଂଖେ ପାଣି ... ସେ ଚିନ୍ତା କଲା ଯଦି କିଛି ପଇସାପତ୍ର ଋଣ ଆକାରରେ କେଉଁଠୁ ମିଳନ୍ତା, ତେବେ ସେ ନିଜେ ଏକ ସିଲେଇ ଦୋକାନ କରନ୍ତା । ତାର ସେହି ଚିନ୍ତା ଧାରାକୁ କାର୍ଯ୍ୟକାରୀ କରିବା ଦିନ ଆସିଲା । ସେ ସରକାରଙ୍କ ବିଭିନ୍ନ ଯୋଜନା ଅଦ୍ଭୁ ଅ... ଜାଣି ଦିନେ ସୋନପୁର ବ୍ଲକର ବି. ଡି. ଓ. ଙ୍କୁ ଦେଖାକରି ତାହାର ସମସ୍ତ ଦୁଃଖ ଓ ନିଜ ମନର ଅଭିପ୍ରାୟ ଜଣାଇଲା । ଫଳରେ ବି. ଡି. ଓ. ତାହାର ଆଗ୍ରହ ଦେଖି ଇ. ଆର. ଆର. ... ଯୋଜନାରେ ତାର ଦରଖାସ୍ତ ସୁପାରିସ୍ କଲେ । ଫଳରେ ସେ ସୋନପୁର ଷ୍ଟେଟବ୍ୟାଙ୍କ ଶାଖାରୁ ତା ୩-୯-୧୯... ମସିହାରେ ୩,୦୦୦ ଟଙ୍କା ଋଣ ପାଇଲା । ଏହି ଟଙ୍କାରେ ଏକ "ସିଲେଇ ମେସିନ୍" ତଥା ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷପତ୍ର କିଣି ଆଣିଲା । ଏହାପରେ ନିଜେ ବୁଦ୍ଧି ଖଟାଇ ନିଜ ଗ୍ରାମରେ ଟେଲରିଙ୍ଗ ଦୋକାନ ନ ଦେଇ ସୋନପୁର ସହରର ମହିପଡ଼ାଠାରେ "ୟଂଗ ଟେଲର" ନାମରେ ଏକ ଟେଲରିଙ୍ଗ ଦୋକାନ ଦେଇ କାର୍ଯ୍ୟ ଆରମ୍ଭ କଲା । ନିଜର ସଚ୍ଚୋଟ୍ ପଣିଆ ତଥା ନିଖୁଣ କାର୍ଯ୍ୟ ଓ ଭଦ୍ର ବ୍ୟବହାର ଯୋଗୁ ତାହାର ଦୋକାନ ବେଶ୍ ସୁନ୍ଦର ଚାଲିଲା । ପଇସା ... ଖୁବ୍ ଭଲ ରୋଜଗାର କଲା । ଫଳରେ ନିଜର ଦୋକାନଟିକୁ ଟିକେ ସୁନ୍ଦର ଭାବରେ ସଜାଇ ପାରିଲା ଓ କିଛି ପଇସା ଘରକୁ ଦେଇ ବାପ, ମା ଓ ଭାଇମାନଙ୍କ ଭରଣ ପୋଷଣ ପାଇଁ ବ୍ୟବସ୍ଥା କରି ପାରିଲା । ସେ ଆଣିଥିବା ଋଣର ୧,୦୦୦ଟଙ୍କା ଛାଡ଼ ପାଇଲା ଓ ଆସ୍ତେ ଆସ୍ତେ ସେ ଅବଶିଷ୍ଟ ଟଙ୍କା ଶୁଝିବା ଆରମ୍ଭ କରି ଦେଲାଣି । ଆଉ ମାତ୍ର ୯୪୦ ଟଙ୍କା ତାର ଋଣ ପରିଶୋଧ କରିବାକୁ ଅଛି । ମନରେ ତାର ବର୍ତ୍ତମାନ ବଡ଼ ଆଶା ଯେ, ସେ ସବୁ ଋଣ ପରିଶୋଧ କରି ସାରିବାପରେ ପୁଣି ବେଶି ଟଙ୍କା ଋଣ ଆଣି ଆଉ ଟିକେ ବଡ଼ ଟେଲରିଙ୍ଗ ଦୋକାନ କରିବ । ଏହା ଭିତରେ ସେ ପୁଣି ଗୋଟିଏ ସିଲାଇ ମେସିନ୍ କିଣିଛି ଓ ତାହାର ସାନଭାଇକୁ ଆଣି ଏହି ଦୋକାନରେ କାମ ଶିଖାଉଛି । ତାହା ଦୋକାନରେ ବର୍ତ୍ତମାନ ଖୁବ୍ ଭିଡ଼ । ବର୍ତ୍ତମାନ ସେ ଆଉ ପୂର୍ବପରି ଦୁଃଖ ବା ଚିନ୍ତାରେ ନ ରହି କାମରେ ମଜ୍ଜି ରହୁଛି । ଏବେ ତାହାର ପରିବାର ଅବସ୍ଥା ଆସ୍ତେ ଆସ୍ତେ ବଦଳି ଗଲାଣି । ପୂର୍ବର ଅଭାବ ଅନାଟନ ଦୂରେଇ ଯାଉଛି । ସରକାରଙ୍କ ଇ. ଆର. ଆର. ପି. ଯୋଜନା ତାହାର ନିଜ ତଥା ତାହା ପରିବାରର ଅବସ୍ଥା ପରିବର୍ତ୍ତନ କରିଥିବାରୁ ସେ ସରକାରଙ୍କ କାର୍ଯ୍ୟକ୍ରମକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସରକାରଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

ଖଗେଶ୍ୱର ଭାଇଦ୍
(ଅନ୍ ବିଭାଗୀୟ ସୂଚନା ଓ ଲୋକ
ସଂପର୍କ ଅଧିକାରୀ, ସୋନପୁର)

# କାମଧେନୁର ଆଶୀର୍ବାଦ

ସମ୍ବଲପୁରଜିଲ୍ଲା ଝାରସୁଗୁଡ଼ା ସବ୍‌ଡ଼ିଭିଜନ ଅନ୍ତର୍ଗତ ଝାରସୁଗୁଡ଼ା ବ୍ଲକ୍‌ରେ ବଡ଼ମାଲଗ୍ରାମ । ଏହି ଗାଁରେ ସରକାରୀ ଜମିରେ ଦୁଇଦଖଣ୍ଡା ମାଟିକାନ୍ଥ ଖପର ଛପର ଘରକରି ତପସିଲଭୁକ୍ତ ଗଣ୍ଡ ସମ୍ପ୍ରଦାୟର ଶ୍ରୀ ମୁରଲୀ ନେଟୀ ବାସକରନ୍ତି । ନିଜର ଜମିବାଡ଼ି କିଛିନାହିଁ । ଘରେ ଖାଇବାକୁ ସାତ ପ୍ରାଣୀ ହୁଅନ୍ତି । ନିଜେ, ସ୍ତ୍ରୀ, ୨ଟି ପୁଅ ଓ ୩ଟି ଝିଅ । ନିଜେ ଗାଈ ଚରାଇବା ପୂର୍ବରୁ ହଳିଆ ରହି ବର୍ଷିକିଆ ବର୍ତ୍ତନ ଓ ମାସିକ ମୂଲମିଶି ମାସିକ ପ୍ରାୟ ୫୪ କେ. ଜି. ଧାନମୂଲ ପାଉଥାନ୍ତି । ୫ଟି ଛୁଆଙ୍କ ଜଂଜାଳରେ ରହି ସ୍ତ୍ରୀ ମୂଲ ଲାଗିପାରନ୍ତିନାହିଁ । କୌଣସିମତେ ତାଂକର ରୋଜଗାର ମୂଲରେ ଭାତ ତୋରାଣି ୨ବେଳ ଲେଖାଁଏ ଖାଇ ଚଳିଯାନ୍ତି । ବିହ ଦୁଃଖଦିନ ମୂଲପାଡ଼ି ଅଭାବରେ ଉପାସରେ ରହିବାକୁହୁଏ ।

ଦିନେ ସ୍ଥାନୀୟ ସରପଂଚ ଶ୍ରୀ ନରସିଂହ ସାହୁ ଗ୍ରାମ୍ୟ ଦରିଦ୍ର ପରିବାରର ପୁନର୍ବାସ ଯୋଜନାରେ ଶ୍ରୀ ନେଟୀଂକୁ ଗାଈ ଆଣିବାକୁ ପ୍ରବର୍ତ୍ତାଇଲେ । ତଦନୁଯାୟୀ ୪-୨-୮୭ ତାରିଖଦିନ ଝାରସୁଗୁଡ଼ା ଏଲ୍ଲାହାବାଦ ବ୍ୟାଂକରୁ ୩,୨୦୦ଟଙ୍କା ଋଣନେଇ ମାଈ ବାଛୁରୀ ଲାଗି ଦୈନିକ ୪ଲିଟର କ୍ଷୀର ଦେଉଥିବା ଗୋଟିଏ ସଂକର ଜର୍ସିଗାଈ ଶ୍ରୀ ନେଟୀ କିଣିଲେ । ୨/୩ମାସ ପଡ଼ିଥରହି ପୁଣି ଗୋଟିଏ ମାଈ ବାଛୁରୀ ଜନ୍ମକରି ଗାଈଟି ୨ୟ ଥର ଦୈନିକ ୫ଲିଟର ଲେଖାଏଁ କ୍ଷୀରଦେଲା । ଏବର୍ଷ ମଇ ମାସର ପ୍ରଚଣ୍ଡ ଖରାରେ ମଧ୍ୟ ୫ଲିଟର କ୍ଷୀର ଏହି ଗାଈଟି ଦେଉଥିଲା । କ୍ଷୀରକୁ ସେ ବଡ଼ମାଲରେ ଥିବା ସମ୍ବଲପୁର ଦୁଗ୍ଧ ଉତ୍ପାଦକ ସଂଘର ଡ଼ିପୋରେ ୩ଟଂକା ଦରରେ ବିକ୍ରୀ କରନ୍ତି ଏବଂ ଗାଈଙ୍କ ପାଇଁ ଖାଦ୍ୟ ଖଣ୍ଡଦାନା ସେହି ଡ଼ିପୋରୁ କିଣିନିଅନ୍ତି ।

ଶ୍ରୀ ନେଟୀ ସେଇ ବ୍ୟାଂକରୁ ୪,୦୬୩ ଟଂକା ୫୦ପଇସା ଋଣନେଇ ଟିଟିଲିମା ଫାର୍ମରୁ ପୁଣି ଗୋଟିଏ ସଂକର ଜର୍ସିଗାଈ କିଣିଲେ । ସାଥିରେ ମାଈ ବାଛୁରୀ ଲାଗିଥିଲା ଓ ମାତ୍ର ୩ ଲିଟର ଲେଖାଁଏ କ୍ଷୀର ଦେଉଥିଲା । ଘରେ ଆସି ହେପାଜତ ପାଇଲାପରେ ଦୈନିକ ୬ ଲିଟର ପର୍ଯ୍ୟନ୍ତ କ୍ଷୀର ବଢ଼ାଇଲା । ଗତ ମଇମାସ ସୁଦ୍ଧା ୩ ମାସ ପଡ଼ିଥିଲା ଓ ୮ମାସ ଗର୍ଭଥିଲା । ଏହାର ପ୍ରଥମ ବାଛୁରୀଟି ମରିଯାଇଛି । ବର୍ତ୍ତମାନ କ୍ଷୀର ବାବଦକୁ ମାତ୍ର ୧୫ଟଂକା ମିଳୁଛି ଓ ଦାନାଲାଗି ଦୈନିକ ୬ଟଂକା ଖର୍ଚ୍ଚ ହେଉଛି । ଏଣୁ ବର୍ତ୍ତମାନ ଦୈନିକ୯ଟଙ୍କା ହେଉଥିଲେ ବି ଜୁଲାଇମାସରୁ ଦୈନିକ ୨୨ଟଂକା ଲାଭ ମିଳୁଛି ।

ଦୁଇଟି ଗାଈପାଇଁ ସମୁଦାୟ ୮,୨୦୦ଟଂକା ଋଣରୁ ୪,୧୦୦ ଟଂକା ରିହାତିଯାଇ ସୁଧସହ ମୋଟ ୪,୧୮୪ଟଂକା ୩୫ପଇସା ଶୁଝିବାକଥା । ସବୁକିସ୍ତି ଦେଇ ଆଉ ମାତ୍ର ସମୁଦାୟ ସୁଧ ୨,୮୬୧ ଟଂକା ୧୦ ପଇସା ବାକୀଅଛି । କୌଣସି କିସ୍ତି ସେ ଏପର୍ଯ୍ୟନ୍ତ ଖିଲାପକରି ନାହାନ୍ତି । ୧୫ ବର୍ଷର ବଡ଼ପୁଅଟି ବର୍ତ୍ତମାନ ହଳିଆରହି ମାସିକ ୪୦ କେ: ଜି: ଧାନ ଆଣୁଛି । ନିଜେ ଆଉ ଗୋତି ବା ହଳିଆ ରହିନାହାନ୍ତି । ଏହି କ୍ଷୀରବିକ୍ରୀ ପଇସାରୁ ଘର ଲୁଗାପଟା ସମସ୍ତଂକପାଇଁ କରିଛନ୍ତି । ନୂଆକରି ନଡ଼ା ଛପର ମାଟିକାନ୍ଥର ଗୋଟିଏ ବଖରା ଗୁହାଳ ଘର ମଧ୍ୟ ତୋଳିଛନ୍ତି ।

ଶ୍ରୀ ନେଟୀ କହନ୍ତି, ବାସ୍ତବରେ ଇ: ଆର: ଆର: ପି: ଯୋଜନା ତାଂକର ଭାଗ୍ୟର ଗତି ବଦଳାଇ ଦେଇଛି । ତାଂକୁ ଆଉ ଅଧିକ କଷ୍ଟକରି ରୋଜଗାର କରିବାକୁ ପଡୁନାହିଁ । ପ୍ରକୃତରେ ତାଂକପ୍ରତି ଏହା କାମଧେନୁର ଆଶୀର୍ବାଦ ବୋଲି ସେ ସମସ୍ତଂକୁ କହନ୍ତି ।

# ସଫଳତା ପଥରେ ଆଦିବାସୀ ଯୁବକ ଯାଦବ ପାତ୍ର

ବଲାଙ୍ଗିର ଜିଲ୍ଲା ତୁସରା ବ୍ଲକ୍ ଅନ୍ତର୍ଗତ ସମଡାଗ୍ରାମ ପଂଚାୟତ ଅଧୀନସ୍ଥ ବଡ଼ଂଗମୁଣ୍ଡା ଗ୍ରାମରେ ଶ୍ରୀ ଯାଦବ ପାତ୍ର ବାସକରନ୍ତି । ଆଦିବାସୀ ଗଣ୍ଡ ସଂପ୍ରଦାୟର ୩୫ବର୍ଷ ଯୁବକ ଶ୍ରୀ ଯାଦବ ପାତ୍ରର ବାପା,ମା କେହି ନାହାନ୍ତି । ଜମିବାଡ଼ି ନିଜରବୋଲି କିଛିନାହିଁ । କେବଳ କାଗୀରଜମି ୫୦ ଡ଼େସିମିଲ ତାଂକୁ ମିଳିଥିବା ପ୍ରକାଶ କରନ୍ତି, ଘରେ ସେ ନିଜେ ଓ ସହଧର୍ମିଣୀ ବିମଳିଂକସହ ୫ବର୍ଷର ଗୋଟିଏପୁଅ, ୭ବର୍ଷର ଓ ୩ବର୍ଷର ଦୁଇଟି ଝିଅ ଅଛନ୍ତି । ବଡ଼ ଝିଅ ଓ ପୁଅ ସ୍କୁଲକୁ ଯାଉଥିବା ପ୍ରକାଶ କରନ୍ତି । ନିଜ ପରିବାର ଭରଣପୋଷଣପାଇଁ ପରଘରେ ମୂଲଲାଗି ସେ ନିଜର ଗୁଜରାଣ ମେଣ୍ଟାଉଥିଲେ । ବଲାଙ୍ଗିର ଜିଲ୍ଲାପାଳ ଶ୍ରୀ ରମେଶ ବେହେରାଂକ ଉଦ୍ୟମରେ ଏବଂ ବ୍ୟାଙ୍କ ତଥା ବ୍ଲକ୍ କର୍ମଚାରୀଂକ ସାହାଯ୍ୟରେ ୧୯୮୭ ମାର୍ଚ୍ଚ ମାସରେ ଏକ ଋଣଦାନ ମେଳାରେ ନିଜକୁ ଆତ୍ମ-ନିର୍ଭରଶୀଳ କରିବାପାଇଁ ସେ ଆଗେଇ ଆସିଥିଲେ । ସେଥିପାଇଁ ଏକ କ୍ଷୁଦ୍ର ବ୍ୟବସାୟ ସକାଶେ ତାଂକୁ ୩,୦୦୦ ଟଂକାର ଋଣ ମଂଜୁର କରାଗଲା । ଉକ୍ତ ଋଣରୁ ୧,୦୦୦ ଟଂକାର ତାଂକୁ ଗୋଟିଏ ହାରକ୍ୟୁଲେସ ସାଇକେଲ ଏବଂ ନଗଦ ୨,୦୦୦ଟଂକା ତାଂକୁ ମିଳିଥିବା ପ୍ରକାଶ କରନ୍ତି । ଏହି ଋଣ ଶତକଡ଼ା ୫୦ ରିହାତିର ସୁବିଧା ଥିବାରୁ ତାଂକୁ କେବଳ ୧,୫୦୦ ଟଂକା ଶୁଝିବାକୁ ପଡ଼ିବ । ତାହାମଧ୍ୟ ୩ବର୍ଷ ସମୟ ମଧ୍ୟରେ ମାସକୁ କିସ୍ତି ହିସାବରେ । ତାଂକୁ ନଗଦ ମିଳିଥିବା ଟଂକାରେ ସେ ନିଜ ଗୃହରେ ଏକ ଛୋଟିଆ ଦୋକାନକରି ଗ୍ରାମରେ ଲୋକଂକ ଆବଶ୍ୟକ ମୁତାବକ ଗୁଡ଼, ଡ଼ାଲି, ଆଳୁ, ମସଲା, ମରିଚ, ହଳଦୀ, ବିଡ଼ି, ଡ଼ିଆସିଲି, ଗୁଡ଼ାଖୁ ଇତ୍ୟାଦି ବିକ୍ରିକରି ଦୈନିକ ହାରାହାରି ୪୦ ଟଂକା ରୋଜଗାର କରିଥାନ୍ତି ପ୍ରଥମ ମାସରେ ଋଣର ପ୍ରଥମକିସ୍ତି ୪୦ ଟଂକା ବ୍ୟାଂକରେ ଜମାକରିଥିବା କଥା ସେ କହନ୍ତି । କିସ୍ତି ଖିଲାପ ନ କରି ପ୍ରତିମାସରେ ସେ ଋଣ ଶୁଝିବାକୁ ଏବଂ ଦ୍ୱିତୀୟବାର ଦ୍ୱିତୀୟ ଋଣ ଗ୍ରହଣକରି ନିଜର ବ୍ୟବସାୟ ବଢ଼ାଇବାକୁ ସେ ଦୃଢ଼ ସଂକଳ୍ପ । ପ୍ରକୃତପକ୍ଷେ ଲୋକଂକୁ ସହାୟତା ଯୋଗାଇ ଦେବା ଆତ୍ମନିର୍ଭରଶୀଳକରି ଆର୍ଥିକ ମାନଦଣ୍ଡ ବଢ଼ାଇଥିବା ଏହି ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସେ ପ୍ରଶଂସାକରନ୍ତି । ଋଣପାଇଁ ତାଂକୁ ହଇରାଣ ହରକତ ହେବାକୁ ପଡ଼ିନଥିଲା ଏବଂ ଲାଂଚ ଦେବାକୁ ପଡ଼ିନଥିଲା ବିଷୟ ସେ ପ୍ରକାଶ କରନ୍ତି ।

# ଜିଲ୍ଲା ପରିକ୍ରମା (ଢେଙ୍କାନାଳ)

ଢେଙ୍କାନାଳ ଜିଲ୍ଲାଟି ଗୋଟିଏ ଅନୁନ୍ନତ ଜିଲ୍ଲା । ଲୋକମାନେ ମୁଖ୍ୟତ କୃଷି ଉପରେ ନିର୍ଭର କରି ଚଳନ୍ତି । ଚଳିତ ମାସରେ ୨ । ୩ ଅସରା ବର୍ଷା ହେବା ଦ୍ୱାରା ଲୋକମାନଙ୍କ ମନରେ ଆନନ୍ଦ ଭରି ଦେଇଅଛି ଓ ଲୋକମାନେ ଚାଷ କାର୍ଯ୍ୟରେ ଲାଗି ପଡ଼ିଛନ୍ତି । ଅକ୍ଷୟ ତୃତୀୟା ଦିନ କୃଷକ ଚଳିତ ବର୍ଷର ଧାନ ବୁଣା ଅନୁକୂଳ ମହାନ ଆନନ୍ଦ ଓ ଉଦ୍ଦିପନା ମାଧ୍ୟମରେ କରି ଦେଇଅଛି । କେତେକ ଅଞ୍ଚଳରେ ଲୋକମାନେ ବୁଣା କାମ ଆରମ୍ଭ କରି ଦେଲେଣି । କେତେକ କୃଷକଙ୍କୁ ମାଗଣାରେ ସରକାରଙ୍କଦ୍ୱାରା ପୋଟଳ ଗୁରା ଦିଆଯିବା ଫଳରେ ଲୋକମାନେ ଦାରୁଣ ଗ୍ରୀଷ୍ମ ଋତୁ ସହିତ ସଂଗ୍ରାମ କରି ଅର୍ଥ ଉପାର୍ଜନ କରିପାରୁଛନ୍ତି ।

ଗତ ୧୧ । ୫ । ୮୭ ରିଖରେ ଜିଲ୍ଲାପାଳଙ୍କର ଅଧ୍ୟକ୍ଷତାରେ ଜିଲ୍ଲା ଉନ୍ନୟନ ବୋର୍ଡ଼ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରୁ ଜଣାଗଲା ଯେ ୧୯୮୬-୮୭ ଆର୍ଥିକ ବର୍ଷରେ ବିଭିନ୍ନ ବ୍ୟବସାୟ ଓ ବୃତ୍ତି ନିମନ୍ତେ ୬,୯୯୩ ଜଣ ଲୋକଙ୍କୁ ଆଇ. ଆର. ଡି. ପି. ଯୋଜନା ମାଧ୍ୟମରେ ୨ୟ କିସ୍ତି ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଅଛି । ଲୋକମାନଙ୍କୁ ୩୩.୯୫ ଲକ୍ଷ ଟଙ୍କା ରିହାତିର ସୁବିଧା ମଧ୍ୟ ଦିଆଯାଇଅଛି । ଏହି ଯୋଜନା ମାଧ୍ୟମରେ ୯୯୫ଟି ଆଦିବାସୀ ୧,୫୧୪ ଜଣ ହରିଜନ ଓ ଅନ୍ୟାନ୍ୟ ଜାତିର ୩,୫୮୪ ଜଣ ଉପକୃତ ହୋଇଛନ୍ତି ।

ଆଇ. ଆର. ଡି. ପ୍ରଥମ ପର୍ଯ୍ୟାୟ ଋଣରେ ୬,୯୨୫ ଜଣଙ୍କୁ ୨୦୩'୨୦ ଲକ୍ଷ ଟଙ୍କା ଋଣ ଆକାରରେ ଯୋଗାଇ ଦିଆଯାଇଅଛି ଓ ଲୋକମାନେ ୭୨'୩୦ ଲକ୍ଷ ଟଙ୍କା ରିହାତି ପାଉଛନ୍ତି । ଏହି ଯୋଜନାରେ ୧,୪୭୦ଗୋଟି ହରିଜନ, ୯୮୧ଟି ଆଦିବାସୀ ଓ ଅନ୍ୟାନ୍ୟ ଜାତିର ୪,୪୭୪ଟି ପରିବାର ଉପକୃତ ହୋଇଛନ୍ତି । ଏଥିମଧ୍ୟରେ ୨୬୪ ଜଣ ମହିଳା ଅନ୍ତର୍ଭୁକ୍ତ ଅଛନ୍ତି । ଚଳିତ ଆର୍ଥିକ ବର୍ଷରେ ଏହି ଯୋଜନାରେ ୬,୫୦୦ଟି ପରିବାରଙ୍କୁ ଆର୍ଥିକ ସହାୟତା ଯୋଗାଇଦେବା ପାଇଁ ବ୍ଲକୱାରି ତାଲିକା ପ୍ରସ୍ତୁତ କରାଗଲାଣି । ସେହିପରି ସହାୟତା ପାଇ ଉପକୃତ ହୋଇଥିବା ୯,୦୦୦ ପରିବାରଙ୍କୁ ପୁନର୍ବାର ସାହାଯ୍ୟ ଦେବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଅଛି । ଗତ ଆର୍ଥିକ ବର୍ଷରେ ପ୍ରଥମ ପର୍ଯ୍ୟାୟ ଋଣ ପାଇ ଉପକୃତ ହୋଇଥିବା ୩,୯୨୭ ଗୋଟି ପରିବାରଙ୍କୁ ୧୦୨.୮୨ ଲକ୍ଷ ଟଙ୍କା ପୁନର୍ବାର ଋଣ ଦିଆଯାଇଅଛି ଓ ରିହାତି ଆକାରରେ ୩୩.୭୮ ଲକ୍ଷ ଦିଆଯାଇଅଛି । ଏହି ଯୋଜନା ଦ୍ୱାରା ୧,୭୫୨ ହରିଜନ, ୪୪୦ ଆଦିବାସୀ ଓ ଅନ୍ୟାନ୍ୟ ଜାତିର ୨,୭୩୫ ଗୋଟି ପରିବାର ଉପକୃତ ହୋଇଛନ୍ତି । ଏଥିମଧ୍ୟରୁ ୨୨୯ ଜଣ ମହିଳା ଅଛନ୍ତି । ୧୫ ଜଣ ଲୋକଙ୍କୁ ଟ୬୦,୦୦୦ ବ୍ୟୟ ୧୫ ଗୋଟି ଦୁଧିଆଳି ଗାଈ ଓ ୨ ଜଣ ଲୋକଙ୍କୁ ଟ୧୦,୦୦୦ ବ୍ୟୟରେ ଦୁଧିଆଳି ମହିଷ ଯୋଗାଇ ଦିଆଯାଇଅଛି । ପରିବାରଗୁଡ଼ିକ ଦୁଧ ବିକ୍ରୟ କରି ବିଶେଷ ଉପକୃତ ହେଉଛନ୍ତି ।

ଜାତୀୟ ଗ୍ରାମ୍ୟ ନିଯୁକ୍ତି ଯୋଜନା ମାଧ୍ୟମରେ ରାସ୍ତା କଡ଼ରେ ୨୧ କି. ମି. ଓ ପତିତ ଜମି ତଥା ଜଙ୍ଗଲ ପୁନଃ ଉଦ୍ଧାରରେ ୬,୮୬୯ ହେକ୍ଟର ଜମିରେ ୧,୬୨୭ ଲକ୍ଷ ବିଭିନ୍ନ ବୃକ୍ଷରୋପଣ କରାଯାଇଅଛି । ସେହିପରି ଆର. ଓଲ. ଇ... ଯୋଜନାରେ ୪,୫୭୩ ଲକ୍ଷ ଟଙ୍କା ବ୍ୟୟରେ ୧,୯୩୫... ବିଭିନ୍ନ ପ୍ରକାର ବୃକ୍ଷ ରୋପଣ କରାଯାଇ ୫,୭୫୦ ହେ... ଜମିରେ ଜଙ୍ଗଲ ସୃଷ୍ଟି କରାଯାଇଅଛି । ଆର. ଏଲ. ଇ. ଜି. ପି. ଯୋଜନାରେ ସରକାରଙ୍କ... ମିଳିଥିବା ୩୫.୩୮ ଲକ୍ଷ ଟଙ୍କା ବ୍ୟୟ କରାଯାଇ ... ଗୋଟି ଗୃହ ନିର୍ମାଣ କରାଯାଇ ୧୫୩ ଗୋଟି ହରିଜ... ୨୧୬ ଗୋଟି ଆଦିବାସୀ ପରିବାରଙ୍କୁ ଥଇଥାନ କରାଯାଇଅ...

ଜଳସେଚନ ସୁବିଧା ଯୋଗାଇଦେବା ନିମନ୍ତେ ୨୬... ଲକ୍ଷ ଟଙ୍କା ବ୍ୟୟରେ ୯ ଗୋଟି ଜଳସେଚନ ପ୍ରକଳ୍ପର ... ଆଗେଇ ଚାଲିଛି । ଏଥିମଧ୍ୟରୁ ୨ ଗୋଟି କାର୍ଯ୍ୟ ଶେଷ ହେ... ଓ ୭ ଗୋଟି କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଛି... ଏହି ଯୋଜନାରେ ୩୨.୮୮ ଲକ୍ଷ ଟଙ୍କା ବ୍ୟୟରେ ୪,୩... କି. ମି. ଗ୍ରାମିଣ ରାସ୍ତା କରାଯାଇ ଅଛି ।

ବର୍ତ୍ତମାନ ସୁଧା ଏହି ଜିଲ୍ଲାରେ ୨୧୧ ଗୋଟି ବା... ଗ୍ୟାସ୍‌ କରାଗଲାଣି ।

୫୭୬ ଜଣ ବେକାର ଶିକ୍ଷିତ ଯୁବକ ଯୁବତୀମ... ଆତ୍ମନିଯୁକ୍ତି ଯୋଜନା ମାଧ୍ୟମରେ ବିଭିନ୍ନ ଧନ୍ଦା ପାଇଁ ... ଯୋଗାଇ ଦେବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇ ବର୍ତ୍ତ... ସୁଧା ୧୪୫ଜଣଙ୍କୁ ଟ୧,୦୭,୭୮,୯୪୯ ଋଣ ମଞ୍ଜୁର କରା... ଅଛି ।

ଆଦିବାସୀ ଓ ହରିଜନମାନଙ୍କ ଉନ୍ନତି ନିମନ୍ତେ ବି... ପ୍ରକାର କାର୍ଯ୍ୟକ୍ରମ ହାତକୁ ନିଆଯାଇଅଛି । ଏହିମାନଙ୍କ ... ସାଂସ୍କୃତିକ ଓ ଅନ୍ୟାନ୍ୟ ଉନ୍ନତିମୂଳକ କାର୍ଯ୍ୟକ୍ରମ ସଂପା... କରୁଥିବା ବେସରକାରୀ ଅନୁଷ୍ଠାନମାନଙ୍କୁ ୨୯ ହଜାର ... ସରକାରଙ୍କଠାରୁ ଦିଆଯାଇଅଛି । ଶିକ୍ଷାର ଉନ୍ନତି ନି... ୨୪,୯୭୮ ଜଣ ହରିଜନ ଓ ୧୭,୪୧୨ ଜଣ ଆଦିବାସୀ ... ଛାତ୍ରୀମାନଙ୍କୁ ୫୯୪,୬୩୨ ଖଣ୍ଡ ଜାତୀୟ ପାଠ୍ୟ ପୁ... ଯୋଗାଇ ଦିଆଯାଇଅଛି । ଚଳିତବର୍ଷ ୫୬,୯୦୦ ବହି ଦେ... ବ୍ୟବସ୍ଥା କରାଯାଉଅଛି । ଗତ ବର୍ଷ ହରିଜନ ଓ ଆଦିବା... ବିଦ୍ୟାର୍ଥୀମାନଙ୍କୁ ଯଥାକ୍ରମେ ଟ ୮,୨୦,୬୮୩'... ଓ ୩,୪୪,୧୦୮'୦୫ ଟଙ୍କା ବୃତ୍ତି ଦିଆଯାଇଥି... ଚଳିତ ବର୍ଷ ଟ ୪,୩୨,୦୦୦ ଓ ୨,୩୪,୦୦୦ ... ବୃତ୍ତି ନିମନ୍ତେ ସରକାରଙ୍କ ଅନୁଦାନ ମିଳିଲାଣି । ସବର୍ଣ୍ଣମ... ଗଣ୍ଡୋଗୋଳ କରି ଅତ୍ୟାଚାର ଓ ସଂପତ୍ତି ନଷ୍ଟ କରିଥି... ଆଦିବାସୀ ହରିଜନ ପରିବାରଗୁଡ଼ିକୁ ୧ଲକ୍ଷ ୩୭ ହଜ... ଟଙ୍କା ଆର୍ଥିକ ସାହାଯ୍ୟ ଦିଆଯାଇଅଛି । ୨୦ ଗୋଟି ହରି... ଓ ୧୬ ଗୋଟି ଆଦିବାସୀ ପରିବାରଙ୍କୁ ଟ ୯,୮୮୨'୨୦ ଆ... ଗତ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଅଛି । ଅସ... ୧୯ ଗୋଟି ବିବାହ ଦଂପତିଙ୍କୁ ଟ ୫୭,୦୦୦ ପ୍ରୋତ୍ସା... ସାହାଯ୍ୟ ଦିଆଯାଇଅଛି ।

ତା ୧ । ୫ । ୮୭ ରିଖରେ ଜିଲ୍ଲାରେ ଆବଶ୍ୟକ ... ଅନ୍ଧ ମୂକ୍ ବଧିର ସ୍କୁଲର ଶିଳାନ୍ୟାସ କରାଯାଇଅଛି ଓ ... ସ୍କୁଲ ଗୃହ ନିର୍ମାଣ ନିମନ୍ତେ ଏକ'୯୦ ଡେସିମିଲ ଜମି ... ଟ୮୦,୦୦୦ସରକାରଙ୍କ ଠାରୁ ଆର୍ଥିକ ସାହାଯ୍ୟ ମିଳିଅଛି ।

• ପୂର୍ତ୍ତ ଓ ଗୃହ ନିର୍ମାଣ ରାଷ୍ଟ୍ରମନ୍ତ୍ରୀ ମହମ୍ମଦ ମୁଜାଫର ହୁସେନ ଖା ଢେଙ୍କାନାଳ ଜିଲ୍ଲାରେ ତା୧୨।୫।୧୯୮୭ ଓ ତା୧୩।୫।୧୯୮୭ରିଖରେ ୩ଗୋଟି ସେତୁ ଓ ଗୋଟିଏ ବିଶ୍ରାମାଗାରର ଶିଳାନ୍ୟାସ କରି ୨ ଗୋଟି ସେତୁ ଓ ଗୋଟିଏ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଉଦ୍‌ଘାଟନ କରିଛନ୍ତି । ଏହି ସେତୁଗୁଡ଼ିକ ହେବା ଫଳରେ ବ୍ଳକ ମହକୁମାରୁ ବର୍ଷାଦିନେ ବିଚ୍ଛିନ୍ନ ହୋଇ ରହୁଥିବା ଗ୍ରାମପଞ୍ଚାୟତଗୁଡ଼ିକୁ ସବୁଦିନିଆ ଗମନାଗମନର ସୁବିଧା ମିଳିପାରିବ ଓ ଏହା ଲୋକମାନଙ୍କ ମନରେ ଆନନ୍ଦ ଭରି ଦେଇଅଛି । ଶିଳାନ୍ୟାସ କରିଥିବା କଣ୍ଟୋର ସେତୁ ହେବା ଦ୍ୱାରା ଢେଙ୍କାନାଳରୁ କେନ୍ଦୁଝର ଜିଲ୍ଲାକୁ ଗମନାଗମନର ସୁବିଧା ମିଳିପାରିବ ।

ଢେଙ୍କାନାଳରେ ତା୨୫।୫।୧୯୮୭ରିଖ ଠାରୁ ତା୨୯।୫। ୧୯୮୭ ରିଖ ପର୍ଯ୍ୟନ୍ତ ଜିଲ୍ଲା ସ୍ତରୀୟ ପ୍ରଦର୍ଶନୀ ଓ ସାଂସ୍କୃତିକ ସମାରୋହ ଅନୁଷ୍ଠିତ ହେଉଅଛି । ଏହି ପ୍ରଦର୍ଶନୀ ଦ୍ୱାରା ଲୋକମାନଙ୍କୁ ବିଭିନ୍ନ ପ୍ରକାର ଉନ୍ନୟନ ଓ ଗ୍ରାମ୍ୟଶିଳ୍ପ କରିବା ପାଇଁ ଉତ୍ସାହିତ କରାଯାଇଅଛି ଓ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ସ୍ଥାନୀୟ କଳାକାରମାନଙ୍କୁ ଉତ୍ସାହିତ କରି କଳା ପ୍ରତି ଆଗ୍ରହ ସୃଷ୍ଟି କରିବା ନିମନ୍ତେ ଲୋକ ନୃତ୍ୟର ବ୍ୟବସ୍ଥା ହେଉଅଛି ।

–ଅର୍ଜୁନ ମଲ୍ଲିକ୍
(ଢେଙ୍କାନାଳ)






## ସ୍ୱାଧୀନତାର ୪୦ ତମ ବାର୍ଷିକୀ

ବିଧାନସଭା ପରିସର ମଧ୍ୟରେ ଏକ ମନୋଜ୍ଞ ତଥା ଗାମ୍ଭୀର୍ଯ୍ୟପୂର୍ଣ୍ଣ ସମାବେଶରେ ସ୍ୱାଧୀନତାର ୪୦ ତମ ବାର୍ଷିକୀ ପାଳନ ଉପଲକ୍ଷେ ସ୍ୱାଧୀନତା ସଂଗ୍ରାମର ଆଠ ଗୋଟି ଉତ୍ତରାଧିକ୍ର ସଂଗୃହୀତ ମୃତ୍ତିକା ପ୍ରତି ସମ୍ମାନ ପ୍ରଦର୍ଶନ କରାଯାଇଥିଲା ।

ଏହି ଉତ୍ସବରେ ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ, ବାଚସ୍ପତି ଶ୍ରୀ ପ୍ରସନ୍ନକୁମାର ଦାସ, ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ବହୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ, ପାର୍ଲିଆମେଣ୍ଟ ଓ ବିଧାନସଭା ସଦସ୍ୟବୃନ୍ଦ, ଯୋଗ ଦେଇଥିଲେ ।

ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ସ୍ୱାଧୀନତା ସଂଗ୍ରାମରେ ଆତ୍ମବଳୀ ଦେଇଥିବା ଶହୀଦମାନଙ୍କପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି କହିଥିଲେ ଯେ ୧୯୪୨ ଅଗଷ୍ଟ ୯ ତାରିଖରେ ବିଦେଶୀ ସରକାରକୁ ହଟାଇବାପାଇଁ ଭାରତବାସୀ ଯେଉଁ ସଂକଳ୍ପ ନେଇଥିଲେ ତାହାର ପରିଣାମ ସ୍ୱରୂପ ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା । ୧୯୨୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଭାରତର ଅଗଣିତ ନରନାରୀ ବ୍ରିଟିଶ୍ ସରକାର ବିରୁଦ୍ଧରେ ଐକ୍ୟବଦ୍ଧ ସଂଗ୍ରାମ ଚଳାଇଥିଲେ । ଏହି ସଂଗ୍ରାମରେ ହଜାର ହଜାର ଲୋକ ପ୍ରାଣବଳି ଦେଇଥିଲେ, ଲକ୍ଷ ଲକ୍ଷ ଲୋକ କାରାବରଣ କରିଥିଲେ ଓ ସଂଖ୍ୟାତୀତ ଲୋକ ନାନାଭାବରେ ନିର୍ଯ୍ୟାତିତ ହୋଇଥିଲେ । ସେମାନଙ୍କ ତ୍ୟାଗ ଓ ଆତ୍ମୋତ୍ସର୍ଗର ପଟାନ୍ତର ନାହିଁ । ସଂଗୃହୀତ ମୃତ୍ତିକା ଏହି ତ୍ୟାଗ ଓ ବଳିଦାନର ପ୍ରତୀକ ବୋଲି ବର୍ଣ୍ଣନା କରି ଭାରତର ସ୍ୱାଧୀନତା ଓ ସଂହତିକୁ ମଜବୁତ୍ କରିବାକୁ ଓ ସାରା ଦେଶବାସୀ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏକମନ ଓ ଏକ ପ୍ରାଣ ହୋଇ ବିଚ୍ଛିନ୍ନତାବାଦୀ ଶକ୍ତିକୁ ପରାହତ କରିବାପାଇଁ ସେ ଆହ୍ୱାନ ଦେଇଥିଲେ । ଗାନ୍ଧୀ, ନେହେରୁଙ୍କର ସ୍ୱପ୍ନର ଭାରତ ଗଢି ତୋଳିବାକୁ ସେ ଦେଶବାସୀଙ୍କୁ ନିବେଦନ କରିଥିଲେ ।

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅ... ୯ର ତାତ୍ପର୍ଯ୍ୟ ବର୍ଣ୍ଣନା କରି କହିଲେ ଯେ ସ୍ୱାଧୀନତା ସଂଗ୍ରା... ଇତିହାସରେ ଏହା ଏକ ସ୍ମରଣୀୟ ଦିବସ । ସ୍ୱାଧୀ... ସଂଗ୍ରାମରେ ଭାରତର ବହୁ ସାଧାରଣ ଲୋକ ଅଂଶ ଗ୍ର... କରି ଚରମ ତ୍ୟାଗ ସ୍ୱୀକାର କରିଥିଲେ । ଓଡ଼ିଶାର ବି... ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମର ବହ୍ନି ପ୍ରଜ୍ୱଳିତ ହୋଇଥିଲ... ୧୮୫୭ ଆନ୍ଦୋଳନ ସମୟରେ ବୀର ସୁରେନ୍ଦ୍ର ସାଏ ବିପ୍ଳ... ଅଗ୍ରଦୂତ ଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ବନ୍ଦେ ମାତର... ଅସହଯୋଗ, ଲବଣ ସତ୍ୟାଗ୍ରହ ଓ ଭାରତ ଛାଡ ଆନ୍ଦୋଳନ... ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସାଧାରଣ ଜନତା ଐକ୍ୟ... ସଂଗ୍ରାମ ଚଳାଇଥିଲେ । ଆଦିବାସୀ ନେତା ଲ... ନାୟକ, ବିପ୍ଳବୀ ବାଘା ଯତୀନ୍ ଓ ଶହୀଦ୍ ବାଜି ରାଉତଙ୍କ... ଚରମ ତ୍ୟାଗର ସ୍ମୃତି ମୁଖ୍ୟମନ୍ତ୍ରୀ ସୂଚାଇଥିଲେ । ଓଡ଼ିଶା... ସ୍ୱାଧୀନତା ସଂଗ୍ରାମର ସ୍ମୃତି ବିଜଡିତ ବହୁ ସ୍ଥାନ ରହିଥିଲେ ମ... ସେଗୁଡିକ ମଧ୍ୟରୁ କେବଳ ଆଠଟି ସ୍ଥାନରୁ ମୃତ୍ତିକା ସଂଗ୍ର... କରାଯାଇ ଓ ସେସବୁ ମୃତ୍ତିକାକୁ ଏଠାରେ ଏକତ୍ର ... ଜାତୀୟ ସ୍ତରରେ ଅନୁଷ୍ଠିତ ହେଉଥିବା ଉତ୍ସବପାଇଁ ଦି... ପଠାଯାଉଛି । ଏହି ମୃତ୍ତିକା କେବଳ ଓଡ଼ିଶାରେ ସ୍ୱାଧୀନ... ସଂଗ୍ରାମର ପ୍ରତୀକ ନୁହିଁ ଜାତୀୟ ଆନ୍ଦୋଳନର ଇତିହ... ମଧ୍ୟ ।

ଦେଶର ସ୍ୱାଧୀନତା, ସଂହତି ଓ ଏକତାପାଇଁ ଯେ... ମନୀଷୀଗଣ ପ୍ରାଣବଳୀ ଦେଇଛନ୍ତି ସେମାନଙ୍କ ପ୍ରତି ଗଭ... ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଏହି ଉତ୍ସବ... ଉପସ୍ଥିତ ଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ସେ ଶ୍ରଦ୍ଧା... ପ୍ରଣାମ ଜଣାଇଥିଲେ ।

ବାଚସ୍ପତି ଶ୍ରୀ ପ୍ରସନ୍ନ କୁମାର ଦାସ କହିଲେ ... ଅଗଷ୍ଟ ୯ ଆମ ଦେଶ ପକ୍ଷରେ ଏକ ପବିତ୍ର ଓ ସ୍ମରଣୀୟ ଦି... ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଭାରତୀୟ ଜାତୀ... ଆନ୍ଦୋଳନ ପୃଥିବୀର ପରାଧୀନ ନିଷ୍ପେଷିତ ଜନତ... ଦିଗ୍ଦର୍ଶନ ଦେଇଥିଲେ । ସ୍ୱାଧୀନତା ସଂଗ୍ରାମରେ ଯେ... ବୀର ଶହୀଦମାନେ ପ୍ରାଣବଳୀ ଦେଇଥିଲେ ସେମାନଙ୍କ ପ୍ର...

ଶରୀର ଉତ୍ସର୍ଗୀକୃତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ବାଚସ୍ପତି ଶ୍ରୀ ଦାସ କହିଲେ ଯେ ଏହି ବୀର ଶହୀଦମାନଙ୍କ ଆତ୍ମବଳି ଫଳରେ ଭାରତବର୍ଷ ଏବେ ପୃଥିବୀର ସର୍ବଶ୍ରେଷ୍ଠ ଓ ସର୍ବବୃହତ୍ ରାଷ୍ଟ୍ର ଭାବେ ଗୌରବ ଅର୍ଜନ କରିଛି । ଭାରତର ସଂସ୍କୃତି ଓ ଐତିହ୍ୟ ସହନଶୀଳତାର ପ୍ରତୀକ ବୋଲି ବର୍ଣ୍ଣନା କରି ଦେଶକୁ ଅଧିକ ସୁଦୃଢ଼ ଓ ସମୃଦ୍ଧିଶାଳୀ କରିବା ପାଇଁ ଆତ୍ମ ସମୀକ୍ଷାସହ ସଂକଳ୍ପ ନେବାକୁ ସେ ଜନସାଧାରଣଙ୍କୁ ନିବେଦନ କରିଥିଲେ ।

ଉତ୍ସବ ଆରମ୍ଭ ପୂର୍ବରୁ ଐତିହାସିକ ମୃତ୍ତିକା ବହନ କରି ରାଜଭବନଠାରୁ ମନ୍ତ୍ରୀ ଓ ସ୍ୱାଧୀନତା ସଂଗ୍ରାମୀବୃନ୍ଦ ଏକ ଶୋଭାଯାତ୍ରାରେ ଆସି ପ୍ରଥମେ ମହାତ୍ମା ଗାନ୍ଧୀଙ୍କ ପ୍ରତିମୂର୍ତ୍ତି ଉପରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ସଭା ସ୍ଥଳରେ ଐତିହାସିକ ମୃତ୍ତିକାକୁ ସଂପୃକ୍ତ ମନ୍ତ୍ରୀ ରାଜ୍ୟପାଳଙ୍କୁ ଅର୍ପଣ କରିଥିଲେ । ରାଜ୍ୟପାଳ ବାଚସ୍ପତିଙ୍କୁ ମୃତ୍ତିକା ପାତ୍ର ହସ୍ତାନ୍ତର କରିଥିଲେ । ପରେ ଆଠଟି ସ୍ଥାନର ମୃତ୍ତିକା ବାଚସ୍ପତି ଏକତ୍ରିତ କରି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିନୋଦ କାନୁନଗୋ ଓ ଶ୍ରୀମତୀ ପାର୍ବତୀ ଗିରି ଓ ବିଶିଷ୍ଟ କ୍ରୀଡ଼ାବିତ୍ ଶ୍ରୀମତୀ ମିନତି ମହାପାତ୍ର ଓ ଶ୍ରୀ ବିଜୟ କୁମାର ଶତପଥୀଙ୍କୁ ଦିଲ୍ଲୀ ନେବା ଉଦ୍ଦେଶ୍ୟରେ ପ୍ରଦାନ କରିଥିଲେ । ପରେ ପରେ ସମବେତ ସ୍ୱାଧୀନତା ସଂଗ୍ରାମୀ, ବିଧାୟକ ଓ ବିଶିଷ୍ଟ ବ୍ୟକ୍ତିମାନେ ମୃତ୍ତିକା ପ୍ରତି ପୁଷ୍ପ ପ୍ରଦାନ ପୂର୍ବକ ସମ୍ମାନ ପ୍ରଦର୍ଶନ କରିଥିଲେ ।

ବିଶିଷ୍ଟ ଐତିହାସିକ ଡକ୍ଟର ମନ୍ମଥ ନାଥ ଦାସ ମୃତ୍ତିକା ସଂଗୃହୀତ ହୋଇଥିବା ଆଠଗୋଟି ଐତିହାସିକ ପୀଠର ମହତ୍ତ୍ୱ ବର୍ଣ୍ଣନା କରିଥିଲେ ।

ଚଳିତ ମାସ ୧ ତାରିଖଠାରୁ ୬ ତାରିଖ ମଧ୍ୟରେ ସମ୍ବଲପୁର ଜିଲ୍ଲାର ବୀର ସୁରେନ୍ଦ୍ର ସାଏଙ୍କ ଜନ୍ମସ୍ଥାନ ଖିଣ୍ଡା, ବାଲେଶ୍ୱର ଜିଲ୍ଲାର ଚଣ୍ଡୀଖୋଲ, ଇରମ ଓ ଇଂଚୁଡ଼ି, ଢେଙ୍କାନାଳ ଜିଲ୍ଲାର ନୀଳକଣ୍ଠପୁର, କୋରାପୁଟ ଜିଲ୍ଲାର ପାପଡାହାଣ୍ଡି, ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର କେନ୍ଦ୍ର ଜେଲ, କଟକ ଜିଲ୍ଲାର କାଇପଦା-ବହାମାଟିଆଠାରୁ ପବିତ୍ର ମୃତ୍ତିକା ସଂଗ୍ରହ କରାଯାଇଥିଲା ।

## ଶିଳ୍ପ କେନ୍ଦ୍ରକୁ ବିଦ୍ୟୁତ୍ ଯୋଗାଣ

ରାଜ୍ୟରେ ପ୍ରତିଷ୍ଠିତ ଶିଳ୍ପ କେନ୍ଦ୍ର ଏବଂ ନୂଆ ହୋଇ ଗଢ଼ିଉଠୁଥିବା ଶିଳ୍ପ ସଂସ୍ଥାଗୁଡ଼ିକୁ ଚାହିଦା ମୁତାବକ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦେବାପାଇଁ ପରିଷଦ ତରଫରୁ ସବୁମତେ ଉଦ୍ୟମ କରାଯାଉଛି । କ୍ଷୁଦ୍ର ଓ ମଧ୍ୟମ ଶିଳ୍ପପାଇଁ କୌଣସି ଅସୁବିଧା ନ ଥିଲେ ମଧ୍ୟ ବୃହତ୍ ଶିଳ୍ପସଂସ୍ଥାଗୁଡ଼ିକର ଉତ୍ପାଦନକୁ ଚାହିଁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦିଆଯାଏ । ଗୋଟିଏ ଜଳବର୍ଷରେ ପରିଷଦର କେତେ ପରିମାଣରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ହେବ, ତାହା ହିସାବକୁ ନେଇ ବୃହତ ଶିଳ୍ପସଂସ୍ଥାଗୁଡ଼ିକୁ ସେମାନଙ୍କ ଚାହିଦାର କେତେ ଭାଗ ଶକ୍ତି ଯୋଗାଇ ଦିଆଯିବ, ତାହା ସରକାରଙ୍କ ଦ୍ୱାରା ସ୍ଥିର କରାଯାଇ ତଦନୁସାରେ ସେମାନଙ୍କୁ ନିର୍ଦ୍ଧାରିତ ପରିମାଣର ବିଦ୍ୟୁତ୍‌ଶକ୍ତି ଯୋଗାଇ ଦିଆଯାଇଥାଏ ।

ହିସାବରୁ ଜଣାଯାଏ ଯେ ଗତ ୧୯୮୬ ମସିହା ମାର୍ଚ୍ଚ ମାସ ଶେଷସୁଦ୍ଧା ରାଜ୍ୟର ଶିଳ୍ପ ଗ୍ରାହକଙ୍କ ସଂଖ୍ୟା ପ୍ରାୟ ୨୦,୨୦୮ । ସେଥିମଧ୍ୟରୁ ୧୦୦ କିଲୋୱାଟ୍‌ରୁ ଊର୍ଦ୍ଧ୍ୱ ବିଦ୍ୟୁତ୍‌ଶକ୍ତି ବ୍ୟବହାର କରୁଥିବା ଗ୍ରାହକଙ୍କ ସଂଖ୍ୟା ୪୮୦ ଏବଂ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ସଂଖ୍ୟା ୧୯,୭୨୮ । ରାଜ୍ୟର ସର୍ବମୋଟ ବିଦ୍ୟୁତ୍ ବିନିଯୋଗର ଶତକଡ଼ା ପ୍ରାୟ ୭୩ ଭାଗ କେବଳ ଶିଳ୍ପକେନ୍ଦ୍ରଗୁଡ଼ିକୁ ଯୋଗାଇ ଦିଆଯାଉଥିବାରୁ ଏବଂ ରାଜ୍ୟରେ ଚାହିଦା ମୁତାବକ ବିଦ୍ୟୁତ୍‌ଶକ୍ତି ଅଭାବ ପଡୁଥିବାରୁ ଶିଳ୍ପ କେନ୍ଦ୍ରଗୁଡ଼ିକରେ ଶକ୍ତି ସଂରକ୍ଷଣ ବ୍ୟବସ୍ଥା ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ଶିଳ୍ପ କେନ୍ଦ୍ରରେ ଥିବା ଯନ୍ତ୍ରପାତି-ଗୁଡ଼ିକର ଉପଯୁକ୍ତ ରକ୍ଷଣାବେକ୍ଷଣ ସଙ୍ଗେ ସଙ୍ଗେ ନୂତନ ଶିଳ୍ପନୀତି ଅନୁସାରେ ସେଗୁଡ଼ିକର ଆଧୁନିକୀକରଣ ଓ ନୂତନ କାରିଗରୀ କୌଶଳ ପ୍ରୟୋଗକରି ସେଥିରେ ଉଲ୍ଲେଖ କରାଯାଇଥିବା ସୁଯୋଗଗୁଡ଼ିକୁ ଗ୍ରହଣ କରିବା ଆବଶ୍ୟକ । ଏହା ଫଳରେ ଉଦ୍‌ବୃତ୍ତ ବିଦ୍ୟୁତ୍‌ଶକ୍ତି ରାଜ୍ୟର ଅନୁନ୍ନତ ଅଞ୍ଚଳରେ ଗଢ଼ିଉଠୁଥିବା ଶିଳ୍ପକେନ୍ଦ୍ରଗୁଡ଼ିକରେ ବ୍ୟବହାର କରାଯାଇ ପାରିବ ।

ପରିଷଦର ନିଜସ୍ୱ ବିଦ୍ୟୁତ୍ ଉତ୍ପାଦନ ରାଜ୍ୟର ଚାହିଦା ପୂରଣପାଇଁ ଯଥେଷ୍ଟ ହେଉନଥିବାରୁ ନିଅଣ୍ଟିଆ ସମୟରେ କେତେକ ବୃହତ୍ ଶିଳ୍ପସଂସ୍ଥାକୁ ବିଦ୍ୟୁତ୍ କଟକଣା କରାଯାଇ ଆଭ୍ୟନ୍ତରୀଣ ବଣ୍ଟନ ପ୍ରଣାଳୀକୁ ନିୟନ୍ତ୍ରଣ କରିବା ନିମନ୍ତେ ପଡ଼ୋଶୀ ରାଜ୍ୟରୁ ବିଦ୍ୟୁତ୍‌ଶକ୍ତି ଆମଦାନି କରାଯାଏ । ଏହି ବିଦ୍ୟୁତ୍‌ର ୟୁନିଟ୍ ପିଛା ମୂଲ୍ୟ ରାଜ୍ୟରେ ଉତ୍ପାଦିତ ମୂଲ୍ୟଠାରୁ ଅଧିକ ହୋଇଥିବାରୁ ଯେଉଁ ବୃହତ୍ ଶିଳ୍ପ ଅଧିକ ହାରରେ ମାଶୁଲ ଦେଇ ଶକ୍ତି ବିନିଯୋଗପାଇଁ ସମ୍ମତି ପ୍ରଦାନ କରନ୍ତି, ସେମାନଙ୍କୁ ତାହା ଯୋଗାଇ ଦିଆଯାଏ ।

ରାଜ୍ୟ ସରକାରଙ୍କର ୧୯୮୬ ମସିହା ଶିଳ୍ପନୀତି ଅନୁସାରେ କେତେକ ଶ୍ରେଣୀର ଶିଳ୍ପକେନ୍ଦ୍ରକୁ ବିଦ୍ୟୁତ୍ ମାଶୁଲରେ ରିହାତି ଦେବା ସଙ୍ଗେ ସଙ୍ଗେ ଏଥିରେ ଉଲ୍ଲେଖ ଥିବା ନିୟମଗୁଡ଼ିକୁ ପରିଷଦ ଯଥାରୀତି ପାଳନ କରି ଆସୁଛନ୍ତି । ନୂତନ ଶିଳ୍ପକେନ୍ଦ୍ରଗୁଡ଼ିକୁ ଶୀଘ୍ର କିପରି ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯିବ, ସେଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉଛି ।

ଶିଳ୍ପକେନ୍ଦ୍ରଗୁଡ଼ିକରୁ ରାଜସ୍ୱ ଆଦାୟ ପରିଷଦର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହୋଇଥିବାରୁ କେତେକ କ୍ଷେତ୍ରରେ ଏଥିରେ ବ୍ୟତିକ୍ରମ ପରିଲକ୍ଷିତ ହେବା ଦ୍ୱାରା ଉନ୍ନତିମୂଳକ ଯୋଜନା-ଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ଘୋର ପ୍ରତିବନ୍ଧକ ସୃଷ୍ଟି ହେଉଛି । ଶିଳ୍ପକେନ୍ଦ୍ରଗୁଡ଼ିକ ଏଥିପ୍ରତି ଦୃଷ୍ଟି ଦେବା ଅତ୍ୟନ୍ତ ଜରୁରୀ । ଏକ ନିଅଣ୍ଟିଆ ପରିସ୍ଥିତିରେ ଶିଳ୍ପକେନ୍ଦ୍ରଗୁଡ଼ିକୁ ଯଥାସମ୍ଭବ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦେବାପାଇଁ ପରିଷଦ ତରଫରୁ କୌଣସି ଅବହେଳା ପ୍ରଦର୍ଶନ କରାଯାଏନାହିଁ ।

## ଓଡ଼ିଶାରେ ୩୩୮ଟି ଟେଲିଫୋନ ଏକ୍ସଚେଞ୍ଜ

ଓଡ଼ିଶାରେ ନୂଆ ଟେଲିଫୋନ ସଂଯୋଗ ନେବାପାଇଁ ୫୪୬୮ ଟି ଆବେଦନପତ୍ର ବିଚାରାଧୀନ ଅବସ୍ଥାରେ ରହିଛି । ସପ୍ତମ ଯୋଜନା ଶେଷ ସୁଦ୍ଧା ଏମାନଙ୍କୁ ଟେଲିଫୋନ ଯୋଗାଇ ଦିଆଯିବାର ପ୍ରସ୍ତାବ ଅଛି ବୋଲି ରାଜ୍ୟସଭାରେ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଏକ ପ୍ରଶ୍ନର ଉତ୍ତର ଦେଇ ଯୋଗାଯୋଗ

ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସନ୍ତୋଷ ମୋହନ ଦେବ ପ୍ରକାଶ କରିଛନ୍ତି ।

ଶ୍ରୀ ଦେବ କହିଲେ ଯେ ଚଳିତବର୍ଷ ମାର୍ଚ୍ଚ ମାସ ଶେଷ ସୁଦ୍ଧା ଓଡ଼ିଶାରେ ୩୩୮ଟି ଟେଲିଫୋନ ଏକସ୍‌ଚେଞ୍ଜ ଥିଲା । ଗତ ତିନିବର୍ଷ ମଧ୍ୟରେ ମୋଟ ୧୦,୨୩୨ ଟେଲିଫୋନ ସଂଯୋଗ ଯୋଗାଇ ଦିଆଯାଇଛି । ଗତ ଆର୍ଥିକ ବର୍ଷ ମଧ୍ୟରେ ଯୋଗାଇ ଦିଆଯାଇଥିବା ଟେଲିଫୋନ ସଂଖ୍ୟା ହେଲା ୩୧୪୭ । ୧୯୮୪-୮୫ ଓ ୧୯୮୫-୮୬ ରେ ଯଥାକ୍ରମେ ୩୯୧୮ ଓ ୩୧୬୭ ନୂତନ ସଂଯୋଗ କରାଯାଇଛି ବୋଲି ସେ ପ୍ରକାଶ କରିଥିଲେ ।

## ଗୋପାଳପୁରକୁ ସବୁଦିନିଆ ବନ୍ଦର କରିବା ପାଇଁ ଯୋଜନା

ଗୋପାଳପୁର ବନ୍ଦରକୁ ଏକ ସବୁଦିନିଆ ବନ୍ଦରରେ ପରିଣତ କରିବାପାଇଁ ରାଜ୍ୟ ସରକାରଙ୍କ ଯୋଜନା ଅଛି । ରାଜ୍ୟସଭାରେ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଏକ ପ୍ରଶ୍ନର ଉତ୍ତର ଦେଇ ଭୂତଳ ପରିବହନ ମନ୍ତ୍ରୀ ଶ୍ରୀ ରାଜେଶ ପାଇଲଟ୍ ଏହା ପ୍ରକାଶ କରିଛନ୍ତି । ସେ କହିଲେ ଯେ ଗୋପାଳପୁର କ୍ଷୁଦ୍ର ବନ୍ଦରର ପରିଚାଳନା ଓ ଉନ୍ନୟନ ଦାୟିତ୍ୱ ଓଡ଼ିଶା ସରକାରଙ୍କ ଉପରେ ନ୍ୟସ୍ତ । ରାଜ୍ୟ ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯାଇଥିବା ତଥ୍ୟ ଅନୁଯାୟୀ ଏହି ବନ୍ଦର ଚଳିତ ବର୍ଷ ଫେବୃଆରୀ ୨୭ ତାରିଖରୁ କାର୍ଯ୍ୟକାରୀ ହେଉଛି ଏବଂ ଏହା କରିପାରେ ବାର୍ଷିକ ୫·୨୭ ଲକ୍ଷ ମେଟ୍ରିକ ଟନ୍ ମାଲ ସରବରାହ କରାଇବାର ଯୋଜନା ରହିଛି ।

ଶ୍ରୀ ପାଇଲଟ କହିଲେ ଏହି ବନ୍ଦର ବିକାଶରେ ଚଳିତ-ବର୍ଷ ଜୁନ ମାସ ଶେଷ ସୁଦ୍ଧା ୨୪୦୯.୩୬ ଲକ୍ଷ ଟଙ୍କା ବ୍ୟୟ ହୋଇଛି ବୋଲି ରାଜ୍ୟ ସରକାରଙ୍କଠାରୁ ମିଳିଥିବା ତଥ୍ୟରୁ ଜଣାପଡ଼ିଛି ।

## ଓଡ଼ିଶା ରେଳ ଷ୍ଟେସନରେ ଟି.ଭି. ବ୍ୟବସ୍ଥା

ଭୁବନେଶ୍ୱର ରେଳ ଷ୍ଟେସନରେ ସଂପ୍ରତି କ୍ଲୋଜ୍ ସର୍କିଟ ରଙ୍ଗୀନ ଟେଲିଭିଜନ ସେଟ୍ କାର୍ଯ୍ୟକାରୀ ହେଉଛି ଏବଂ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ଓଡ଼ିଶାର ଅନ୍ୟ କୌଣସି ଷ୍ଟେସନରେ ଏଭଳି ବ୍ୟବସ୍ଥା ପ୍ରତିଷ୍ଠା କରାଯିବାର ପ୍ରସ୍ତାବ ନାହିଁ ବୋଲି ରେଳବାଇ ମନ୍ତ୍ରୀ ଶ୍ରୀ ମାଧବରାଓ ସିନ୍ଧିଆ ପ୍ରକାଶ କରିଛନ୍ତି ।

ରାଜ୍ୟସଭାରେ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଏକ ପ୍ରଶ୍ନର ଲିଖିତ ଉତ୍ତର ଦେଇ ରେଳବାଇମନ୍ତ୍ରୀ କହିଲେ ଯେ ଦେଶବ୍ୟାପୀ ୧୮ଟି ରେଳ ଷ୍ଟେସନରେ ବର୍ତ୍ତମାନ କ୍ଲୋଜ୍ ସର୍କିଟ ରଙ୍ଗୀନ ଟେଲିଭିଜନ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଛି । ଏହି ସେଟ୍ ଗୁଡ଼ିକର ପ୍ରତିଷ୍ଠା ଓ ରକ୍ଷଣାବେକ୍ଷଣ ଘରୋଇ ଉଦ୍ୟୋଗୀମାନଙ୍କ ପକ୍ଷରୁ ସେମାନଙ୍କ ନିଜ ଖର୍ଚ୍ଚରେ କରାଯାଏ ।

ଯାତ୍ରୀ ସଂଖ୍ୟା ଓ ଗୁରୁତ୍ୱ ଦୃଷ୍ଟିରୁ ଯେଉଁସବୁ ଷ୍ଟେସନରେ ଘରୋଇ ଉଦ୍ୟୋଗୀମାନେ ଅର୍ଥ ବିନିଯୋଗ କରିବାକୁ ଆଗ୍ରହୀ ହେବେ ସେଥିପ୍ରତି ଦୃଷ୍ଟି ଦିଆଯାଇ ଟି. ଭି. ସେଟ୍ ବସାଇବା ଲାଗି ଷ୍ଟେସନ ବଛାଯାଏ ବୋଲି ଶ୍ରୀ ସିନ୍ଧିଆ ପ୍ରକାଶ କରିଥିଲେ ।

## ନେହେରୁ ଯୁବ ପ୍ରତିଷ୍ଠାନରେ ଆଲୋଚନାଚକ୍ର

ସ୍ୱାଧୀନତାର ୪୦ବର୍ଷ ପୂର୍ତ୍ତି ଉପଲକ୍ଷେ ଭୁ
ନେହେରୁ ଯୁବ ପ୍ରତିଷ୍ଠାନରେ ଗତ୧୫ତାରିଖଦିନ "
ସ୍ୱାଧୀନତା—ମୂଲ୍ୟାୟନ" ଶୀର୍ଷକ ଏକ ଆଲୋଚନାଚକ୍ର
ହୋଇଥିଲା । ଏଥିରେ ମୁଖ୍ୟ ଅତିଥିଭାବେ ଯୋ
ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିଜୟ ପାଣି ସ୍ୱ
ସଂଗ୍ରାମରେ ତାଙ୍କର ଅନୁଭୂତି ବର୍ଣ୍ଣନା କରି କହିଲେ
ବିଭାଜନ ପ୍ରଥମେ ଆମ ସ୍ୱାଧୀନତାକୁ କୁଠାରଘାତ କ
ସ୍ୱାଧୀନତାର ସୁରକ୍ଷା ପାଇଁ ଜନସାଧାରଣଙ୍କୁ ଶୋ
ଅତ୍ୟାଚାରରୁ ମୁକ୍ତ ରଖି ସେମାନଙ୍କ ଅର୍ଥନୈତିକ ଅବସ୍ଥା
ସାଧନ କରିବାକୁ ପଡ଼ିବ । ଆଲୋଚନାଚକ୍ରରେ ସ
କରିଥିଲେ ଶିକ୍ଷାବିତ୍ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ମହାପାତ୍ର ।

## ତଫସିଲଭୁକ୍ତ ଜାତି ଓ ଉପଜାତି ପାଇଁ ସ୍ୱତନ୍ତ୍ର ଯୋଜନା

ସପ୍ତମ ଯୋଜନାର ପ୍ରଥମ ଦୁଇବର୍ଷ ମଧ୍ୟରେ
ତଫସିଲଭୁକ୍ତ ଜାତିର ୧,୮୨,୧୬୯ ପରିବାର ଓ
୨,୫୬,୨୯୯ ପରିବାରଙ୍କୁ ଦାରିଦ୍ର୍ୟ ସୀମାରେଖା
ଉଠିବା ପାଇଁ ସହାୟତା ଯୋଗାଇ ଦିଆଯାଇଛି । ସ
ଯୋଜନା କାଳରେ ରାଜ୍ୟର ୪,୪୬,୩୦୪ ତଫସିଲ
ପରିବାର ଓ ୪,୯୦,୯୬୩ ଉପଜାତି ପରିବାର ଏଭଳି
ଲାଭକରି ଦାରିଦ୍ର୍ୟ ସୀମାରେଖା ଉର୍ଦ୍ଧ୍ବକୁ ଉଠି ପା
ରାଜ୍ୟ ସଭାରେ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଏକ
ଉତ୍ତର ଦେଇ କଲ୍ୟାଣ ଉପମନ୍ତ୍ରୀ ଶ୍ରୀ ଗିରିଧର
ଏହି ତଥ୍ୟ ପ୍ରକାଶ କରିଛନ୍ତି ।

ଶ୍ରୀ ଗମାଙ୍ଗୋ କହିଲେ ଯେ ସପ୍ତମ ଯୋଜନାର
ତିନିବର୍ଷ ମଧ୍ୟରେ ତଫସିଲଭୁକ୍ତ ଜାତିଙ୍କ ଉଦ୍ଦି
ଉଦ୍ଦିଷ୍ଟ ସ୍ୱତନ୍ତ୍ର ଯୋଜନା ନିମନ୍ତେ ୧୩୯·୧୦ କୋଟି
ବ୍ୟୟ ଅଟକଳ ଧାର୍ଯ୍ୟ ହୋଇଥିଲା । ଏଥିରୁ କେନ୍ଦ୍ର ସ
ସ୍ୱତନ୍ତ୍ର ସହାୟତା ପରିମାଣ ଥିଲା ୧୯·୩୯ କୋ
ସେହିଭଳି ଆଦିବାସୀ ଉପଯୋଜନା ପାଇଁ ଚଳିତ ଯ
ପ୍ରଥମ ତିନି ବର୍ଷରେ ବ୍ୟୟ ଅଟକଳ ୪୮୭·୦୧ କୋ
ଥିଲା । ଏଥିରୁ କେନ୍ଦ୍ର ସରକାରଙ୍କ ସ୍ୱତନ୍ତ୍ର ସାହାଯ୍ୟ
ଥିଲା ୬୨·୧୪ କୋଟି ଟଙ୍କା । ସମଗ୍ର ଷଷ୍ଠ ଯୋଜନା
ସ୍ୱତନ୍ତ୍ର ଯୋଜନା ପାଇଁ ୧୧୪·୩୪ କୋଟି ଟଙ୍କା
ଅଟକଳ ଥିଲାବେଳେ କେନ୍ଦ୍ରୀୟ ସହାୟତା ପରିମା
୨୪·୮୮ କୋଟି ଟଙ୍କା । ସେହି ସମୟ ମଧ୍ୟରେ ଅ
ଉପଯୋଜନାର ବ୍ୟୟ ଅଟକଳ ୪୭୧.୩୮ କୋ
ଥିଲାବେଳେ କେନ୍ଦ୍ରୀୟ ସାହାଯ୍ୟ ପରିମାଣ ଥିଲା
କୋଟି ଟଙ୍କା ।

ସ୍ୱତନ୍ତ୍ର ଯୋଜନା ଓ ଆଦିବାସୀ ଉପଯୋ
କାର୍ଯ୍ୟକାରିତା ବିଭିନ୍ନ ସ୍ତରରେ ସମୀକ୍ଷା କରାଯାଉଛି
ଶ୍ରୀ ଗମାଙ୍ଗୋ ପ୍ରକାଶ କରିଥିଲେ । କ୍ଷେତ୍ର ପ୍ରକ
ସମୀକ୍ଷା ଜିଲ୍ଲାସ୍ତର ତଥା ରାଜ୍ୟ ସରକାର କରୁଥି
କେନ୍ଦ୍ର କଲ୍ୟାଣ ମନ୍ତ୍ରଣାଳୟର ଅଫିସରମାନେ ମଧ୍

ପରିଦର୍ଶନ କରୁଛନ୍ତି । ଯୋଜନା କମିଶନ ଓ କଲ୍ୟାଣ ମନ୍ତ୍ରଣାଳୟରେ ଏ ସଂକ୍ରାନ୍ତ ଆଲୋଚନା କରିଥାରେ କାର୍ଯ୍ୟକ୍ରମର ରୂପରେଖ ଜରାଯାଉଛି ବୋଲି ସେ କହିଥିଲେ ।

## ଚିଙ୍ଗୁଡ଼ି ଚାଷର ବିକାଶ ପାଇଁ ପଦକ୍ଷେପ

ଲୁଣିପାଣି ଚିଙ୍ଗୁଡ଼ି ଚାଷର ବିକାଶ ପାଇଁ ପୁରୀ ଓ ବାଲେଶ୍ୱର-ଠାରେ ଅବସ୍ଥିତ 'ଲୁଣିପାଣି ମତ୍ସ୍ୟଚାଷୀ ସଂସ୍ଥା' ତରଫରୁ ଗତ ଜୁଲାଇ ମାସରେ ୨୨୦ ହେକ୍ଟର ଲୁଣିପାଣି ଅଞ୍ଚଳ ସର୍ଭେ କରାଯାଉଛି । ଉକ୍ତ ସଂସ୍ଥା ତରଫରୁ ୨ ଜଣଙ୍କର ଆବେଦନ ପତ୍ର ବ୍ୟାଙ୍କ ଋଣ ମଞ୍ଜୁରୀ ପାଇଁ ବିଭିନ୍ନ ବ୍ୟାଙ୍କକୁ ସୁପାରିଶ କରାଯିବା ସଙ୍ଗେ ସଙ୍ଗେ ୧୯ ଜଣ ଉପଭୋକ୍ତାଙ୍କୁ ସବ୍‌ସିଡ଼ି ଆକାରରେ ୨୭,୫୨୭ ଟଙ୍କା ଦିଆଯାଇଛି । ଗତମାସ ଶେଷ ସୁଦ୍ଧା ସମୁଦାୟ ୨୩ ଜଣ ଉପଭୋକ୍ତାଙ୍କୁ ସବ୍‌ସିଡ଼ି ଆକାରରେ ୩୭,୬୧୨ ଟଙ୍କା ଉକ୍ତ ସଂସ୍ଥା ତରଫରୁ ଦିଆ-ଯାଇଛି ।

ଲୁଣିପାଣି ମାଛ ଚାଷ ଉନ୍ନୟନ ସକାଶେ ୨ ଗୋଟି ଲୁଣିପାଣି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଗୋଟିଏ ଗଞ୍ଜାମ ଓ ପୁରୀ ଜିଲ୍ଲାକୁ ନେଇ ପୁରୀଠାରେ ଓ ଅନ୍ୟଟି କଟକ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ବାଲେଶ୍ୱରଠାରେ ପ୍ରତିଷ୍ଠା କରାଯାଇଛି । ଚିଙ୍ଗୁଡ଼ି ଚାଷ ପାଇଁ ଏ ପର୍ଯ୍ୟନ୍ତ ୪୬୨ ହେକ୍ଟର ଜଳାଧାରର ଉନ୍ନୟନ କରାଯାଇଛି । ଚଳିତ ଆର୍ଥିକ ବର୍ଷରେ ଲୁଣିପାଣି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଦ୍ୱାରା ୬୦୦ ହେକ୍ଟର ଲୁଣିପାଣି ଜଳାଧାରର ଉନ୍ନୟନ ପ୍ରସ୍ତାବ ରହିଛି ।

ଏହା ବ୍ୟତୀତ କେନ୍ଦ୍ରୀୟ ସାହାଯ୍ୟ କ୍ଷେତ୍ର ବିକାଶ କାର୍ଯ୍ୟକ୍ରମ (ଏ. ଏ. ଡି. ପି.) ଯୋଜନା ଜରିଆରେ ଲୁଣିପାଣି ମାଛଚାଷ ପୋଖରୀ ଖନନ କାର୍ଯ୍ୟ ଭାରତ ସରକାରଙ୍କ ଶତକଡ଼ା ୫୦ ଭାଗ ସାହାଯ୍ୟରେ ଚାଲୁଛି । ଉକ୍ତ କାର୍ଯ୍ୟକ୍ରମ ଅନୁଯାୟୀ ୬ ହେକ୍ଟର ଆୟତନ ପୋଖରୀର ଉନ୍ନୟନ ନିମନ୍ତେ ରାଜ୍ୟ ଯୋଜନାରେ ୨ ଲକ୍ଷ ୫୦ ହଜାର ଏବଂ କେନ୍ଦ୍ରୀୟ ଯୋଜନାରେ ୨ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟ କରାଯିବ । ଏଗୁଡ଼ିକ କ୍ଷୁଦ୍ରଚାଷୀ ଓ ନାମମାତ୍ର ମାଛଚାଷୀଙ୍କୁ ଦୀର୍ଘମିଆଦୀ ସୂତ୍ରରେ ପଟା ଦିଆଯିବାର ବ୍ୟବସ୍ଥା ହୋଇଛି । ଚଳିତ ଆର୍ଥିକ ବର୍ଷରେ ଏକ ଚିଙ୍ଗୁଡ଼ି ଜାଆଁଳ ହ୍ୟାଚେରୀ ପାରାଦୀପଠାରେ ପ୍ରତିଷ୍ଠା କରାଯିବା ପାଇଁ ପ୍ରସ୍ତାବ ରହିଛି ।

୧୯୮୭-୮୮ ଆର୍ଥିକ ବର୍ଷ ପାଇଁ ରାଜ୍ୟରେ ଲୁଣିପାଣି ଚିଙ୍ଗୁଡ଼ି ଚାଷ ପାଇଁ ୨୬ ଲକ୍ଷ ଟଙ୍କା ବ୍ୟୟ କରାଯିବା ପାଇଁ ମଧ୍ୟ ବ୍ୟବସ୍ଥା ହୋଇଛି ।

ସାମୁଦ୍ରିକ ସାମଗ୍ରୀ ରପ୍ତାନୀ ଉନ୍ନୟନ କର୍ତ୍ତୃପକ୍ଷ (ଏମ୍. ପି.ଇ.ଡି.ଏ.) ଫ୍ରାନ୍ସ ସରକାରଙ୍କ ସମ୍ମିଳିତ ସହଯୋଗରେ ସମୁଦ୍ର ଉପକୂଳବର୍ତ୍ତୀ ଗୋପାଳପୁରଠାରେ ଗୋଟିଏ ଚିଂଗୁଡ଼ି ଜାଆଁଳ ହ୍ୟାଚେରୀ ୭୦ ଲକ୍ଷ ୮୫ ହଜାର ଟଙ୍କା ବ୍ୟୟରେ ପ୍ରତିଷ୍ଠା କରୁଛନ୍ତି । ଏଥିପାଇଁ ଆବଶ୍ୟକୀୟ ଜମି ରାଜ୍ୟ ସରକାର ଯୋଗାଇ ଦେବେ । ହ୍ୟାଚେରୀ ସଂପୂର୍ଣ୍ଣ ହେଲେ ୫୦ ନିୟୁତ ଚିଂଗୁଡ଼ି ଗୁଣ୍ଡ ଜାଆଁଳ ଏଠାରୁ ଉତ୍ପାଦିତ ହେବ ।

## ଚଳିତ ବର୍ଷ ୯୮୦ ଲକ୍ଷ ଚାରା ବଣ୍ଟନ କରାଯିବା ପାଇଁ ବ୍ୟବସ୍ଥା

ଚଳିତ ଆର୍ଥିକ ବର୍ଷରେ ରାଜ୍ୟରେ ୪୫,୫୩୮ ହେକ୍ଟର ଜମିରେ ବୃକ୍ଷ ରୋପଣ, ୬୧,୧୦୮ ହେକ୍ଟର ଜମିରେ ପୁନଃରୋପଣ, ୩୫,୨୫୦ ହେକ୍ଟର ଫାଙ୍କା ଜାଗାମାନଙ୍କରେ ବୃକ୍ଷ ରୋପଣ ଏବଂ ୧,୧୨୩ କିଲୋମିଟର ଅଞ୍ଚଳରେ ପଥପାର୍ଶ୍ୱ ବୃକ୍ଷ ରୋପଣ କରାଯିବା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ବନୀକରଣ କାର୍ଯ୍ୟକ୍ରମ ଅନୁଯାୟୀ ୯୮୦ ଲକ୍ଷ ଚାରା ବଣ୍ଟନ କରିବାର କାର୍ଯ୍ୟକ୍ରମ ରହିଛି ।

ଗତ ଆର୍ଥିକ ବର୍ଷରେ ୧ ଲକ୍ଷ ୬ ହଜାର ୬୭୭ ହେକ୍ଟର ଜମିରେ ବୃକ୍ଷ ରୋପଣ କରାଯାଇଛି । ଉକ୍ତ ସମୟ ମଧ୍ୟରେ ୨୪ କୋଟି ବୃକ୍ଷ ରୋପଣ କରାଯିବା ପାଇଁ କାର୍ଯ୍ୟକ୍ରମ ଥିଲା ବେଳେ ୨୩ କୋଟି ୨୭ ଲକ୍ଷ ବୃକ୍ଷ ରୋପଣ କରାଯାଇଛି । ତନ୍ମଧ୍ୟରେ ମୁଖ୍ୟ ବନ ସଂରକ୍ଷକଙ୍କ ସଂସ୍ଥା ତରଫରୁ ୪୧,୯୭୪ ହେକ୍ଟର, ଓଡ଼ିଶା ବୃକ୍ଷ ରୋପଣ ଉନ୍ନୟନ ନିଗମ ତରଫରୁ ୩୧,୬୧୩ ହେକ୍ଟର, ସ୍ୱତନ୍ତ୍ର ବନୀକରଣ ପ୍ରକଳ୍ପରେ ୧୫,୧୨୫ ହେକ୍ଟର, ଓଡ଼ିଶା ବନ ନିଗମ ଦ୍ୱାରା ୭୩୦ ହେକ୍ଟର, ସିମିଳିପାଳ ବନ ଉନ୍ନୟନ ନିଗମ ତରଫରୁ ୧,୫୩୫ ହେକ୍ଟର ଓ ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ୧୫,୭୦୦ ହେକ୍ଟର ଜମିରେ କରାଯାଇଥିବା ବୃକ୍ଷ ରୋପଣ ଅନ୍ତର୍ଭୁକ୍ତ ।

୬ଷ୍ଠ ପଞ୍ଚବାର୍ଷିକ ଯୋଜନାରେ ଓଡ଼ିଶାରେ ପ୍ରାୟ ୩ ଲକ୍ଷ ୫୦ ହଜାର ହେକ୍ଟର ଜମିରେ ବୃକ୍ଷ ରୋପଣ କରାଯାଇଛି ।

୧୯୮୭ରେ ଜଙ୍ଗଲ ବିଭାଗ ତରଫରୁ ଚାରା ଉଠାଇବା ପାଇଁ ସମୁଦାୟ ୧,୫୬୩ ହେକ୍ଟର ଜମିରେ ଚାରା ବଗିଚାମାନ ପ୍ରସ୍ତୁତ କରାଯାଇଛି । ସେଥିମଧ୍ୟରେ ମୁଖ୍ୟ ବନ ସଂରକ୍ଷକଙ୍କ ସଂସ୍ଥା ୨୯୮ ହେକ୍ଟର ଜମିରେ, ସାମାଜିକ ବନୀକରଣ ପ୍ରକଳ୍ପ ଦ୍ୱାରା ୬୬୧ ହେକ୍ଟର ଜମିରେ ଏବଂ ଓଡ଼ିଶା ବୃକ୍ଷ ରୋପଣ ଉନ୍ନୟନ ନିଗମ ୬୦୪ ହେକ୍ଟର ଜମିରେ ଚାରା ବଗିଚା ପ୍ରସ୍ତୁତ କରିଛନ୍ତି ।

## ଦଶମନ୍ତପୁର ବ୍ଲକର ଏନ୍. ଆର୍. ଇ. ପି.ରେ ୭୦ଟି ପ୍ରକଳ୍ପର କାର୍ଯ୍ୟ ସଂପୂର୍ଣ୍ଣ

କୋରାପୁଟ ଜିଲ୍ଲା ଦଶମନ୍ତପୁର ବ୍ଲକରେ କାର୍ଯ୍ୟକାରୀ ହେଉଥିବା ଏନ୍. ଆର୍. ଇ. ପି. କାର୍ଯ୍ୟକ୍ରମ ଅନୁଯାୟୀ ଗତ ଆର୍ଥିକ ବର୍ଷଠାରୁ ଏପର୍ଯ୍ୟନ୍ତ ୭୦ଟି ଉନ୍ନୟନ ପ୍ରକଳ୍ପ ସଂପୂର୍ଣ୍ଣ କରାଯାଇଛି । ସେଗୁଡ଼ିକ ମଧ୍ୟରେ ୪ଟି ସ୍କୁଲଗୃହ, ୬ଟି କ୍ଷୁଦ୍ର ଜଳସେଚନ ଯୋଜନା, ୨୨ଟି ରାସ୍ତା, ୧୨ଟି କୂପ, ୯ଟି ପୋଖରୀ, ୨ଟି ପଞ୍ଚାୟତ ଗୃହ, ଗୋଟିଏ ଯୁବକ ସଂଘ ଗୃହ, ଗୋଟିଏ ମାର୍କେଟ୍ ସେଡ୍ ଏବଂ ଆଦିବାସୀ-ହରିଜନଙ୍କ

ନିମନ୍ତେ ନିର୍ମିତ ୧୨ଟି ବାସଗୃହ ଅନ୍ତର୍ଭୁକ୍ତ । ଏହାଛଡ଼ା ୧୮ଟି ପ୍ରକଳ୍ପ ନିର୍ମାଣାଧୀନ ଅଛି । ଏସବୁ ବାବଦରେ ୧୧ଲକ୍ଷ ୯୦ ହଜାର ଟଙ୍କା ବ୍ୟୟ କରାଯାଇଛି ବୋଲି ଏକ ସମୀକ୍ଷାରୁ ପ୍ରକାଶ ।

ଗତ ୬ ତାରିଖ ଦିନ ଶିକ୍ଷା, କ୍ରୀଡ଼ା ଓ ଯୁବ କଲ୍ୟାଣ ମନ୍ତ୍ରୀ ଶ୍ରୀ ଯଦୁନାଥ ଦାଶ ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଏହି ବ୍ଲକର ବିଂଶଦଫା କାର୍ଯ୍ୟକ୍ରମର ଅଗ୍ରଗତି ସଂପର୍କରେ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇଥିଲା । ସମୀକ୍ଷାରୁ ପ୍ରକାଶ ଯେ ଗତ ଆର୍ଥିକ ବର୍ଷଠାରୁ ଏ ପର୍ଯ୍ୟନ୍ତ ଆର: ଏଲ୍: ଇ: ଜି: ପି: ରେ ୧୮ଟି ସ୍କୁଲଗୃହ ସଂପୂର୍ଣ୍ଣ କରାଯାଇଛି ଏବଂ ୧୧ଟି ଗୃହ ନିର୍ମାଣାଧୀନ ଅଛି । ଏ ବାବଦରେ ଏହି ସମୟ ମଧ୍ୟରେ ମୋଟ ୪ଲକ୍ଷ ୨୪ ହଜାର ୭୫୧ ଟଙ୍କା ବ୍ୟୟ କରାଯାଇଛି ।

ଏହି ବ୍ଲକରେ ଆଇ. ଆର. ଡ଼ି. କାର୍ଯ୍ୟକ୍ରମରେ ୧୯୮୬–୮୭ରେ ୫୯୦ଟି ପରିବାରଙ୍କୁ ଏବଂ ଇ. ଆର. ଆର. ପି. ରେ ୩୯୬ଟି ପରିବାରଙ୍କୁ ବିଭିନ୍ନ କାର୍ଯ୍ୟକ୍ରମରେ ଥଇଥାନ କରାଯାଇଛି । 'ଟ୍ରାଇସେମ୍' କାର୍ଯ୍ୟକ୍ରମରେ ୧୧୮ ଜଣଙ୍କୁ ତାଲିମ ଦିଆଯାଇ ୭୮ ଜଣଙ୍କୁ ଥଇଥାନ କରାଯାଇଛି । ପାନୀୟ ଜଳ ବ୍ୟବସ୍ଥା ନ ଥିବା ୭୯ଟି ଗ୍ରାମରେ ନଳକୂପର ବ୍ୟବସ୍ଥା କରାଯାଇଛି । ଚଳିତବର୍ଷ ୬,୯୬୩ ଜଣ ପିଲାଙ୍କୁ ପ୍ରାଥମିକ ସ୍କୁଲରେ ଭର୍ତ୍ତି କରାଯାଇଛି ।

## ଜଳସେଚନ ଓ ଶକ୍ତି ବିଭାଗରେ କଂପ୍ୟୁଟର ପ୍ରଚଳନ ବ୍ୟବସ୍ଥା

ଜଳସେଚନ ଓ ଶକ୍ତି ବିଭାଗର କାର୍ଯ୍ୟକୁ ଅଧିକ ଗତିଶୀଳ କରିବା ଉଦ୍ଦେଶ୍ୟରେ ସଂପ୍ରତି ସଚିବାଳୟ ଓ ଅନ୍ୟାନ୍ୟ କାର୍ଯ୍ୟାଳୟଗୁଡ଼ିକରେ କଂପ୍ୟୁଟର ବ୍ୟବହାରକୁ ଗୁରୁତ୍ୱ ଦିଆଯାଇଛି । ଏହାର ପ୍ରଚଳନ ଫଳରେ ବହୁ ଜଟିଳ କାର୍ଯ୍ୟକୁ ଅତି ସହଜରେ ଏବଂ ଖୁବ୍ କମ୍ ସମୟ ମଧ୍ୟରେ ସଂପାଦନ କରାଯାଇ ପାରୁଛି । ଏବେ କଂପ୍ୟୁଟର ଏହି ବିଭାଗର ଅଫିସର ଓ ଇଂଜିନିୟରମାନଙ୍କ ମନରେ ନୂତନ ପ୍ରେରଣା ଆଣିଦେଇଛି । ଗୋଟିଏ ଜଳସେଚନ ପ୍ରକଳ୍ପର ବ୍ୟୟ ଅଟକଳ ତଥା ଆବଶ୍ୟକ ପଡୁଥିବା ନିର୍ମାଣ ସାମଗ୍ରୀର ବିବରଣୀ ଅତି ଅଳ୍ପ ସମୟ ମଧ୍ୟରେ କଂପ୍ୟୁଟର ଯୋଗାଇ ଦେଉଛି । ଏହି କାର୍ଯ୍ୟକ୍ରମରେ ବିଭାଗୀୟ ଅଫିସର ଓ ଇଂଜିନିୟରମାନଙ୍କୁ ତାଲିମ ଦେବା ପାଇଁ ସଂପ୍ରତି ରାଜଧାନୀ ସଚିବାଳୟଠାରେ ଏକ ଆଠଦିନିଆ ତାଲିମ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ବିଭାଗୀୟ ଅଫିସର ଓ ଇଂଜିନିୟରଙ୍କୁ ମିଶାଇ ମୋଟ ୨୦ ଜଣଙ୍କୁ ତାଲିମ ଦିଆଯାଇଥିଲା । ଡେପୁଟି ସେକ୍ରେଟେରୀଙ୍କଠାରୁ ଆରମ୍ଭ କରି ସେକ୍ସନ ଅଫିସର ପର୍ଯ୍ୟନ୍ତ ଏବଂ ବିଭିନ୍ନ ପାହ୍ୟାର ଇଂଜିନିୟରମାନଙ୍କୁ ତାଲିମ ଦିଆଗଲା ।

ଉଦ୍‌ଯାପନ ଦିବସରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ତାଲିମପ୍ରାପ୍ତ ବିଭାଗୀୟ ଅଫିସରମାନଙ୍କୁ ପ୍ରମାଣପତ୍ର ପ୍ରଦାନ କରିଥିଲେ । ସେମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଲେ ଯେ ଏହି ନୂତନ ଜ୍ଞାନ ଆହରଣ କରି ବିଭିନ୍ନ ପ୍ରକଳ୍ପରେ କାମ କରୁଥିବା ଇଂଜିନିୟରମାନେ ସେମାନଙ୍କର କାର୍ଯ୍ୟକୁ ସୁଗମ କରିପାରିବେ । ରାଜ୍ୟର ... ପ୍ରକଳ୍ପକୁ କଂପ୍ୟୁଟର ଯୋଗାଇ ଦେବାରେ ସରକାର କ... ଅବହେଳା କରିବେନାହିଁ । ଏହି କଂପ୍ୟୁଟର ପ୍ରଚଳନ ଫ... ଇଂଜିନିୟରମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ... ହୋଇ ପାରିବ ବୋଲି ମୁଖ୍ୟମନ୍ତ୍ରୀ ଆଶା ପ୍ରକାଶ କରିଥି... ସେ କହିଲେ ଯେ ବିଭିନ୍ନ ପ୍ରକଳ୍ପଗୁଡ଼ିକ ନିର୍ଦ୍ଧାରିତ ସମ... ସଂପୂର୍ଣ୍ଣ ହୋଇପାରୁନାହିଁ । ଏପରି ପ୍ରକଳ୍ପଗୁଡ଼ିକୁ ନିର୍ଦ୍ଧା... ସମୟ ମଧ୍ୟରେ ଶେଷ କରିବା ପାଇଁ ରାଜ୍ୟ ସର... ତତ୍ପର । ଏଥିପାଇଁ ଯେଉଁ କ୍ଷେତ୍ରରେ ଅସୁବିଧା ଦେଖାଯ... ତାହା ଦୂର କରିବା ପାଇଁ ଚେଷ୍ଟିତହେବା ଆବଶ୍ୟକ ... ତଥ୍ୟ ସଂଗ୍ରହପାଇଁ କଂପ୍ୟୁଟର ଏକ ସହାୟକ ... ସିଦ୍ଧାନ୍ତ ଗ୍ରହଣ କରିବା ପାଇଁ ଅଧିକାର ପ୍ରାପ୍ତ ବ୍ୟକ୍ତି... ନିମନ୍ତେ କଂପ୍ୟୁଟରର ମଧ୍ୟ ଆବଶ୍ୟକତା ରହିଛି । ... ସାହାଯ୍ୟରେ ସେମାନେ ପ୍ରତିମାସରେ ହିସାବ ତାଙ୍କ ପାଖ... ରଖି ପାରିବେ । ତେଣୁ, କଂପ୍ୟୁଟର ଏକ ନୂତନ ଦି... ସୃଷ୍ଟି କରିପାରିବ ।

ଉତ୍ସବରେ ଜଳସେଚନ ଓ ଶକ୍ତି ମନ୍ତ୍ରୀ ସେକ୍ ମତଲୁବ୍ ଅ... ଯୋଗ ଦେଇ କହିଲେ ଯେ କଂପ୍ୟୁଟର ତାଲିମ ପାଇଁ ... ବିଭିନ୍ନ ଇଂଜିନିୟର ଓ ଅଫିସରମାନେ କଂପ୍ୟୁଟର ବ୍ୟବହ... ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି । ସେ କହିଲେ ... ବର୍ତ୍ତମାନ ସୁଦ୍ଧା ପ୍ରତ୍ୟେକ ପ୍ରକଳ୍ପକୁ କଂପ୍ୟୁଟର ଯୋଗାଇ ଦିଆଯ... ନ ଥିଲେ ମଧ୍ୟ ଏହାର ଦାମ ଏବେ ଶସ୍ତା ପଡୁଥିବାରୁ ପ୍ରତ୍ୟେ... ପ୍ରକଳ୍ପକୁ ଏହା ଯୋଗାଇ ଦିଆଯାଇ ପାରିବ । ଜଣେ ତାଲିମପ୍ରା... ନିର୍ବାହୀ ଯନ୍ତ୍ରୀ ଶ୍ରୀ ଏସ୍. କିଂ. ସାମନ୍ତ କଂପ୍ୟୁଟର ବ୍ୟବହା... ସଂପର୍କରେ ନିଜର ଅଭିଜ୍ଞତା ବର୍ଣ୍ଣନା କରିଥିଲେ ।

## ଶାରୀରିକ ଅକ୍ଷମଙ୍କ ଥଇଥାନ ଲାଗି ବ୍ୟାପକ କାର୍ଯ୍ୟକ୍ରମ

ଶ୍ରୀ ମେଘନାଦ ଚୁଡୁ

ଅକ୍ଷମମାନଙ୍କର ସମସ୍ୟା ଏକ ବିଶ୍ୱ ସମସ୍ୟା । ଓଡ଼ିଶାରେ ଏହି ସମସ୍ୟା କୌଣସି ଦିଗରେ କମ୍ ନୁହେଁ । ୧୯୮୧ ଜନଗଣନା ଅନୁସାରେ ରାଜ୍ୟରେ ୬୧,୨୯୮ ଜଣ ସଂପୂର୍ଣ୍ଣ ଅକ୍ଷମ ବ୍ୟକ୍ତି ଥିବା ଜଣାଯାଏ । ସେମାନଙ୍କ ମଧ୍ୟରୁ ୨୭,୬୨୫ ଜଣ ସଂପୂର୍ଣ୍ଣ ଦୃଷ୍ଟିହୀନ, ୧୩,୭୬୨ ଜଣ ଶ୍ରୁତି ଶକ୍ତିହୀନ ଓ ୧୯,୯୧୧ ଜଣ ବିକଳାଙ୍ଗ ଅଟନ୍ତି । ପୂର୍ବେ ଏହି ଅକ୍ଷମ ବ୍ୟକ୍ତିମାନେ ଯୌଥ ପରିବାର ଓ ଧର୍ମାନୁଷ୍ଠାନ ... ମାନଙ୍କର ଦୟାର ପାତ୍ର ଥିଲେ । ସମାଜର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେମାନଙ୍କୁ ଦୟାର ପାତ୍ର ପରିବର୍ତ୍ତେ ଆତ୍ମନିର୍ଭରଶୀଳ ହେବା ପାଇଁ ସରକାରୀ ପ୍ରତିଷ୍ଠାନର ଉପଲବ୍ଧି କରାଯାଇ ... ଶିକ୍ଷା, ବୈଷୟିକ ତାଲିମ ଓ ବିଭିନ୍ନ ପ୍ରକାର ସାହାଯ୍ୟ ଦ୍ୱାରା ... ଏହି ଅକ୍ଷମମାନଙ୍କର ଅପୁରନ୍ତ ଶକ୍ତିର ପୂର୍ଣ୍ଣ ବିକାଶର ପ୍ରଚେଷ୍ଟା ଅବ୍ୟାହତ ରହିଛି ।

ଓଡ଼ିଶାରେ ଅକ୍ଷମମାନଙ୍କ ଥଇଥାନ ପାଇଁ ରାଜ୍ୟ ସରକାର ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସଂପୂର୍ଣ୍ଣ ଦୃଷ୍ଟିହୀନ ଓ ବିକଳାଙ୍ଗମାନଙ୍କ ପାଇଁ ଅକ୍ଷମ ଭତ୍ତା ବ୍ୟବସ୍ଥା କରାଯାଇଛି । ବିକଳାଙ୍ଗ... ମାନଙ୍କୁ ସରକାରୀ ସ୍ତରରେ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକ୍ଷମ ... ନିମନ୍ତେ ସାହାଯ୍ୟ ଓ ସ୍ୱତନ୍ତ୍ର ଉପକରଣ ଦେଇ କାର୍ଯ୍ୟକ୍ଷମ କରାଯାଉ... ଆତ୍ମ ନିଯୁକ୍ତି ଦିଗରେ ସାହାଯ୍ୟ କରିବା ପାଇଁ ବୈଷୟିକ ତାଲିମ...

ଦେଇ ସେମାନଙ୍କୁ ଆଇ. ଆର. ଡି. ଓ ଟି. ଆର, ଆଇ, ପି, ଯୋଜନା ମାଧ୍ୟମରେ ଥଇଥାନ କରାଯାଉଛି । ଏତଦ୍‌ବ୍ୟତୀତ ଦୃଷ୍ଟିହୀନ, ଶ୍ରୁତିଶକ୍ତିହୀନ ଓ ମାନସିକ ଅପରିପକ୍ୱଙ୍କ ଶିକ୍ଷା ନିମନ୍ତେ ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପନ ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ଅଧିକ ଅନୁଦାନ ଶିକ୍ଷାବୃତ୍ତି ଓ ଆବଶ୍ୟକ ଶିକ୍ଷା ଉପକରଣ ଏବଂ ଗୃହ ନିମନ୍ତେ ସାହାଯ୍ୟ ବ୍ୟବସ୍ଥା କରାଯାଉଛି । ଏସବୁ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଷଷ୍ଠ ଯୋଜନା ଶେଷ ଆଡ଼କୁ ଅଧିକ ଦୃଷ୍ଟି ଦିଆଯାଉଛି ଓ ସପ୍ତମ ଯୋଜନା ପ୍ରାରମ୍ଭରୁ ଏହା ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି । ଏ ବାବଦରେ ଷଷ୍ଠ ଯୋଜନାର ପ୍ରଥମ ବର୍ଷରେ ୨.୨୭ ଲକ୍ଷ ଟଙ୍କା ବ୍ୟୟବରାଦ ଥିବା ସ୍ଥଳେ ୧୯୮୪-୮୫ରେ ଏହା ୧୫.୯୮ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଉଛି । ସେହିପରି ସପ୍ତମ ଯୋଜନାର ପ୍ରଥମ ବର୍ଷରେ ୫୫.୬୧ ଲକ୍ଷ ଟଙ୍କା, ୧୯୮୬-୮୭ରେ ୬୪.୧୬ ଲକ୍ଷ ଟଙ୍କା ଏବଂ ୧୯୮୭-୮୮ରେ ୬୬.୭୩ ଲକ୍ଷ ଟଙ୍କାକୁ ବ୍ୟୟ ବରାଦ ବୃଦ୍ଧି ପାଉଛି । ଷଷ୍ଠ ଯୋଜନା ତୁଳନାରେ ଏହି ବୃଦ୍ଧିର ପରିମାଣ ଶତକଡ଼ା ୪୦୦ ଭାଗରୁ ଅଧିକ । ଅଣ-ଯୋଜନା ବାବଦରେ ମଧ୍ୟ ଷଷ୍ଠ ଯୋଜନା କାଳରେ ୨୨.୩୧ ଲକ୍ଷ ଟଙ୍କା ବ୍ୟୟ ହୋଇଥିବା ସ୍ଥଳେ ସପ୍ତମ ଯୋଜନାର ପ୍ରଥମ ତିନିବର୍ଷରେ ୧୫୬.୭୪ ଲକ୍ଷ ଟଙ୍କାକୁ ବୃଦ୍ଧି ପାଉଛି ।

ବୈଷୟିକ ତାଲିମ୍ ଓ ଥଇଥାନ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମନ୍ତେ ବୈଷୟିକ ଥଇଥାନ କେନ୍ଦ୍ର ଓ ଜିଲ୍ଲା ଥଇଥାନ କେନ୍ଦ୍ର ମଧ୍ୟ କାର୍ଯ୍ୟକରୁଛି ।

ଷଷ୍ଠ ଯୋଜନାର ଶେଷ ସୁଦ୍ଧା ଅକ୍ଷମମାନଙ୍କ ଶିକ୍ଷା ନିମନ୍ତେ ତିନିଗୋଟି ସ୍ୱତନ୍ତ୍ର ସରକାରୀ ବିଦ୍ୟାଳୟ ସ୍ଥାପନ କରାଯାଇଥିଲା । ଏତଦ୍‌ବ୍ୟତୀତ ୭ଗୋଟି ସ୍ୱତନ୍ତ୍ର ଅନୁଷ୍ଠାନ ପରିଚାଳନା ନିମନ୍ତେ ବେସରକାରୀ ଅନୁଷ୍ଠାନମାନଙ୍କୁ ସରକାରୀ ଅନୁଦାନ ଦିଆଯାଉଥିଲା । ସପ୍ତମ ଯୋଜନାର ପ୍ରାରମ୍ଭରୁ ପ୍ରତ୍ୟେକ ଜିଲ୍ଲାରେ ଅତି କମ୍‌ରେ ଦୃଷ୍ଟିହୀନଙ୍କ ପାଇଁ ଗୋଟିଏ ଉଚ୍ଚ ବିଦ୍ୟାଳୟ ଓ ବଧିରମାନଙ୍କ ପାଇଁ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିବା ନିମନ୍ତେ ବିଧିବଦ୍ଧ ନିଷ୍ପତ୍ତି ନିଆଗଲା । ଏହି ନିଷ୍ପତ୍ତି ଅନୁଯାୟୀ ବର୍ତ୍ତମାନ ସୁଦ୍ଧା ରାଜ୍ୟରେ ବଧିରମାନଙ୍କ ପାଇଁ ୮ଗୋଟି ମଧ୍ୟ ଇଂରାଜୀ ବିଦ୍ୟାଳୟ, ଦୃଷ୍ଟିହୀନଙ୍କ ପାଇଁ ୭ଗୋଟି ଉଚ୍ଚ ବିଦ୍ୟାଳୟ ସ୍ଥାପନ କରାଯାଇଛି । ଏତଦ୍‌ବ୍ୟତୀତ ମାନସିକ ଅପରିପକ୍ୱଙ୍କ ପାଇଁ ୩ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ ମଧ୍ୟ ସ୍ଥାପନ କରାଯାଇଛି । ଏହିପରି ସ୍ୱେଚ୍ଛାସେବୀ ଅନୁଷ୍ଠାନ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ଦୃଷ୍ଟିହୀନଙ୍କ ପାଇଁ ୧୧ଟି, ବଧିରମାନଙ୍କ ପାଇଁ ୧୦ଟି ଓ ମାନସିକ ଅପରିପକ୍ୱଙ୍କ ପାଇଁ ୨ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପନ ହୋଇପାରିଛି । ଚଳିତ ବର୍ଷ ବଲାଙ୍ଗୀର ଓ ବାଲେଶ୍ୱର ଜିଲ୍ଲାମାନଙ୍କରେ ଦୃଷ୍ଟିହୀନ ଓ ବଧିରଙ୍କ ନିମନ୍ତେ ସ୍ୱତନ୍ତ୍ର ବିଦ୍ୟାଳୟମାନ ସ୍ଥାପନ କରାଯାଇଛି ।

ଇତି ମଧ୍ୟରେ ପ୍ରତ୍ୟେକ ରାଜସ୍ୱ କମିଶନର ଡିଭିଜନ୍‌ରେ ଗୋଟିଏ ଲେଖାଏଁ ମାନସିକ ଅପରିପକ୍ୱଙ୍କ ପାଇଁ ବିଦ୍ୟାଳୟ, ପ୍ରତି ଜିଲ୍ଲାରେ ବାଳକ ଓ ବାଳିକାମାନଙ୍କ ଲାଗି ସ୍ୱତନ୍ତ୍ର ଭାବରେ ଗୋଟିଏ ଲେଖାଏଁ ସମନ୍ୱିତ ଶିକ୍ଷା କେନ୍ଦ୍ର ଏବଂ ଛାତ୍ରାବାସ ସ୍ଥାପନ ନିମନ୍ତେ ସରକାର ନିଷ୍ପତ୍ତି କରିଛନ୍ତି । ଏହି ଅନ୍ତେବାସୀମାନଙ୍କୁ ଶିକ୍ଷାବୃତ୍ତି ଦେବା ନିମନ୍ତେ ମଧ୍ୟ ସ୍ଥିର ହୋଇଛି । ଶିକ୍ଷାର ମାନ ବୃଦ୍ଧି ପାଇଁ ସ୍ୱତନ୍ତ୍ର ତାଲିମ୍ ପ୍ରାପ୍ତ ଶିକ୍ଷକମାନଙ୍କୁ ସରକାରୀ ତାଲିମ୍‌ପ୍ରାପ୍ତ ଶିକ୍ଷକଙ୍କ ଦରମାହାର ପ୍ରଯୁଜ୍ୟ କରିବା ନିମନ୍ତେ ପଦକ୍ଷେପ ନିଆଯାଉଛି ।

ଏହି ଶିକ୍ଷାର ପ୍ରସାର ତାଲିମ୍‌ପ୍ରାପ୍ତ ଶିକ୍ଷକଙ୍କ ଅଭାବରୁ ବହୁ କ୍ଷେତ୍ରରେ ବାଧାପ୍ରାପ୍ତ ହେଉଥିଲା । ୧୯୮୬ ମସିହା ଅଗଷ୍ଟ ୫ ତାରିଖ ଦିନ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରଶିକ୍ଷଣ ପ୍ରତିଷ୍ଠାନରେ ଆଲି ଆବରଜଙ୍ଗ ଏନ୍, ଆଇ, ଏଚ୍, ଏଚ୍, ସହଯୋଗରେ ବଧିରମାନଙ୍କ ପାଇଁ ଏକ ଶିକ୍ଷକ ତାଲିମ କେନ୍ଦ୍ର ଖୋଲାଯାଇଥିଲା । ସେଠାରୁ ୨୦ଜଣ ଶିକ୍ଷକ ତାଲିମ୍ ପାଇ ସାରିଲେଣି ଏବଂ ୨୦ଜଣ ଶିକ୍ଷକ ବର୍ତ୍ତମାନ ତାଲିମ୍ ପାଉଛନ୍ତି । ଗତ ୧୫ ତାରିଖ ଦିନ ଏନ୍, ଆଇ, ଭି, ଏଚ୍, ଙ୍କ ସହଯୋଗରେ ଦୃଷ୍ଟିହୀନମାନଙ୍କର ଶିକ୍ଷକମାନଙ୍କ ପାଇଁ ସେଠାରେ ଏକ ତାଲିମ କେନ୍ଦ୍ର ଉଦ୍‌ଘାଟିତ ହୋଇଛି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରିଛନ୍ତି । ଏହା ଫଳରେ ବହୁଦିନରୁ ଅନୁଭୂତ ହେଉଥିବା ଅଭାବ ପୂରଣ ହୋଇପାରିଛି ।

ରାଜ୍ୟରେ ଶାରୀରିକ ଅକ୍ଷମମାନଙ୍କ ଶିକ୍ଷା ପାଇଁ ତାଲିମ୍‌ପ୍ରାପ୍ତ ଶିକ୍ଷକମାନଙ୍କର ଅଭାବକୁ ଦୂର କରିବା ଏବଂ ଭାରତ ସରକାରଙ୍କର ନୂତନ ଶିକ୍ଷାନୀତିକୁ କାର୍ଯ୍ୟକାରୀ କରିବା ଦୃଷ୍ଟିରୁ ଏହି ଅନୁଷ୍ଠାନର ଆବଶ୍ୟକତା ଅତ୍ୟନ୍ତ ଯଥାର୍ଥ । ଏହି ଅନୁଷ୍ଠାନଟିକୁ ପୂର୍ବାଂଚଳ ପାଇଁ ଏକ ଅଗ୍ରଣୀ ଅନୁଷ୍ଠାନ ଭାବରେ ଗଢ଼ିବା ନିମନ୍ତେ ଭାରତ ସରକାର ସବୁ ପ୍ରକାର ସହାୟତା ଦେବେ ବୋଲି ଆଶା କରାଯାଏ ।

## ୧୧,୯୬୮ ବାସଗୃହ ନିର୍ମାଣାଧୀନ

ରାଜ୍ୟର ସହର ଓ ଗ୍ରାମାଞ୍ଚଳରେ ବିଭିନ୍ନ ଆୟକାରୀ ବ୍ୟକ୍ତିଙ୍କ ପାଇଁ ୧୧,୯୬୮ଟି ବାସଗୃହ ନିର୍ମାଣ କରାଯାଉଛି ଏବଂ ତନ୍ମଧ୍ୟରୁ କେତେକ ଗୃହ ସଂପୂର୍ଣ୍ଣ ହେବାକୁ ଯାଉଛି । ୩୨କୋଟି ୧୯ଲକ୍ଷ ୫୬ହଜାର ଟଙ୍କା ବ୍ୟୟ ଅଟକଳରେ ରାଜ୍ୟ ଗୃହ ନିର୍ମାଣ ବୋର୍ଡର ଉଦ୍ୟମରେ ନିର୍ମିତ ହେଉଥିବା ଏହି ସବୁ ଗୃହ ପାଇଁ 'ହୁଡ୍‌କୋ' ଓ ରାଜ୍ୟସରକାରଙ୍କ ସମେତ ବିଭିନ୍ନ ସୂତ୍ରରୁ ଋଣ ଆକାରରେ ୨୦କୋଟି ୫୩ଲକ୍ଷ ୨୯ହଜାର ଟଙ୍କା ମଂଜୁର କରାଯାଇଛି ।

ଏହିସବୁ ଗୃହ ମଧ୍ୟରେ ନିମ୍ନ ଆୟକାରୀ ବ୍ୟକ୍ତିଙ୍କ ପାଇଁ ସର୍ବାଧିକ ୭,୦୩୧ଟି ଗୃହ ଅନ୍ତର୍ଭୁକ୍ତ । ସେହିପରି ଆର୍ଥିକ ଦୁର୍ବଳ ଶ୍ରେଣୀ ବ୍ୟକ୍ତିଙ୍କ ପାଇଁ ୨,୬୨୪ଟି, ମଧ୍ୟବିତ୍ତ ଶ୍ରେଣୀଙ୍କ ପାଇଁ ୧,୦୦୧ଟି ଓ ଉଚ୍ଚ ଆୟକାରୀଙ୍କ ପାଇଁ ୧୭୩ଟି ଗୃହ ନିର୍ମାଣ କରାଯାଉଛି । ଏହା ବ୍ୟତୀତ ଭୁବନେଶ୍ୱରଠାରେ ଭଡ଼ା ସୂତ୍ରରେ ଯୋଗାଇ ଦେବା ଲାଗି ନିର୍ମିତ ହେଉଥିବା ୧,୦୦୨ଟି ଗୃହ ସମେତ ସମୁଦାୟ ୧,୧୦୯ଟି ବିଭିନ୍ନ ପ୍ରକାର ଗୃହର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଉଛି ।

'ହୁଡ୍‌କୋ'ର ଆର୍ଥିକ ସହାୟତାରେ ବ୍ରହ୍ମପୁରର ଆମପୁଆ, ବାଲେଶ୍ୱରର ବାଲିଆ ଓ କାଳିଦାସପୁର, ରାଉରକେଲାର ଛେଣ୍ଡ, ଢେଙ୍କାନାଳର ବିକ୍ରମପୁର, ସମ୍ବଲପୁରର ମୋଦିପଡ଼ା, ଭୁବନେଶ୍ୱରର ଡୁମ୍‌ଡୁମା, ଚନ୍ଦ୍ରଶେଖରପୁର ଓ ସତ୍ୟନଗର, ଖୋର୍ଦ୍ଧାର ଗଡ଼ମୁକୁନ୍ଦ ପ୍ରସାଦ ଓ ଗୁରୁଜଙ୍ଗ, କେନ୍ଦୁଝରର

ଧନୁର୍ଜୟପୁର ରାୟଗଡ଼ାର ତୁମ୍ବିଗଡ଼ା, ପୁରୀର ଚନ୍ଦ୍ରିଆ ପଣ୍ଡା, ଲୁହନ, ସୁନାବେଡ଼ାର କାକୀ, ଏବଂ ସୁନ୍ଦରଗଡ଼ର ବଡ଼ ପତ୍ରାପାଲୀଠାରେ ସମୁଦାୟ ୧୧,୪୬୨ଟି ଗୃହନିର୍ମିତ ହେଉଛି । ଏ ବାବଦରେ ହୁଡ୍‌କୋ ୨୦କୋଟି ୪୫ଲକ୍ଷ ୨୦ ହଜାର ଟଙ୍କା ଋଣ ଯୋଗାଇଦେବେ । ଏହା ବ୍ୟତୀତ ଦଶରଥପୁର ଓ ସୋମପଡ଼ାଠାରେ ୬ଲକ୍ଷ ୬୦ହଜାର ଟଙ୍କା ବ୍ୟୟ ଅଟକଳରେ ବିଡ଼ି ଶ୍ରମିକମାନଙ୍କପାଇଁ ୧୦୦ଟି ଗୃହ ନିର୍ମିତ ହେଉଛି । ଏ ବାବଦରେ ରାଜ୍ୟ ସରକାର ୩ଲକ୍ଷ ଟଙ୍କା ଋଣ ଯୋଗାଇ ଦେବେ । ସେହିପରି କଟକ ଓ ପୁରୀ ଜିଲ୍ଲାରେ ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନା ଅନୁଯାୟୀ ୧୩୬ଟି ଗୃହ ନିର୍ମିତ ହେଉଛି ଏବଂ ଏଥିପାଇଁ ହୁଡ୍‌କୋ ୩ଲକ୍ଷ ୮୬ହଜାର ଟଙ୍କା ଋଣ ମଂଜୁର କରିଛନ୍ତି ।

## ସ୍ୱାଧୀନତା ସୁରକ୍ଷା ପାଇଁ ସାମୂହିକ ଉଦ୍ୟମ ଦରକାର

ଭୂପିନ୍ଦର ସିଂହ

ସ୍ୱାଧୀନତାର ୪୦ତମ ବାର୍ଷିକୋତ୍ସବ ଉପଲକ୍ଷେ ଫୁଲବାଣୀ ଠାରେ ଆୟୋଜିତ ଜିଲ୍ଲାସ୍ତରୀୟ ପରେଡ୍‌ରେ ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଜାତୀୟ ପତାକା ଉତ୍ତୋଳନ କରି ଅଭିବାଦନ ଗ୍ରହଣ କରିଥିଲେ । ପ୍ରବଳ ବର୍ଷା ସତ୍ତ୍ୱେ ମନ୍ତ୍ରୀ ବୁଲି ବୁଲି ପରେଡ୍ ପରିଦର୍ଶନ କରିଥିଲେ । ଏହାପରେ ସମବେତ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇ ଶ୍ରୀ ସିଂହ ଫୁଲବାଣୀ ଜିଲ୍ଲାର ଐତିହାସିକ କଂଧମେଳି କିପରି ଶକ୍ତିଶାଳୀ ବ୍ରିଟିଶ୍‌ରାଜ ବିରୁଦ୍ଧରେ ସଂଘବଦ୍ଧ ପ୍ରତିରୋଧ କରିଥିଲା, ତାହା ସ୍ମରଣ କରାଇ ଦେଇଥିଲେ । ଏହି ମେଳିର ସର୍ଦ୍ଦାର ଦୋରା ବିଶୋଇ, ଚକ୍ର ବିଶୋଇ, ନବଘନ କହଁର ଓ ମାଧବ କହଁର ପ୍ରମୁଖ ବୀର ଯୋଦ୍ଧାମାନେ ତାଙ୍କର ଅପୂର୍ବ ସାହସିକତା ଓ ଦେଶପ୍ରେମ ଯୋଗୁଁ ଅମର ହୋଇ ରହିଛନ୍ତି । ସେପରି ବୀର ଶହୀଦମାନଙ୍କର ଆତ୍ମବଳୀ ଯୋଗୁଁ ମିଳିଥିବା ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ଆହ୍ୱାନ ଦେଇ ଶ୍ରୀ ସିଂହ କହିଲେ ଯେ ଦେଶର ସଂହତି ଓ ଐକ୍ୟ ଯେପରି ବିପନ୍ନ ନ ହୁଏ, ସେ ଦିଗରେ ସତର୍କ ରହିବା ଆମର ପରମ କର୍ତ୍ତବ୍ୟ । ଏଥିପାଇଁ ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟିକତା, ଭାଷା ଓ ଆଂଚଳିକତାର ସଂକୀର୍ଣ୍ଣ ଭେଦାଭେଦ ଭୁଲି ଏବଂ ନିଜକୁ ସମଗ୍ର ଭାରତର ସନ୍ତାନ ମନେକରି ଅର୍ଥନୈତିକ ପ୍ରଗତିପାଇଁ ସମ୍ମିଳିତ ଉଦ୍ୟମ କରିବାକୁ ଶ୍ରୀ ସିଂହ କହିଥିଲେ । ଓଡ଼ିଶାରେ ରାଜନୈତିକ ଓ ପ୍ରଶାସନିକ ସ୍ଥିରତା ବଜାୟ ରହିଥିବା ଯୋଗୁଁ ବିଭିନ୍ନ କ୍ଷେତ୍ରରେ ପ୍ରଗତି ତ୍ୱରାନ୍ୱିତ ହେଉଥିବାର ସେ ସୂଚନା ଦେଇଥିଲେ ।

ଏହାପରେ ଶ୍ରୀ ସିଂହ ଜିଲ୍ଲାସ୍ତରରେ ଶ୍ରେଷ୍ଠ ବିବେଚିତ ଫୁଲବାଣୀ ବିଜ୍ଞାପିତ ଅଂଚଳ ପରିଷଦକୁ ଅଧ୍ୟକ୍ଷ ତଥା ସ୍ଥାନୀୟ ଏସ୍.ଡି.ଓ. ଶ୍ରୀ ପଣ୍ଡାଙ୍କ କରିଆରେ ଟ୍ରଫି ପ୍ରଦାନ କରିଥିଲେ । ପ୍ରାଥମିକ ସ୍ତରରୁ ମହାବିଦ୍ୟାଳୟ ପର୍ଯ୍ୟନ୍ତ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ଆୟୋଜିତ ବିଭିନ୍ନ ପ୍ରତିଯୋଗିତାର ଶ୍ରେଷ୍ଠ ପ୍ରତିଯୋଗୀମାନଙ୍କୁ ପୁରସ୍କାର ଏବଂ ତିନିଜଣ ଶାରୀରିକ ବିକଳାଙ୍ଗଙ୍କୁ ହସ୍ତଚାଳିତ ଗାଡ଼ି ବଣ୍ଟନ କରିଥିଲେ ।

ଉତ୍ସବ ଶେଷରେ ଶ୍ରୀ ସିଂହ ସ୍ଥାନୀୟ ଚିକିତ୍ସାଳୟକୁ ଯାଇ ରୋଗୀମାନଙ୍କୁ ଫଳ ବଣ୍ଟନ କରିଥିଲେ ଏବଂ ଚିକିତ୍ସାଳୟ ପ୍ରାଙ୍ଗଣରେ ଚାରା ରୋପଣ କରିଥିଲେ । ସହରବାସୀଙ୍କ ସୁବିଧା ପାଇଁ ନିର୍ମିତ ଏକ ସୁଲଭ ଶୌଚାଳୟ ଓ ଖଜୁରୀପଡ଼ା ବ୍ଲକ୍‌ଠାରେ ସମନ୍ୱିତ ଶିଶୁ ବିକାଶ କାର୍ଯ୍ୟକ୍ରମ ଅନୁଯାୟୀ ନିର୍ମିତ ଏକ ନୂତନ କାର୍ଯ୍ୟାଳୟ ଶ୍ରୀ ସିଂହ ଉଦ୍‌ଘାଟନ କରିଥିଲେ । ପୂର୍ବରୁ ସେ ପିଲସାଲୁକି ଜଳସେଚନ ପ୍ରକଳ୍ପ ଓ ନିକଟସ୍ଥ ନବୋଦୟ ବିଦ୍ୟାଳୟ ପରିଦର୍ଶନ କରିଥିଲେ ଏବଂ ଛାତ୍ର ଛାତ୍ରୀମାନଙ୍କୁ ସ୍ୱାଧୀନତା ଦିବସର ତାତ୍ପର୍ଯ୍ୟ ବୁଝାଇଥିଲେ ।

ଅପରାହ୍ଣରେ ଫୁଲବାଣୀ ଟାଉନକ୍ଲବ୍ ଓ ରିଜର୍ଭ ପୁଲିସ ଦଳ ମଧ୍ୟରେ କରୋନେସନ ପଡ଼ିଆରେ ଆୟୋଜିତ ଏକ ପ୍ରଦର୍ଶନୀ ଫୁଟ୍‌ବଲ ପ୍ରତିଯୋଗିତାରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ୨–୧ ଗୋଲରେ ବିଜୟୀ ହୋଇଥିବା ପୁଲିସ ଦଳକୁ ସେ ଉତ୍ସାହିତ କରିଥିଲେ । ସଂଧ୍ୟାରେ ସ୍ଥାନୀୟ କନ୍ଧାନ କଳା ସଙ୍ଗମ ଲେଖକ ସାଂସ୍କୃତିକ ସଂବିତ୍ ଅନୁଷ୍ଠାନ ଓ ଫୁଲବାଣୀ କ୍ଲବ୍‌ର ମିଳିତ ଉଦ୍ୟମରେ ଆୟୋଜିତ କବିତା ପାଠୋତ୍ସବ ଓ ସଙ୍ଗୀତ କାର୍ଯ୍ୟକ୍ରମରେ ରାଷ୍ଟ୍ରମନ୍ତ୍ରୀ ଯୋଗ ଦେଇ ଉଦ୍‌ବୋଧନ ଦେଇଥିଲେ । ଏସବୁ ଉତ୍ସବରେ ଜିଲ୍ଲାପାଳ ଶ୍ରୀ ଉମେଶ ଚନ୍ଦ୍ର ଜେନା, ଲୋକସଭା ସଦସ୍ୟ ଶ୍ରୀ ରାଧାକାନ୍ତ ଦିଗାଲ ଓ ବିଧାୟକ ଶ୍ରୀ ଅଭିମନ୍ୟୁ ବେହେରାଙ୍କ ସମେତ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ ।

## ସୁଲଭ ଶୌଚାଳୟ ନିର୍ମାଣ

ଷଷ୍ଠ ଯୋଜନା କାଳରୁ ରାଜ୍ୟର ସହରାଞ୍ଚଳରେ ସର୍ବସାଧାରଣ ପାଇଖାନା (ସୁଲଭ ଶୌଚାଳୟ) ନିର୍ମାଣ କରିବା ସରକାର ଯେଉଁ ନିଷ୍ପତ୍ତି କରିଥିଲେ ତଦନୁଯାୟୀ ଗତ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୪୩ ଟି ଶୌଚାଳୟ ନିର୍ମାଣ ପାଇଁ ବ୍ୟବସ୍ଥା କରାଯାଇଛି । ଏ ବାବଦରେ ସରକାର ଋଣ ଓ ଅନୁଦାନ ଆକାରରେ ସମୁଦାୟ ୪୪ ଲକ୍ଷ ୧୬ ହଜାର ଟଙ୍କା ସାହାଯ୍ୟ ଯୋଗାଇ ଦେଇଛନ୍ତି ।

ଷଷ୍ଠ ଯୋଜନାରେ ପୁରୀ, ଭୁବନେଶ୍ୱର, ବ୍ରହ୍ମପୁର, ସମ୍ବଲପୁର, କଟକ, ବାରିପଦା, ଜୟପୁର, ଭଦ୍ରକ ଓ ବଲାଙ୍ଗିର ସହରମାନଙ୍କରେ ୨୦ଟି ଶୌଚାଳୟର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇ ତନ୍ମଧ୍ୟରୁ ୧୬ ଟି ସଂପୂର୍ଣ୍ଣ କରାଯାଇଛି । ଏ ବାବଦରେ ସରକାର ୯ ଲକ୍ଷ ୧୬ହଜାର ଟଙ୍କା ଋଣ ଏବଂ ୫ ଲକ୍ଷ ଟଙ୍କା ଅନୁଦାନ ଦେଇଥିଲେ ।

ସେହିପରି ସପ୍ତମ ଯୋଜନାର ପ୍ରଥମ ବର୍ଷ (୧୯୮୫-୮୬) ରେ ୧୫ଟି ସହରରେ ୧୫ଟି ଶୌଚାଳୟ ଏବଂ ଗତ ଆର୍ଥିକ ବର୍ଷ ୮ଟି ଶୌଚାଳୟ ନିର୍ମାଣ କରିବା ବାବଦରେ ଯଥାକ୍ରମେ ୧୫ ... ଟଙ୍କା ଏବଂ ୧୦ଲକ୍ଷ ୨୫ହଜାର ଟଙ୍କା ସରକାରୀ ଅନୁଦାନ ଦିଆଯାଇଛି । ଏହା ବ୍ୟତୀତ ୧୯୮୫-୮୬ ରେ ନିର୍ମାଣାଧୀନ ଥିବା ୧୫ଟି ଶୌଚାଳୟକୁ ପୂର୍ଣ୍ଣାଂଗ କରିବା ଲାଗି ... ୪ଲକ୍ଷ ୨୫ହଜାର ଟଙ୍କା ଅନୁଦାନ ଦିଆଯାଇଛି

ଚଳିତ ଆର୍ଥିକ ବର୍ଷରେ ୧୦ଟି ନୂତନ ଶୌଚାଳୟ ନିର୍ମାଣ କରିବା ବାବଦରେ ସଂପୃକ୍ତ ପୌର ସଂସ୍ଥାମାନଙ୍କୁ ୧୫...

ଟଙ୍କା ଅନୁଦାନ ଦେବାର ବ୍ୟବସ୍ଥା କରାଯାଉଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଶୌଚାଳୟଗୁଡିକର ନିର୍ମାଣ ବ୍ୟୟ ଅଟକଳର ଅର୍ଦ୍ଧେକ ଅର୍ଥ ରାଜ୍ୟ ସରକାର ଋଣ ଅନୁଦାନ ଆକାରରେ ଯୋଗାଇ ଦିଅନ୍ତି ଏବଂ ଅବଶିଷ୍ଟ ଅର୍ଦ୍ଧେକ ଅର୍ଥ ସଂପୃକ୍ତ ପୌର ସଂସ୍ଥାକୁ ବହନ କରିବାକୁ ପଡିଥାଏ । ଏଗୁଡିକର ନିର୍ମାଣ ଦାୟିତ୍ୱ ସୁଲଭ ଇଣ୍ଟର ନ୍ୟାସନାଲ ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ନିର୍ମାଣପରେ ଏହି ସଂସ୍ଥା ୩୦ ବର୍ଷ ପର୍ଯ୍ୟନ୍ତ ଶୌଚାଳୟଗୁଡ଼ିକର ପରିଚାଳନା କରିବେ । ତେଣୁ ସଂପୃକ୍ତ ପୌର ସଂସ୍ଥାଗୁଡିକୁ ଏଥିପାଇଁ କୌଣସି ଖର୍ଚ୍ଚ ବହନ କରିବାକୁ ପଡିବ ନାହିଁ ।

## ବଲାଙ୍ଗିର ଜିଲ୍ଲା ଗୁଡଭେଲାଗ୍ରାମଠାରେ ଆଇନ ସହାୟତା ଶିବିର

ତା୨୬-୪-୧୯୮୭ଦିନ ବଲାଙ୍ଗିର ଜିଲ୍ଲା ଅନ୍ତର୍ଗତ ଗୁଡଭେଲା ଗ୍ରାମଠାରେ ଜିଲ୍ଲା ଆଇନ ସହାୟତା ଓ ପରାମର୍ଶଦାତା କମିଟିର ଏକ ଶିବିର ଜିଲ୍ଲା ନ୍ୟାୟାଧୀଶ ଶ୍ରୀଯୁକ୍ତ ଗୋପରଂଜନ ଦୁବେଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ନଦୀ ଓ ପାହାଡ଼ଘେରା ଗୁଡଭେଲା ଅଂଚଳର ବହୁସଂଖ୍ୟକ ସାଧାରଣ ଜନତା, ଗରିବ, ହରିଜନ ଓ ଆଦିବାସୀ ଶ୍ରେଣୀରଲୋକେ ଆଇନ ସହାୟତା ପାଇବାପାଇଁ ଉପସ୍ଥିତ ହୋଇଥିଲେ । ଆଇନ ସହାୟତା ପାଇବାପାଇଁ ୮୬ଜଣ ବ୍ୟକ୍ତି ଦରଖାସ୍ତ କରିଥିଲେ । ସେଥିମଧ୍ୟରୁ ଘରଡ଼ିହ ଯୋଗାଣ ସଂପୃକ୍ତଥିବା ୫ଟି ଦରଖାସ୍ତକୁ ତୁରନ୍ତ ତହସିଲଦାରଂକ ବିଚାର ଓ ପଦକ୍ଷେପ ପାଇଁ ପଠାଗଲା ।

ଏହି ଉପଲକ୍ଷେ ଅନୁଷ୍ଠିତ ସାଧାରଣସଭାରେ ଜିଲ୍ଲା-ନ୍ୟାୟାଧୀଶ ଅଧ୍ୟକ୍ଷତା କରିଥିଲେ । ମୁଖ୍ୟ ଅତିଥି ବିଭାଗୀୟ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଫଣିନ୍ଦ୍ର ଭୂଷଣ ପଟ୍ଟନାୟକ ଏହି ଶିବିରର ଉଦ୍ଦେଶ୍ୟ ବୁଝାଇ ଗରିବଲୋକ ତଥା ହରିଜନ ଆଦିବାସୀ ଏବଂ ନିଃସହାୟ ସ୍ୱାମୀପରିତ୍ୟକ୍ତା ମହିଳାମାନଂକୁ ତଥା ନିର୍ଯ୍ୟାତିତ ଶିଶୁମାନଂକୁ କିଭଳିଭାବରେ ମାଗଣା ଆଇନ ସହାୟତା ଦିଆଯାଉଥାଏ ତାହାସବୁ ବୁଝାଇଥିଲେ । ଏହି ସଭାରେ ବିଭିନ୍ନ ବକ୍ତାମାନେ କମ୍ ସମୟମଧ୍ୟରେ ମାଲିମୋକଦ୍ଦମା ସବୁର ବିଚାରହେଲେ ପ୍ରକୃତ ନ୍ୟାୟ ମିଳିପାରିବ ଏବଂ କମଖର୍ଚ୍ଚରେ ସେଗୁଡ଼ିକ ଶୀଘ୍ର ଫଇସଲା ହୋଇପାରିବ ବୋଲି ମତପ୍ରଦାନ କରିଥିଲେ । ସେଥିପାଇଁ ଆଇନଜୀବୀମାନେ ମଧ୍ୟ ନିଷ୍ଠାରସହ ନିଜର କର୍ତ୍ତବ୍ୟ ସଂପାଦନ କରିବାକୁ ଏବଂ ଜନସାଧାରଣ ସଠିକ୍ ତଥ୍ୟ ଯୋଗାଇବାକୁ ପରାମର୍ଶ ଦିଆଯାଇଥିଲା ଏହିସଭାରେ ଭାଷଣ ଦେଇଥିବା ବକ୍ତାମାନେ ଯଥାକ୍ରମେ ଓକିଲ ଶ୍ରୀଯୁକ୍ତଅନନ୍ତ ପ୍ରସାଦ ପ୍ରଧାନ, ଗୁଡଭେଲାବ୍ଲକ୍ ଚେୟାରମ୍ୟାନ ଶ୍ରୀଯୁକ୍ତ ମତିରାମ ମାଝି, ପୂର୍ବତନ ଚେୟାରମ୍ୟାନ ଶ୍ରୀଯୁକ୍ତ ରୁଦ୍ରପ୍ରସାଦ ସିଂହଦେଓ, ପୂର୍ବତନ ଚେୟାରମ୍ୟାନ ଶ୍ରୀଯୁକ୍ତ ବିଧାନ ଚନ୍ଦ୍ର ପାଣିଗ୍ରାହୀ, ଓକିଲ ସଂଘର ବରିଷ୍ଠ ସଦସ୍ୟ ଶ୍ରୀଯୁକ୍ତ ପ୍ରଧାଂଶୁ ଶେଖର ମିଶ୍ର, ବରିଷ୍ଠ ଓକିଲ ଶ୍ରୀଯୁକ୍ତ ପର୍ଶୁରାମ ପୋତା, ଅତିରିକ୍ତ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଶାରଂଗଧର ରାୟଗୁରୁ, ଜିଲ୍ଲା ଆଇନ ସହାୟତା କମିଟିର ସଦସ୍ୟ ଶ୍ରୀ ସତ୍ୟାନଂଦ ସୁନା, ଗୁଡଭେଲା ଗ୍ରାମପଂଚାୟତ ସରପଂଚ ଶ୍ରୀ କ୍ଷମାସାଗର ସାହୁ, ଜିଲ୍ଲା ଆଇନ ସହାୟତା କମିଟିର ମହିଳା ସଦସ୍ୟା ଶ୍ରୀମତୀ ଅଜମଲ୍ ବେଗମ୍ ପ୍ରଭୃତି ।

ସଭାପତି ଅଭିଭାଷଣ କ୍ରମରେ ଜିଲ୍ଲା ନ୍ୟାୟାଧୀଶ ଶ୍ରୀଯୁକ୍ତ ଗୋପରଂଜନ ଦୁବେ ଜନସାଧାରଣଂକୁ ଆଇନ ପରାମର୍ଶ ସହାୟତା ପାଇଥିବା ସରକାରଂକ ଅଭିମୁଖ୍ୟ ବିଷୟରେ ଧାରଣା ଦେଇଥିଲେ । ସେଜିକେ ତଥା ବିଚାରପତିମାନେ ଗରିବ ଜନସାଧାରଣ, ହରିଜନ ଆଦିବାସୀ, ସ୍ୱାମୀପରିତ୍ୟକ୍ତା ମହିଳା, ଶିଶୁମାନଂକୁ ନିଜ ନିଜ ଚେମ୍ବରରେ ପରାମର୍ଶଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ବିଭିନ୍ନ ବକ୍ତାମାନଂକୁ ଦାବୀ, ଟିମରାଠାରେ ଏକ ଜୁଡ଼ିସିଆଲ ମାଜିଷ୍ଟ୍ରେଟ କୋର୍ଟ ସ୍ଥାପନକୁ ଯୁକ୍ତି ଯୁକ୍ତ କହି ସେ ବିଷୟରେ ସରକାରଂକ ଦୃଷ୍ଟି ଆକର୍ଷଣ କରିବାକୁ ପଦକ୍ଷେପ ନେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଆଇନ ସହାୟତା ପାଇବାପାଇଁ ଆବେଦନ ସକାଶେଥିବା ଦରଖାସ୍ତ ଫର୍ମସବୁ ମାଗଣାରେ ବି:ଡି:ଓ: ଏବଂ ତହସିଲଦାରଂକ କାର୍ଯ୍ୟାଳୟରୁ ମିଳିପାରିବ ବୋଲି ମଧ୍ୟ ଜଣାଇଥିଲେ ।

## ସଫଳ ବୁଣାକାର

ବିଦ୍ୟାଧର ଗାଅଣ । ଜାତିରେ ବୁଣାକାର । ଘରେ ସ୍ତ୍ରୀ ଓ ପାଞ୍ଚୋଟି ପିଲାକୁ ମିଶାଇ ସାତପ୍ରାଣୀ କୁଟୁମ୍ବ ଘର ଢେଙ୍କାନାଳ ଜିଲ୍ଲା ହିନ୍ଦୋଳ ବ୍ଲକରେ । ଗାଁରେ ମୂଲ ଲାଗି ଜୀବିକା ନିର୍ବାହ କରୁଥିଲା । ସେଥିରେ ସାତପ୍ରାଣୀ ପରିବାର ଚଳିବା ଅସମ୍ଭବ ଥିଲା । ବିଦ୍ୟାଧର ପରି ତାର ଲୋକଙ୍କୁ ସାହାଯ୍ୟ କରିବା ପାଇଁ ସରକାର ଆଗେଇ ଆସିଲେ ବିଦ୍ୟାଧରଙ୍କୁ ସରକାରଙ୍କ ଇ : ଆର : ଆର . ପି ଯୋଜନାରେ ସାମିଲ କରାଗଲା । ନୂଆ ନୂଆ ଡିଜାଇନର ବୁଣାବୁଣି ଶିଖିବା ପାଇଁ ତାକୁ ଚାରି ମାସ ତାଲିମ ଦିଆଗଲା । ତତ ଆନୁଷଙ୍ଗିକ ଜିନିଷ ପାଇଁ ଋଣ ମଧ୍ୟ ଯୋଗାଇ ଦିଆଗଲା । ହାତୁରା ଗ୍ରାମ୍ୟ ବ୍ୟାଙ୍କ ସାହାଯ୍ୟ ଯୋଗାଇଦେଲେ । ବର୍ତ୍ତମାନ ସେ ଉନ୍ନତ ଧରଣର ଶାଢୀମାନ ବୁଣି ପାରୁଛନ୍ତି । ଖଣ୍ଡିଏ ଶାଢ଼ୀର ମୂଲ୍ୟ ୫୦୦ ଟଙ୍କା ।

ବର୍ତ୍ତମାନ ସେ ଗ୍ରାମରେ ଜଣେ ବିଶିଷ୍ଟ ବ୍ୟକ୍ତି ଭିତରେ ପରିଗଣିତ ହେଉଛି । ସରକାରଙ୍କଠାରୁ ନେଇଥିବା ଋଣ ଶୁଝି ସାରିବା ପରେ ସରକାର ପୁନର୍ବାର ଋଣ ପ୍ରଦାନ କରିଛନ୍ତି । ସେହି ଋଣରେ ସେ ନିଜ ଗ୍ରାମରେ ଗୋଟିଏ ଛୋଟ ଦୋକାନ ଆରମ୍ଭ କରିଛନ୍ତି । ଦୁଇଟି ପିଲା ବର୍ତ୍ତମାନ ସ୍କୁଲରେ ପାଠ ପଢୁଛନ୍ତି । ନିଜେ ରହିବାପାଇଁ ଗୋଟିଏ ବାସଗୃହ କରିପାରିଛନ୍ତି । ବର୍ତ୍ତମାନ ବିଦ୍ୟାଧର ନିଜ ପରିବାରଟିକୁ ଆନନ୍ଦରେ ଚଳାଇ ନେଉଛନ୍ତି ।



## ଭୁବନେଶ୍ୱରରେ କଣ୍ଟ୍ରୋଲ ଦୋକାନ ଉପରେ ଅପ୍ରତ୍ୟାଶିତ ଚଢାଉ

ଗତ ଅଗଷ୍ଟ ୨୨ ତାରିଖ ଦିନ ଖାଦ୍ୟ ଓ ଯୋଗାଣ ବିଭାଗ ଶାସନ ସଚିବ ଶ୍ରୀ ରବିନ୍ଦ୍ର ମୋହନ ସେନାପତିଙ୍କ ନିର୍ଦ୍ଦେଶ କ୍ରମେ ବିଭାଗୀୟ ଏନ୍‌ଫୋର୍ସ ମେଣ୍ଟ ସ୍କ୍ୱାଡ୍ ସ୍ଥାନୀୟ ଶହୀଦ ନଗରସ୍ଥ 'ପାର୍ବତୀ ଷ୍ଟୋର' ନାମକ ଏକ କଣ୍ଟ୍ରୋଲ ଦୋକାନକୁ ଅପ୍ରତ୍ୟାଶିତ ଭାବେ ଯାଞ୍ଚ କରିବା ସମୟରେ ପାମୋଲିନ ତେଲ ଖାଉଟିମାନଙ୍କୁ ଅଧିକ ମୂଲ୍ୟରେ ଛାଡ଼ିବା ଅବସ୍ଥାରେ ଧରିଥିଲେ ।

ତଦନ୍ତରୁ ପ୍ରକାଶ ଯେ ଏହି ଷ୍ଟୋରରେ ହିସାବ ବହିର୍ଭୂତ ୩୦ ଟି ପାମୋଲିନ୍ ତେଲ ଏବଂ ୩ ବସ୍ତା ଚିନିକୁ (ଯାହାର ମୂଲ୍ୟ ପ୍ରାୟ ୭ ହଜାର ଟଙ୍କା ହେବ) ଯୋଗାଣ ଇନିସ୍‌ପେକ୍ଟର ଶ୍ରୀ ନବକିଶୋର ମଲ୍ଲିକ ଜବତ କରି ଅତ୍ୟାବଶ୍ୟକୀୟ ସାମଗ୍ରୀ ଆଇନ୍ ଲଂଘନ ଅଭିଯୋଗରେ ସଂପୃକ୍ତ ମାଲିକ ଶ୍ରୀମତୀ ଉର୍ବଶୀ ସ୍ୱାଇଁଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି ।

## ମରୁଡ଼ିଗ୍ରସ୍ତ ଅଞ୍ଚଳରେ ରାଷ୍ଟ୍ରମନ୍ତ୍ରୀ ଭଲକା

ଜଙ୍ଗଲ ଓ ପରିବେଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦମ୍ବରୁଧର ଭଲକା ଗତ ଅଗଷ୍ଟ ୨୨ ତାରିଖ ଶନିବାରଠାରୁ ୩ଦିନ ଧରି କୋରାପୁଟ ଜିଲ୍ଲା ରାୟଗଡ଼ା ସବ୍‌ଡିଭିଜନ୍‌ର କାଶୀପୁର, କଲ୍ୟାଣସିଂହପୁର ଓ ବିଷମ କଟକ ବ୍ଲକ୍‌ର କେତେକ ମରୁଡ଼ିଗ୍ରସ୍ତ ଅଞ୍ଚଳ ଗସ୍ତ କରିଥିଲେ । ଗସ୍ତ ସମୟରେ ସେ କାଶୀପୁର ବ୍ଲକ୍ ଅନ୍ତର୍ଗତ ଶିରିଗୁଡ଼ା ମାଣ୍ଡିବିଶି, ଲାଖରିସ୍, ସରିଡିଗୁଡ଼ା, ବଂଧପାର ଓ ନାଲଚୁଆ ଗ୍ରାମ ପରିଦର୍ଶନ କରି ବର୍ଷାଅଭାବରୁ ଘଟିଥିବା ମରୁଡ଼ିଜନିତ ପରିସ୍ଥିତି ଅନୁଧ୍ୟାନ କରିଥିଲେ । ୨୩ ତାରିଖ ଦିନ ସେ କଲ୍ୟାଣସିଂହପୁର ବ୍ଲକ୍‌ର କେତେକ ଗ୍ରାମ ପରିଦର୍ଶନ କରି ବର୍ଷା ଅଭାବରୁ ଏ ଅଞ୍ଚଳରେ ଚାଷକାର୍ଯ୍ୟ ଅଦ୍ୟାବଧି ନହୋଇ ପାରିଥିବା ସେ ଲକ୍ଷ୍ୟ କରିଥିଲେ । ୨୪ ତାରିଖ ସୋମବାର ଦିନ ଶ୍ରୀ ଭଲକା ବିଷମ କଟକ ବ୍ଲକ୍‌ର କୁମ୍ଭାର ଖମୁଣି, ଦୁର୍ଗୀ, କୁମ୍ଭାରକାଠି, ପେଣ୍ଡା, ରାଣିଭଟା ଓ ବେଥିଆପଡ଼ା ଗ୍ରାମ ବୁଲି ଦେଖିଥିଲେ । ବର୍ଷା ଅଭାବରୁ ଚାଷକାର୍ଯ୍ୟ ବ୍ୟାହତ ହୋଇଥିବା କଥା ସେ ଦେଖିଥିଲେ । ଏହି ଅଞ୍ଚଳରେ ଶ୍ରମଭିତ୍ତିକ କାର୍ଯ୍ୟ କରାଯାଇ ଲୋକମାନଙ୍କୁ ତୁରନ୍ତ କାମଧନ୍ଦା ଯୋଗାଇ ଦେବା ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାର୍ଯ୍ୟ ସଂପର୍କରେ ସେ ସ୍ଥାନୀୟ ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମ୍ୟାନ୍ ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କ ସଙ୍ଗେ ଆଲୋଚନା କରିଥିଲେ ।

## ସମ୍ବଲପୁରରେ ଷ୍ଟୋରେଜ୍ ଏଜେଣ୍ଟ ଗିରଫ

ସମ୍ବଲପୁରସ୍ଥ ଧନୁପାଲିର ଷ୍ଟୋରେଜ୍ ଏଜେଣ୍ଟ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କୁ ୧୯୮୦ ମସିହା କଳାବଜାର ନିରୋଧ ଆଇନରେ ଗିରଫ କରାଯାଇ ସମ୍ବଲପୁର ଜେଲ୍‌ରେ ଅଟକ ବନ୍ଦୀ ରଖାଯାଇଛି । ସମ୍ବଲପୁର ଜିଲ୍ଲାପାଳ ଶ୍ରୀ ମୋହନ କୁମାରଙ୍କ ନିର୍ଦ୍ଦେଶରେ ଜିଲ୍ଲା ଯୋଗାଣ ବିଭାଗ କର୍ତ୍ତୃପକ୍ଷ ଶ୍ରୀ ମିଶ୍ରଙ୍କ ୩ଟି ଗୋଦାମ ଖାନତଲାସ କରି ୯୪ କୁଇଣ୍ଟାଲ୍ ୮୦ କେ:ଜି: ଚିନି ଏବଂ ୧୩୮ କୁଇଣ୍ଟାଲ ୪୫ କେ:ଜି ଗହମ ନିଅଣ୍ଟ ଥିବାରୁ ଦେଖିଥିଲେ । ଷ୍ଟୋରେଜ୍ ଏଜେଣ୍ଟ ଶ୍ରୀ ମିଶ୍ର ଗହମ ଓ ଚିନି ବଦଳରେ ୧୨୦ବସ୍ତା କୁଣ୍ଡା ଗୋଦାମରେ ରଖିଥିବାର ଦେଖାଯାଇଥିଲା । ସାଧାରଣ ବଣ୍ଟନ ବ୍ୟବସ୍ଥାରୁ ଏତେଗୁଡ଼ିଏ କଣ୍ଟ୍ରୋଲ୍ ଜିନିଷ ସ୍ଥାନାନ୍ତର ଆତ୍ମସାତ କରି ଶ୍ରୀ ମିଶ୍ର ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ବିପ... କରିଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଏହି ନିବାରକ ଅ... ଆଦେଶକୁ ରାଜ୍ୟ ସରକାର ଅନୁମୋଦନ କରିଛନ୍ତି ।

## ଗୋତି ଶ୍ରମିକଙ୍କ ଥଇଥାନ କାର୍ଯ୍ୟକ୍ରମ

ଗୋତି ଶ୍ରମିକଙ୍କ ଥଇଥାନ କାର୍ଯ୍ୟକ୍ରମ ଆରମ୍ଭ ହୋ... ଦିନଠାରୁ ଗତମାସ ଶେଷ ସୁଦ୍ଧା ରାଜ୍ୟରେ ୧୦,୭୯୩ ... ତଫସିଲଭୁକ୍ତ ଜାତି ଓ ୧୩,୪୮୭ଜଣ ତଫସିଲଭୁକ୍ତ ସଂପ୍ରଦାୟ ଲୋକଙ୍କ ସମେତ ମୋଟ୍ ୩୭,୫୨୨ ଜଣ ଗୋତି ଶ୍ରମି... ଥଇଥାନ କରାଯାଇଛି । ଜିଲ୍ଲାଗୁଡ଼ିକରେ ଥଇଥାନ ହୋଇଥି... ଗୋତିମୁକ୍ତ ଶ୍ରମିକଙ୍କ ସଂଖ୍ୟା ହେଉ:—ବାଲେଶ୍ୱର ଜିଲ୍ଲା... ୯୧୯ ଜଣ, ବଲାଙ୍ଗୀର ଜିଲ୍ଲାରେ ୫,୯୦୩ଜଣ, କଟକ ଜିଲ୍ଲା... ୫,୨୨୯ଜଣ, ଢେଙ୍କାନାଳ ଜିଲ୍ଲାରେ ୧,୩୬୯ଜଣ, ଗଞ୍ଜାମ ଜିଲ୍ଲା... ୧,୭୨୯ଜଣ, କଳାହାଣ୍ଡି ଜିଲାରେ ୩,୦୧୦ଜଣ, କେନ୍ଦୁ... ଜିଲ୍ଲାରେ ୧,୬୮୦ଜଣ, କୋରାପୁଟ ଜିଲ୍ଲାରେ ୪,୬୭୦ଜ... ମୟୂରଭ ଜିଲାରେ ୨,୩୭୫ଜଣ, ଫୁଲବାଣୀ ଜିଲ୍ଲା... ୨,୬୬୫ଜଣ, ପୁରୀ ଜିଲ୍ଲାରେ ୩,୩୪୮ଜଣ, ସମ୍ବଲପୁର ଜିଲ୍ଲା... ୨,୯୭୮ଜଣ ଓ ସୁନ୍ଦରଗଡ଼ ଜିଲ୍ଲାରେ ୨,୦୩୭ଜଣ ।

ଉପରୋକ୍ତ ଗୋତି ଶ୍ରମିକଙ୍କ ଥଇଥାନ ବାବଦରେ ମୋ... ୧୨ କୋଟି ୮୪ ଲକ୍ଷ ୭୯ହଜାର ଟଙ୍କା ବିନିଯୋଗ ହୋଇଛି ।

## ରାଜସ୍ୱ ମନ୍ତ୍ରୀଙ୍କ ମରୁଡ଼ି ପରିସ୍ଥିତି ଅନୁଧ୍ୟାନ

ରାଜସ୍ୱ ଅର୍ଥ ଓ ଆଇନ ମନ୍ତ୍ରୀ ଶ୍ରୀ ଯୁଗଳ କିଶୋ... ପଟ୍ଟନାୟକ ଗତ ଅଗଷ୍ଟ ୨୦ ତାରିଖରେ ଏକ ତିନିଦିନିଆ... ଗସ୍ତରେ କୋରାପୁଟ ବଲାଙ୍ଗୀର ଓ ଫୁଲବାଣୀ ଜିଲ୍ଲା'ର ମରୁଡ଼ି ଗ୍ର... ପରି ଦର୍ଶନରେ ଯାଇ ମରୁଡ଼ି ପରିସ୍ଥିତି ସଂପର୍କରେ ଅନୁଧ୍ୟା... କରିଥିଲେ । କୋରାପୁଟ, ରାୟଗଡ଼ା, ଗୁଣୁପୁର ଓ କୋରାପୁଟ... ସବ୍‌ଡିଭିଜନ୍‌ର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ଗସ୍ତ କରିଥିଲେ ... ଦକ୍ଷିଣାଞ୍ଚଳର ରାଜସ୍ୱ କମିଶନର, କୋରାପୁଟ ଜିଲ୍ଲାପା... ମଧ୍ୟ ଗସ୍ତ କରିଥିଲେ ।

କୋରାପୁଟଠାରେ ମରୁଡ଼ି ପରିସ୍ଥିତିର ମୁକାବିଲା କରିବା... ପାଇଁ କି ପଦକ୍ଷେପ ନିଆଯାଇଛି ଏବଂ ଭବିଷ୍ୟତରେ ନିଆଯିବ... ସେ ସଂପର୍କରେ ଜିଲ୍ଲାପାଳ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ... ସହିତ ଆଲୋଚନା କରିଥିଲେ । ଏହି ଆଲୋଚନା ସଭାରେ... ଗ୍ରାମ୍ୟଗୋଷ୍ଠୀ ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ହବିବୁଲ୍ଲା ଖାଁ । କୋରାପୁଟ... ପଟାଙ୍ଗୀ, କୋଟପାଡ଼, ମାଲକାନଗିରିର ବିଧାନ ସଭା ସଦସ୍ୟ... ଓ ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର ମଧ୍ୟ ଉପସ୍ଥିତ ଥିଲେ ... ଏହି ଜିଲ୍ଲାରେ ସମସ୍ତ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକ... କରିବା, ପ୍ରତ୍ୟେକ ଗ୍ରାମରେ ପାନୀୟଜଳ ବ୍ୟବସ୍ଥା କରିବା... କୃଷି ଶ୍ରମଜୀବୀମାନଙ୍କୁ ଗ୍ରାମ୍ୟ ସ୍ତରରେ ଶ୍ରମଭିତ୍ତିକ କାର୍ଯ୍ୟ... ଯୋଗାଇବା, ଶସ୍ତାରେ ବିହନ ଯୋଗାଣ କରିବା ଓ ଗ୍ରାମ... ମାନଙ୍କରେ ଶିଶୁ ଓ ଗର୍ଭବତୀ ମହିଳାମାନଙ୍କୁ ମାଗଣା ଖାଦ୍ୟ...

ଯୋଗାଣ କାର୍ଯ୍ୟକ୍ରମକୁ ଅବ୍ୟାହତ ରଖିବା ଓ ହାଟମାନଙ୍କରେ ଭ୍ରାମ୍ୟମାଣ ଯାନ ଚଳିଆରେ ଖାଦ୍ୟ ପଦାର୍ଥର ବିକ୍ରୟକୁ ବ୍ୟାପକ କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ଜିଲ୍ଲା ପ୍ରଶାସନ ଓ ବିଭାଗୀୟ କର୍ମଚାରୀମାନେ ଯେପରି ମରୁଡ଼ିର ମୁକାବିଲା କରିବାରେ ଲୋକମାନଙ୍କୁ ସାହାଯ୍ୟ କରନ୍ତି ସେଥିପ୍ରତି ଦୃଷ୍ଟି ଦେବାକୁ ସେ ପରାମର୍ଶ ଦେଇଥିଲେ ।

୨୧ ତାରିଖରେ ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ବଲାଙ୍ଗୀର ଜିଲ୍ଲାର ବଲାଙ୍ଗୀର, ଦେଓଗାଁ, ଗୁଡ଼ଭେଲା, ଡୁଙ୍ଗୁରିପାଲି, ସାଇଣ୍ଟେଲା, ପ୍ରଭୃତି ବ୍ଲକ୍‌ର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରିଥିଲେ । ପରିଦର୍ଶନ ସମୟରେ ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଜିଲ୍ଲାପାଳ ଉପସ୍ଥିତ ଥିଲେ । ଅପରାହ୍ନରେ ବଲାଙ୍ଗୀରଠାରେ ରାଷ୍ଟ୍ରମନ୍ତ୍ରୀ ମହମ୍ମଦ୍ ମୁଜାଫର ହୁସେନ୍ ଖାଁ ଏବଂ ଜିଲ୍ଲାର ଅନ୍ୟାନ୍ୟ ବିଧାନ ସଭା ପ୍ରତିନିଧିଙ୍କ ଉପସ୍ଥିତିରେ ମରୁଡ଼ିଜନିତ ପରିସ୍ଥିତିର ମୁକାବିଲା କରିବା ସଂପର୍କରେ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ସହିତ ଆଲୋଚନା କରିଥିଲେ । ଅପରାହ୍ନରେ ଡୁଙ୍ଗୁରିପାଲିଠାରେ ଏକ ସବ୍–ଟ୍ରେଜେରୀ ମଧ୍ୟ ସେ ଉଦ୍‌ଘାଟନ କରିଥିଲେ ।

ସେହିଦିନ ବୌଦ୍ଧଠାରେ ଫୁଲବାଣୀ ଜିଲାପାଳ ଓ ଅନ୍ୟାନ୍ୟ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ସହିତ ମରୁଡ଼ି ପରିସ୍ଥିତିର ମୁକାବିଲା କରିବା ପାଇଁ କି ପଦକ୍ଷେପ ନିଆଯାଉଛି, ସେ ସଂପର୍କରେ ସେ ଆଲୋଚନା କରିଥିଲେ । ଫୁଲବାଣୀ ଜିଲ୍ଲାର କେତେକ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ମଧ୍ୟ ସେ ଦେଖିଥିଲେ ।

ରାଜସ୍ୱ ମନ୍ତ୍ରୀ ତାଙ୍କର ଏହିସବୁ ଅଞ୍ଚଳ ଗସ୍ତ ସମୟରେ ବର୍ଷାଭାବରୁ ଅଧିକାଂଶ ଚାଷଜମି ପଡ଼ିଆ ପଡ଼ିଥିବା ଓ ଚାଷ ହୋଇଥିବା ଜମିଗୁଡ଼ିକର ଗଛଗୁଡ଼ିକ ଜଳାଭାବରୁ ଶୁଖି ଆସୁଥିବା ଲକ୍ଷ୍ୟ କରିଥିଲେ ।

## କୃଷି ବିଦ୍ୟାଳୟ ରଜତ ଜୟନ୍ତୀ

କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ରଜତ ଜୟନ୍ତୀ ଉତ୍ସବରେ ରାଜ୍ୟ କୃଷି ମନ୍ତ୍ରୀ ତଥା ବିଶ୍ୱବିଦ୍ୟାଳୟର ପ୍ରୋ–ଚାନ୍ସେଲର ଶ୍ରୀ ରାସବିହାରୀ ବେହେରା ତାଙ୍କର ପ୍ରବନ୍ଧ ଭାଷଣରେ ଓଡ଼ିଶା ରାଜ୍ୟରେ କୃଷିର ଉନ୍ନତି ଓ ଉତ୍ପାଦନ ବୃଦ୍ଧି ପାଇଁ ଜଳସେଚନ, ଉନ୍ନତ ବିହନ, ଜୈବିକ ଓ ରାସାୟନିକ ସାର ଯୋଗାଣର ସୁବିଧା ସୁଯୋଗ ସହିତ ବିଶ୍ୱବିଦ୍ୟାଳୟସ୍ଥ ଉତ୍ତୀର୍ଣ୍ଣ ଯୁବକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି କହିଛନ୍ତି ।

ରାଜ୍ୟ ସୂଚନା ଭବନଠାରେ ଅନୁଷ୍ଠିତ ରଜତ ଜୟନ୍ତୀ ଉତ୍ସବରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ଡଃ ଅପାରାଓ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ପ୍ରାରମ୍ଭରେ ଡିନ୍ ଶ୍ରୀ ସୀତାନାଥ ଦାସ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ରେଜିଷ୍ଟ୍ରାର ଶ୍ରୀ ଗଡ଼ନାୟକ ରାଷ୍ଟ୍ରପତି, କେନ୍ଦ୍ର କୃଷିମନ୍ତ୍ରୀ, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ପ୍ରମୁଖଙ୍କ ଶୁଭେଚ୍ଛା ବାର୍ତ୍ତା ପାଠ କରିଥିଲେ ।

କୃଷିମନ୍ତ୍ରୀ ଶ୍ରୀ ବେହେରା ରଜତ ଜୟନ୍ତୀ ବର୍ଷରେ ରାଜ୍ୟରେ ମରୁଡ଼ିଜନିତ ପ୍ରାକୃତିକ ଦୁର୍ବିପାକ ହେତୁ କୃଷକ ଶ୍ରେଣୀ ସମସ୍ୟାର ମୁକାବିଲା ପାଇଁ ଯେପରି ଦିଗଦର୍ଶନ ପାଇପାରିବେ, ସେ ଦିଗରେ ଗୁରୁତ୍ୱ ଆରୋପ କରିଥିଲେ । କୃଷି ମନ୍ତ୍ରୀ କହିଲେ ଯେ ରାଜ୍ୟର ମୋଟ୍ ଚାଷଜମି ମଧ୍ୟରୁ ଶତକଡ଼ା ୩୦ ଭାଗ ଜଳସେଚନର ସୁବିଧା ପାଇଥିଲେ ମଧ୍ୟ ସମସ୍ତ ଜଳର ପୂର୍ଣ୍ଣ ବିନିଯୋଗ ପାଇଁ ଉଦ୍ୟମ କରାଗଲେ ବହୁ ଅଧିକ ଜମି ଜଳସେଚିତ ହୋଇପାରନ୍ତା । ଅର୍ଥକାରୀ ଫସଲ ଆଳୁ, ତୁଳା, ତୈଳବୀଜ ଓ ଡାଲିଜାତୀୟ ଫସଲ ଏବଂ ଫଳ ଓ ପନିପରିବା ଚାଷ ପାଇଁ କୃଷକମାନଙ୍କର ଆଗ୍ରହ ବୃଦ୍ଧି କରାଯିବା ଆବଶ୍ୟକ । ସବୁଜ ବିପ୍ଳବର ସଫଳତା ପାଇଁ ଅଧିକ ଅମଳକ୍ଷମ କୃଷି ପଦ୍ଧତିରେ ଉନ୍ନତ ବିହନ ବ୍ୟବସ୍ଥା କରାଯାଉଛି । କ୍ଷୁଦ୍ର ଚାଷୀମାନଙ୍କ ପାଇଁ ମରୁଡ଼ି ପ୍ରତିରୋଧକ ଏବଂ କମ୍ ସାର, ଔଷଧ ଆବଶ୍ୟକ କରୁଥିବା ଧାନ ବିହନ ଉଦ୍‌ଭାବନ କରାଯାଇ ପାରିଲେ, ସ୍ୱଳ୍ପବ୍ୟୟରେ ସେମାନେ ସଘନ କୃଷି ପ୍ରତି ଆଗ୍ରହାନ୍ୱିତ ହେବେ ଏ ଦିଗରେ କୃଷି ବିଶ୍ୱବିଦ୍ୟାଳୟରେ ଗବେଷଣା ଚାଲିଥିବା ବିଷୟ କୃଷିମନ୍ତ୍ରୀ ଉଲ୍ଲେଖ କରିଥିଲେ ।

ରାଜ୍ୟର କୃଷି କ୍ଷେତ୍ରରେ କୃଷକମାନେ ପୂର୍ବପରି ବଳଦ, ମଣିଷ ସାହାଯ୍ୟରେ ନିଜର ଶ୍ରମ ବିନିଯୋଗ କରି ଆସୁଥିଲେ ମଧ୍ୟ ବିହନ ବୁଣିବା, କୃଷି ଓ ଧାନ ଅମଳ ଯନ୍ତ୍ରପାତି ବ୍ୟବହାର କରିବାକୁ କୃଷିମନ୍ତ୍ରୀ ଆଦେଶ ଦେଇଥିଲେ ।

କୁଳପତି ଶ୍ରୀ କେ. ରାମମୂର୍ତ୍ତି ତାଙ୍କର ବିବରଣୀରେ ରାଜ୍ୟରେ କୃଷି ପ୍ରସାର ବୃଦ୍ଧି ସହିତ ଉତ୍ପାଦନ ହାର ବୃଦ୍ଧି ପାଇଁ ଅଧିକ ଉଦ୍ୟମ କରାଯିବା ଓ ଗତ ଦଶବର୍ଷ ମଧ୍ୟରେ ରାଜ୍ୟରେ ତୈଳବୀଜ ଓ ଡାଲିଜାତୀୟ ଫସଲ ଆଶାନୁରୂପ କ୍ରମଶଃ ବୃଦ୍ଧି ପାଇଥିବା ବିଷୟରେ ଉଲ୍ଲେଖ କରିଥିଲେ ।





# ଏକ୍ୟୁପଙ୍କଚର

ଡାକ୍ତର ସରୋଜବିହାରୀ ମହାନ୍ତି

ଅଧୁନା ସମଗ୍ର ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଥିବା ଏକ୍ୟୁପଙ୍କଚର (ACUS ର ଅର୍ଥ ସୂକ୍ଷ୍ମ ଛୁଞ୍ଚି ଏବଂ PUNCTURE ର ଅର୍ଥ ବିଦ୍ଧ କରିବା) ଚିକିତ୍ସା ପଦ୍ଧତି ଏକ ଐତିହାସିକ ଘଟଣା । ଏହା ଭାରତ ତଥା ଅନ୍ୟାନ୍ୟ ଦେଶ ପକ୍ଷରେ ନୂତନ ବସ୍ତୁ ହେଲେହେଁ, ଚୀନ ଦେଶରେ ହଜାର ହଜାର ବର୍ଷ ତଳେ ପ୍ରଚଳିତ ଥିଲା । ଚୀନ ଦେଶରେ ପ୍ରାଚୀନତମ ଚିକିତ୍ସା ପୁସ୍ତକ "ହୁଆଙ୍ଗ୍‌ଡ଼ିନାଇଜି" ରେ ଏହି ଚିକିତ୍ସା ପଦ୍ଧତି ବର୍ଣ୍ଣିତ ହୋଇଛି । ଏହି ପୁସ୍ତକଟି ସଙ୍କଳିତ ହୋଇଥିଲା ପ୍ରାୟ ଖ୍ରୀ:ପୂ: ୫୦୦ରେ । ପ୍ରସ୍ତର ଯୁଗରେ ଏହି ଚିକିତ୍ସା ଲାଗି ପଥର ନିର୍ମିତ ଛୁଞ୍ଚି ବ୍ୟବହୃତ ହେଉଥିଲା । ତାହାକୁ 'ବିଆନ୍' କୁହାଯାଉଥିଲା । ପରବର୍ତ୍ତୀ ବ୍ରୋଞ୍ଜ ଓ ଲୌହ ଯୁଗରେ ଯଥାକ୍ରମେ ବ୍ରୋଞ୍ଜ ଓ ଲୌହ ନିର୍ମିତ ଛୁଞ୍ଚି ବ୍ୟବହୃତ ହେଉଥିଲା । ୬ଷ୍ଠ ଶତାବ୍ଦୀରେ 'ଜିଙ୍ଗ' ନାମକ ଜଣେ ଚୀନ ଦେଶୀୟ ସନ୍ନ୍ୟାସୀ କୋରିଆ ତଥା ଜାପାନ ଦେଶରେ ଏହି ଚିକିତ୍ସା ପଦ୍ଧତିର ପ୍ରଚଳନ ଆରମ୍ଭ କରିଥିବା କଥା ଐତିହାସିକ ନଥିପତ୍ରରୁ ଜଣାଯାଏ । ସେ କୋରିଆ ତଥା ଜାପାନ ଦେଶ ପରିଭ୍ରମଣରେ ଯାଇଥିବା ସମୟରେ 'ମିଙ୍ଗଟାଙ୍ଗଟୁ' 'ଝେନଜିଉ' ପ୍ରଭୃତି ଏକ୍ୟୁପଙ୍କଚର ଚିକିତ୍ସା ପଦ୍ଧତି ସମ୍ବନ୍ଧୀୟ କେତେକ ଚିକିତ୍ସା ପୁସ୍ତକ ନିଜ ସଙ୍ଗରେ ନେଇଥିଲେ ।

୧୮୪୦ ମସିହା ଠାରୁ ଚୀନ ଦେଶର ସ୍ୱାଧୀନତା ତଥା ସାର୍ବଭୌମତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ସାମନ୍ତବାଦର ପ୍ରତିକ୍ରିୟାଶୀଳ ଶାସନ ମଧ୍ୟରେ ଚୀନ ଦେଶର ସାହିତ୍ୟ, ସଂସ୍କୃତି, ବିଜ୍ଞାନ ସଙ୍ଗେ ଏହି ଯୁଗାନ୍ତକାରୀ ଚିକିତ୍ସା ପଦ୍ଧତି ମଧ୍ୟ ବିଲୁପ୍ତ ହେବାକୁ ବସିଥିଲା । ୧୯୪୯ ମସିହାରେ ଚୀନର ମୁକ୍ତି ପରେ 'ସାଧାରଣତନ୍ତ୍ର ଚୀନ'ର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଚେୟାରମ୍ୟାନ ମାଓସେତୁଙ୍ଗଙ୍କ ନିର୍ଦ୍ଦେଶ ତଥା ପ୍ରେରଣାରେ ଏକ୍ୟୁପଙ୍କଚର ଚିକିତ୍ସା ପଦ୍ଧତି ପୁନର୍ଜୀବିତ ହୋଇଥିଲା । ୧୯୩୪ ମସିହାରେ ଏକ୍ୟୁପଙ୍କଚର ଛୁଞ୍ଚିରେ ବିଦ୍ୟୁତ୍ ପ୍ରବାହ ସଂଯୁକ୍ତ କରିବା ପଦ୍ଧତି ପ୍ରଚଳନ ହୁଏ । ୧୯୫୮ ମସିହାରୁ ଏକ୍ୟୁପଙ୍କଚର ସାହାଯ୍ୟରେ ରୋଗୀକୁ ଅଜ୍ଞାନ ନକରି ଅସ୍ତ୍ରୋପଚାର କରିବା ପଦ୍ଧତି ଆରମ୍ଭ ହେଲା ।

ବର୍ତ୍ତମାନ ପୃଥିବୀର ବହୁଦେଶରେ ଏକ୍ୟୁପଙ୍କଚର ପ୍ରଚଳିତ ଓ ଲୋକପ୍ରିୟ । ଚୀନ ବ୍ୟତୀତ ଜାପାନ, କୋରିଆ, ଅଷ୍ଟ୍ରେଲିଆ, ଫ୍ରାନ୍ସ, ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ଦେଶରେ ଏକ୍ୟୁପଙ୍କଚର ଚିକିତ୍ସା ବର୍ତ୍ତମାନ ପ୍ରଚଳିତ ଏବଂ ଏହା ଉପରେ ବ୍ୟାପକ ଗବେଷଣା ଚାଲିଛି । କେତେକ ଦେଶରେ ସରକାର ମଧ୍ୟ ଏହାକୁ ସ୍ୱୀକୃତି ଦେଇ ଏହାର ପୃଷ୍ଠପୋଷକତା କରୁଛନ୍ତି । ଆମେରିକାରେ ୨୦୦ରୁ ବେଶୀ ଏକ୍ୟୁପଙ୍କଚର କେନ୍ଦ୍ର ଅଛି । ପ୍ୟାରିସ୍‌ରେ ପ୍ରତିଷ୍ଠିତ ହୋଇଛି ଆନ୍ତର୍ଜାତିକ ଏକ୍ୟୁପଙ୍କଚର ପ୍ରଶିକ୍ଷଣ ସଂସ୍ଥା । ଭାରତବର୍ଷରେ ଏକ୍ୟୁପଙ୍କଚର ଚିକିତ୍ସା ଆରମ୍ଭ ହୁଏ ୧୯୫୯ ମସିହାରେ କଲିକତାରେ ଡାକ୍ତର ବିଜୟକୁମାର ବସୁଙ୍କ ଦ୍ୱାରା ।

ଅନେକ ମନେକରନ୍ତି, ଭାରତବର୍ଷହିଁ ଏକ୍ୟୁପଙ୍କଚରର ଜନକ । କିନ୍ତୁ ଏହାର କୌଣସି ଐତିହାସିକ ଭିତ୍ତି ନାହିଁ । ଚୀନ ଯେ ଏକ୍ୟୁପଙ୍କଚରର ଜନକ, ଏହା ଐତିହାସିକ ଭାବେ ସତ୍ୟ । ହୁଏତ ପୃଥିବୀର ନାନା ସ୍ଥାନରେ ମଣିଷ ଛୁଞ୍ଚି ବା ତୀକ୍ଷ୍ଣ ପଥର ଇତ୍ୟାଦିକୁ ରୋଗ ଚିକିତ୍ସାରେ ବ୍ୟବହାର କରିଛି । କିନ୍ତୁ ଚୀନ ବ୍ୟତୀତ ଅନ୍ୟ କେଉଁଠାରେ ଏକ୍ୟୁପଙ୍କଚର କହିଲେ ଆଜି ଯାହା ବୁଝାଯାଏ ତା'ର ତାତ୍ତ୍ୱିକ ଓ ପ୍ରୟୋଗଗତ ବିକାଶ ହୋଇନାହିଁ ।

ଏହି ଚିକିତ୍ସା ପଦ୍ଧତିର କାର୍ଯ୍ୟକାରୀ ପ୍ରଣାଳୀ ସମ୍ବନ୍ଧରେ କେତେକ ମତବାଦ ଅଛି । ପ୍ରଥମତଃ ବ୍ୟକ୍ତି ବିଶେଷର ଚତୁଃପାର୍ଶ୍ୱରେ ରୋଗ ଜନ୍ମାଉଥିବା କେତେକ ବାହ୍ୟ ଶକ୍ତି ଅଛି । ଏହାକୁ ପାଥୋଜେନିକ୍ ଫାକ୍ଟର (Pathogenic factor) କହନ୍ତି । ବ୍ୟକ୍ତି ବିଶେଷର ନିଜସ୍ୱ ରୋଗନିରୋଧକାରୀ ଶକ୍ତି (Antipathogenic) ଅଛି । ଏକ୍ୟୁପଙ୍କଚର ଚିକିତ୍ସା ଦ୍ୱାରା ରୋଗନିରୋଧକାରୀ ଶକ୍ତିକୁ ବିଶେଷ ଭାବେ ସକ୍ରିୟ କରିବାଦ୍ୱାରା ରୋଗ ସୃଷ୍ଟିକାରୀ ଶକ୍ତି ପରାଜିତ ହୁଏ ଏବଂ ରୋଗୀ ରୋଗମୁକ୍ତ ହୁଏ ।

ଦ୍ୱିତୀୟ ମତାନୁଯାୟୀ ଶରୀରରେ ଅନେକ ଗୁଡ଼ିଏ ପ୍ରଣାଳୀ (Channel) ଅଛି । ଏହି ପ୍ରଣାଳୀ ଏବଂ ଏମାନଙ୍କର ବିଭିନ୍ନ ଶାଖା ପ୍ରଶାଖା ମାଧ୍ୟମରେ ଶରୀରର ବିଭିନ୍ନ ଅଙ୍ଗର ପରସ୍ପର ପରସ୍ପର ମଧ୍ୟରେ ଅତି ନିବିଡ଼ ସମ୍ପର୍କ ଅଛି । ପ୍ରଣାଳୀଗୁଡ଼ିକ ମଧ୍ୟ ଦେଇ ଜୀବନୀଶକ୍ତି (Vital energy) ପ୍ରବାହିତ ହୁଏ । କୌଣସି କାରଣ ବଶତଃ ଜୀବନୀଶକ୍ତି ପ୍ରବାହର ଭାରସାମ୍ୟ ନଷ୍ଟ ହେଲେ ଶରୀର ରୋଗାକ୍ରାନ୍ତ ହୁଏ । ଏକ୍ୟୁପଙ୍କଚର ଚିକିତ୍ସା ଦ୍ୱାରା ଜୀବନୀଶକ୍ତି ପ୍ରବାହରେ ଭାରସାମ୍ୟ ରକ୍ଷା କରିବା ଦ୍ୱାରା ବ୍ୟକ୍ତିବିଶେଷ ରୋଗମୁକ୍ତ ହୁଏ ।

ଅନ୍ୟ ଏକ ମତାନୁଯାୟୀ— ମଣିଷ ଶରୀର ଦୁଇଟି ପରସ୍ପର ବିପରୀତ ଧର୍ମୀ ଏବଂ ପରିପୂରକ ଉପାଦାନରେ ଗଠିତ । ଯଥା-ଇନ୍ ଏବଂ ୟାଙ୍ଗ୍ । ଇନ୍ ହେଉଛି ସ୍ତ୍ରୀ ଧର୍ମୀ ଏବଂ 'ୟାଙ୍ଗ୍' ପୁରୁଷ ଧର୍ମୀ । ଏ ଦୁଇଟି ଉପାଦାନର ସ୍ଥିତାବସ୍ଥାରେ ଭାରସାମ୍ୟ ନଷ୍ଟ ହେଲେ ରୋଗ ସୃଷ୍ଟି ହୁଏ । ଏକ୍ୟୁପଙ୍କଚର ଚିକିତ୍ସା ଦ୍ୱାରା ଏହି ଭାରସାମ୍ୟ ରକ୍ଷା କରାଯିବା ଦ୍ୱାରା ମଣିଷ ରୋଗମୁକ୍ତ ହୁଏ ।

ଏହି ଚିକିତ୍ସା ପଦ୍ଧତିରେ ବିଭିନ୍ନ ଦୈର୍ଘ୍ୟର ଉତ୍ତମାନର ଇସ୍ପାତ ନିର୍ମିତ ସୂକ୍ଷ୍ମ ଛୁଞ୍ଚି ବ୍ୟବହୃତ ହୋଇଥାଏ । ଛୁଞ୍ଚିର ଗୋଟିଏ ପାର୍ଶ୍ୱରେ ହାତରେ ଧରିବା ପାଇଁ ବ୍ୟବସ୍ଥା ଥାଏ ଏବଂ ଅନ୍ୟ ପାର୍ଶ୍ୱଟି ତୀକ୍ଷ୍ଣ ହୋଇଥାଏ । ଏହି ଛୁଞ୍ଚିକୁ ଫିଲିଫର୍ମ (Filiform) ଛୁଞ୍ଚି କୁହାଯାଏ ।

ସାଧାରଣ ଜୀବନଧାରାରେ ବିଭିନ୍ନ ଚିକିତ୍ସା ପଦ୍ଧତିର ପ୍ରୟୋଗରେ ବିଭିନ୍ନ ପ୍ରକାରର ପକ୍ଷାଘାତ ରୋଗର ବିଫଳ ହୋଇ ଅନେକେ ପକ୍ଷାଘାତ

ଆରୋଗ୍ୟଲାଭ କରିବାକୁ ଏକ କଳ୍ପନାର ବସ୍ତୁ ବୋଲି ମନେ କରିଥାଆନ୍ତି । ମାତ୍ର ଏକ୍ୟୁପଙ୍କଚର ଚିକିତ୍ସା ଦ୍ୱାରା ଏହି ରୋଗରୁ ଆରୋଗ୍ୟ ଲାଭ କରିବା ସମ୍ଭବ ହୋଇଛି । ଏହି ପଦ୍ଧତିରେ ଚିକିତ୍ସିତ ହୋଇ ପୋଲିଓ ରୋଗରେ ପଙ୍ଗୁ ହୋଇ ଯାଇଥିବା ବହୁ ନିରୀହ ଶିଶୁ ଚାଲିବାର ଶକ୍ତି ଫେରି ପାଇଛନ୍ତି । ଶ୍ୱାସ, ସର୍ଭିକାଲ୍ ସ୍ପଣ୍ଡିଲୋସିସ୍, ବିଭିନ୍ନ ଚର୍ମରୋଗ, ସାଇଟିକା ପ୍ରଭୃତି ଯନ୍ତ୍ରଣାଦାୟକ ରୋଗରୁ ମୁକ୍ତି ପାଇଛନ୍ତି । ପ୍ରଥମାବସ୍ଥାରେ ପାରାଲେସିସ୍ ଥିବାର ଚିକିତ୍ସା କରାଇ ପୁରା ସଂପୂର୍ଣ୍ଣରୂପେ ଭଲ ହୋଇଛନ୍ତି । ବର୍ଜରସ ଏବଂ ରେନଡସ୍ ପ୍ରଭୃତି ରୋଗରେ ପାଶ୍ଚାତ୍ୟ ଚିକିତ୍ସା ପଦ୍ଧତିରେ ରୋଗୀର ଅଙ୍ଗଛେଦ ([illegible]) କରାଯାଇଥାଏ । କିନ୍ତୁ ଏକ୍ୟୁପଙ୍କଚର ଚିକିତ୍ସା ଉପଯୁକ୍ତ ସମୟରେ କରାଇ ଆକ୍ରାନ୍ତ ଅଙ୍ଗକୁ ରକ୍ଷା କରାଯାଇ ରୋଗୀକୁ ରୋଗମୁକ୍ତ କରାଯାଇଥିବାର ଅନେକ ଦୃଷ୍ଟାନ୍ତ ଅଛି । ଅପସ୍ମାରବାତ ( ) ମୁଣ୍ଡବିନ୍ଧା ([illegible] ) ପ୍ରଭୃତି ଅନେକ ରୋଗରେ ଏହା ଏକ ଫଳପ୍ରଦ ଚିକିତ୍ସା ରୂପେ ପ୍ରମାଣିତ ହୋଇଛି ।

ଅଧିକନ୍ତୁ ଅସ୍ତ୍ରୋପଚାର ନିମିତ୍ତ ଆନେସ୍ଥେସିଆ (ନିଶାର ବିକଳ୍ପଭାବେ— ଏକ୍ୟୁପଙ୍କଚର ପଦ୍ଧତିର ପ୍ରୟୋଗ ବିଶ୍ୱବ୍ୟାପୀ ବିସ୍ମୟ ସୃଷ୍ଟି କରିଛି । ସାଧାରଣତଃ ଏହି ଚିକିତ୍ସା ପଦ୍ଧତିରେ କୌଣସି ଔଷଧ ପ୍ରୟୋଗର ଆବଶ୍ୟକତା ନଥାଏ । ଏଥିରେ ଶରୀର ଉପରେ ଆନୁସଙ୍ଗିକ କ୍ଷତିକାରକ ପ୍ରଭାବର ଆଶଙ୍କା ନଥାଏ ।

ଏହି ଚିକିତ୍ସା ପଦ୍ଧତିରେ ଅସାଧ୍ୟ ରୋଗରେ ଆଶ୍ଚର୍ଯ୍ୟଜନକ ଭାବେ ସୁଫଳ ମିଳୁଥିଲେହେଁ ଆମ ଦେଶରେ ଏହା ଅନୁରୂପ ଭାବେ ଜନସାଧାରଣଙ୍କ ନିକଟରେ ପହଞ୍ଚିପାରି ନାହିଁ । ଆଶାନୁରୂପ ପ୍ରସାର ନହେବା ପଛରେ ଅନେକ କାରଣ ଅଛି । ଜନସାଧାରଣଙ୍କର ଉପଯୁକ୍ତ ସ୍ୱାସ୍ଥ୍ୟ–ସଚେତନାର ଅଭାବ, ଏହାର ଅନ୍ୟତମ କାରଣ ବୋଲି କୁହାଯାଇପାରେ ।

ନିର୍ଦ୍ଦେଶକ, ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏକ୍ୟୁପଙ୍କଚର
ଏ/୪ ଲେବର କଲୋନି,
ୟୁନିଟ୍–୩, ଭୁବନେଶ୍ୱର



# କାର୍ଯ୍ୟସ୍ଥଳୀରେ ସୁରକ୍ଷା ଓ ସ୍ୱାସ୍ଥ୍ୟ



ମୁରାରି ଜେନା

ସାଧାରଣତଃ ପରିଚାଳନା କର୍ତ୍ତୃପକ୍ଷଙ୍କ ଦ୍ୱାରା ଭୁଲ ବ୍ୟବସ୍ଥା ଓ ଶ୍ରମିକମାନଙ୍କ ଦ୍ୱାରା ଅସୁରକ୍ଷିତ କାର୍ଯ୍ୟ ଶିଳ୍ପାନୁଷ୍ଠାନରେ ଦୁର୍ଘଟଣା ଘଟାଇଥାଏ । ଏଇ ଦୁର୍ଘଟଣା ହେବା ପୂର୍ବରୁ ଏହା ଆମକୁ ବାରମ୍ବାର ସତର୍କ କରି ଦେଇଥାଏ କିନ୍ତୁ ଆମେ ଦୁର୍ଘଟଣାର ସଙ୍କେତକୁ ଆଖି ଥାଇଁ ଦେଖି ପାରୁନା କି କାନ ଥାଇ ଶୁଣି ପାରୁନା । ଏଣୁ ଏପରି ପରିସ୍ଥିତିରେ ଆମକୁ ଦୁର୍ଘଟଣାର କାରଣମାନ ବିଶେଷ ଭାବରେ ଅନୁଧ୍ୟାନ କରିବାକୁ ପଡ଼ିବ । ଏ ଦିଗରେ ଟିକେ ଅବହେଳା କଲେ ଚଳିବ ନାହିଁ । ପୁନଶ୍ଚ ଏଇ ପରିପ୍ରେକ୍ଷାରେ ଆମେ ସମସ୍ତେ ଶିଳ୍ପରେ ସୁରକ୍ଷା ବ୍ୟବସ୍ଥାର ପ୍ରଚଳନ ପାଇଁ ପ୍ରବଳତର ଉଦ୍ୟମ କରିବା ଏକାନ୍ତ ବାଞ୍ଛନୀୟ । ଏଣୁ ଶ୍ରମ ସଂଗଠନ/ଶିଳ୍ପର ପରିଚାଳକବର୍ଗ ଏ ଦିଗରେ ମଧ୍ୟ ଆଶୁ ପଦକ୍ଷେପ ଗ୍ରହଣ କରିବା ଏକାନ୍ତ ଜରୁରୀ । ଏଣୁ ଏହି ଗୁରୁତ୍ୱପୂର୍ଣ୍ଣ କଥାଟିକୁ ଆଜି ଯେପରି କେହି ଭୁଲି ନଯାଏ ।

ଆମେ ପ୍ରଥମେ ମୁଖ୍ୟତଃ ଶିଳ୍ପ ପରିଚାଳନା ଦ୍ୱାରା ଅସୁରକ୍ଷିତ ବ୍ୟବସ୍ଥାମାନଙ୍କ ପ୍ରତି ଦୃଷ୍ଟି ଦେବା ଦରକାର । ସେ ଗୁଡ଼ିକ ହେଲା ଦୋଷପୂର୍ଣ୍ଣ ଯନ୍ତ୍ରପାତିର ବ୍ୟବହାର/ଉପଯୁକ୍ତ ନିରୀକ୍ଷଣ ଓ ଯୋଗ୍ୟ ଲୋକର ଅଭାବ, ସୁରକ୍ଷା ଉପକରଣର ଅଭାବ, ସୁରକ୍ଷାକୁ ଅଯଥା ଖର୍ଚ୍ଚ ବୋଲି ଭାବିବାର ମନୋଭାବ ଓ ସର୍ବୋପରି ବୁଝାମଣାର ଅଭାବ ଇତ୍ୟାଦି ଯୋଗୁଁହି ଶିଳ୍ପରେ ସୁରକ୍ଷା ସ୍ଥାପନରେ ସାହାଯ୍ୟ ନକରି ବରଂ ଦୁର୍ଘଟଣାମାନ ଘଟାଇ ଚାଲିଥାଏ ।

ଏଇ ଦୁର୍ଘଟଣା ଅତ୍ୟନ୍ତ ବ୍ୟୟ ସାପେକ୍ଷ । ଶିଳ୍ପରେ ଦୁର୍ଘଟଣା ଯୋଗୁଁ ହିସାବରୁ ଜଣାପଡ଼ିଛି ଯେ ଆମ ଦେଶରେ ପ୍ରାୟ ୭୦୦ ଲୋକ ମରନ୍ତି ଓ ତିନି ଲକ୍ଷରୁ ଅଧିକ ଲୋକ କ୍ଷତିଗ୍ରସ୍ତ ହୁଅନ୍ତି ବା ଆଘାତପ୍ରାପ୍ତ ହୁଅନ୍ତି । ଆଠ କୋଟିରୁ ବେଶୀ ଟଙ୍କା କ୍ଷତିପୂରଣ ଓ ଚିକିତ୍ସା ଏବଂ ୩୨ କୋଟିରୁ ବେଶୀ ଟଙ୍କା ଉତ୍ପାଦନ କ୍ଷତି ଓ ମେସିନ କ୍ଷତିପାଇଁ ଖର୍ଚ୍ଚ ହୁଏ । ତେଣୁ ଦୁର୍ଘଟଣା କି ଭୟାବହତା ରୂପେ ପର୍ଯ୍ୟବସିତ, ତାହା ଏଥିରୁ ସ୍ପଷ୍ଟ ଅନୁମେୟ । ଏଇ ଦୁର୍ଘଟଣାକୁ କିପରି ଏଡ଼ାଇବାକୁ ହେବ, ସେଥିପ୍ରତି ଦୃଷ୍ଟି ଦେବା ଆମର କର୍ତ୍ତବ୍ୟ ନୁହେଁ କି ?

ଆମେ ସମସ୍ତେ ଆଜିକାଲି ଉତ୍ପାଦନ ଓ କଥା ଚିନ୍ତା କରୁଥାଇ କିନ୍ତୁ କହିଲେ ଦେଖି ସୁରକ୍ଷା କଥା ଭୁଲିଗଲେ ଉତ୍ପାଦନ କଣ ବଢ଼ି ପାରିବ ? କାରଣ ଦୁର୍ଘଟଣା ଯୋଗୁଁ ବର୍ଷକୁ ତିରିଶଲକ୍ଷ ଶ୍ରମିକ ଦିନ ନଷ୍ଟ ହେଉଥିବବେଳେ ଧର୍ମଘଟ ଓ ତାଲାବନ୍ଦ ଯୋଗୁଁ ୧୨ ଲକ୍ଷ ଶ୍ରମିକ ଦିବସ ନଷ୍ଟ (man day) ହୋଇଥାଏ । ପୁଣି ଆମକୁ ମନେ ରଖିବାକୁ ହେବ ଯେ ଯନ୍ତ୍ରପାତି ଉତ୍ପାଦନ କରେନି, ମଣିଷ ଶ୍ରମିକହିଁ ଉତ୍ପାଦନ କରିଥାଏ; ଯେଉଁ କଥାକୁ ବିଖ୍ୟାତ କବି ଚଣ୍ଡୀଦାସ ତାଙ୍କ ଦୋହାରେ କହିଛନ୍ତି– "ଶୁନହେ ମାନୁଷ ଭାଇ, ସବାର ଉପର ମାନୁଷ୍ ସତ୍ୟ, ତା'ର ଉପର ନେଇଁ ।" ଏଣୁ ମଣିଷ ଶ୍ରମି... ପୂର୍ଣ୍ଣାଙ୍ଗ ବିକାଶର ଚିନ୍ତା ଏ କ୍ଷେତ୍ରରେ ଏକାନ୍ତ ଅପରିହାର୍ଯ୍ୟ ।

ଶ୍ରମିକ କାର୍ଯ୍ୟସ୍ଥଳୀରେ ସ୍ୱାସ୍ଥ୍ୟକୁ କୁପ୍ରଭାବିତ କରୁଥିବା କେତେ... ବିପଦର ସମ୍ମୁଖୀନ ହୋଇଥାଏ । ଶ୍ରମିକର ସ୍ୱାସ୍ଥ୍ୟକୁ ରକ୍ଷା କରିବା ପା... ଶିଳ୍ପରେ ବିପଦ-ଆପଦ ଦୂର କରିବା ଏକାନ୍ତ ଜରୁରୀ । ଅ... ପକ୍ଷରେ ଯଦିସମ୍ଭବ ହୁଏ, ତେବେ ବିପଦରୁ ରକ୍ଷା କରି... ପାଇଁ ଯଥେଷ୍ଟ ସୁରକ୍ଷା ପ୍ରଦାନ କରିବା ଆବଶ୍ୟକ ।

ସାଧାରଣତଃ ଜଣେ ଶ୍ରମିକ କାର୍ଯ୍ୟସ୍ଥଳୀ... ଶାରିରୀକ/ରାସାୟନିକ/ପ୍ରାଣୀତତ୍ତ୍ୱ ଓ ମନସ୍ତାତ୍ତ୍ୱିକ ବିପଦର ସମ୍ମୁ... ହୋଇଥାଏ ।

୧–ଆବଦ୍ଧ ନ ହୋଇଥିବା ମେସିନ, ଅତ୍ୟଧିକ ଉତ୍ତାପ ସୃ... ଘଟାଉଥିବା ଯନ୍ତ୍ରପାତି ଦୂଷିତ ବାୟୁଚଳାଚଳ ଓ କ୍ଷୀଣ ଆଲୋକ ... ଅନୁନ୍ନତ ଗୃହ ବ୍ୟବସ୍ଥାରୁ ଯେଉଁ ଅସୁଧାମାନ ଉପୁଜ ହୋଇଥା... ସେଗୁଡ଼ିକ ହେଲା ଶାରିରୀକ ବିପଦ ।

୨–ବିଶାକ୍ତ ଏସିଡ୍‌ରୁ ଆଜିକାଲି ଯେଉଁ ଦ୍ରବଣ ଧାତୁ, ବିଷାକ୍ତ ... ଓ ବାଷ୍ପରୁ ଉପୁଜ ହେଉଥିବା ବିପଦ ହେଲା ରାସାୟନିକ ବିପଦ ।

୩–ଜୀବାଣୁରୁ ଉପୁଜ ହେଉଥିବା ଆନୁରାକ୍ସ ଓ ଟିଟା... ହେଲା ପ୍ରାଣୀତତ୍ତ୍ୱ ବିପଦ ।

୪–ମାନବିକତା ମୂଲ୍ୟ ପ୍ରତି ଅସମ୍ମାନ ପ୍ରଦାନ କରିବା ହେ... ମନସ୍ତାତ୍ତ୍ୱିକ ବିପଦ ।

ଉପଯୁକ୍ତ ବିପଦ ସମୂହର ଅବସ୍ଥିତିକୁ ଚିହ୍ନଟ କରାଇ ତା'... ନିରାକରଣରେ ଶ୍ରମିକର ସ୍ୱାସ୍ଥ୍ୟକୁ ଅବ୍ୟାହତ ରଖିବା ... ପରିଚାଳନା କର୍ତ୍ତୃପକ୍ଷଙ୍କ ମୁଖ୍ୟ-ଦାୟିତ୍ୱ ।

ଆଧୁନିକ ଶିଳ୍ପର ଜଟିଳ ଉତ୍ପାଦନ ପ୍ରଣାଳୀ ଯୋଗୁଁ ଶ୍ରମିକମାନେ... ସାଧାରଣତଃ ବିଭିନ୍ନ ପ୍ରକାର କଠିନ/ତରଳ ଓ ବାଷ୍ପୀୟ ପଦାର୍ଥ... ବ୍ୟବହାର କରିଥାଆନ୍ତି । ଏ ସମସ୍ତ ବ୍ୟବହାର ଯୋଗୁଁ କେତେକ ବସ୍ତୁ... ଧୂଳି ଧୂମ, ଉତ୍ତାପ, ବାଷ୍ପ ଓ କ୍ଷତିକାରକ ରଶ୍ମି ସୃଷ୍ଟି ହେତୁ ଏହା ଶ୍ରମିକର... ଶରୀରରେ ପ୍ରବେଶ କରେ । ଏହାର ପରିମାଣ ସ୍ୱରୂପ ଶ୍ରମିକର... ଫୁସ୍‌ଫୁସ୍, ରକ୍ତ, ଚର୍ମ ଓ ଅନ୍ୟାନ୍ୟ ଅଂଗ ପ୍ରତ୍ୟଙ୍ଗରେ ବହୁବିଧ ରୋଗ... ସୃଷ୍ଟି ହୋଇଥାଏ ।

କାର୍ଯ୍ୟର ନିର୍ଦ୍ଦିଷ୍ଟ ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ରୋଗରେ ଜଣେ ଶ୍ରମିକ... ଆକ୍ରାନ୍ତ ହେଲେ ତାହା ପେଶାଗତ ରୋଗ ବୋଲି ଧରାଯାଏ । ଏ... ପରିବେଶରେ ଉପଯୁକ୍ତ ରକ୍ଷାପଦ ବ୍ୟବସ୍ଥା ଶ୍ରମିକମାନଙ୍କ ପକ୍ଷରେ... ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ତାହାହେଲା– ...

ବାୟୁଚଳାଚଳ/ ଦୂଷିତ ବାୟୁ ନିଷ୍କାସନ, ଧୂଳିକଣା ଆଦିକୁ ବନ୍ଦ କରିବା ପ୍ରଣାଳୀ ତଥା ଅନୁମୋଦିତ ପ୍ରତିରକ୍ଷା ମୂଳକ ବ୍ୟବସ୍ଥା ଯଥା— ମୁଖା, ଶ୍ୱାସ ପ୍ରଶ୍ୱାସ ନେବା ନଳ, ଚଷମା ଓ ଯଥେଷ୍ଟ ପ୍ରତିଷେଧ ମୂଳକ ପରିଚ୍ଛଦ ଯଥା— ଗ୍ଲୋଭ, କୋଟ, ଟୋପି, ଦେହ ଢାଙ୍କିବା ବ୍ୟବସ୍ଥା ଆଦି ପରିଚାଳନା କର୍ତ୍ତୃପକ୍ଷଙ୍କ ପକ୍ଷରୁ ସୁବିଧା ବ୍ୟବସ୍ଥା ହେବା ଉଚିତ । ସେହିପରି ସ୍ୱାସ୍ଥ୍ୟ ସମ୍ବନ୍ଧ ସୁବିଧା ସୁଯୋଗ ଓ ଦରକାରେ ଚିକିତ୍ସା ବ୍ୟବସ୍ଥା ମଧ୍ୟ ପ୍ରୟୋଜନ ।

ଶିଳ୍ପାନୁଷ୍ଠାନ ମାନଙ୍କରେ ସୀସା, ଗନ୍ଧକ, ପାରଦ, ମ୍ୟାଗାନିଜ, କାର୍ବନ ଡାଇ ସଲଫାଇଡ୍, ଆଲ୍ଲାସ, ପ୍ରଭୃତିର ବ୍ୟବହାର ଯୋଗୁଁ ଶ୍ରମିକ ବିଭିନ୍ନ ରୋଗର ଶିକାର ହୋଇଥାଏ । ସୀସା ମୁଣ୍ଡବ୍ୟଥା, ମାଂସପେଶୀର ଯୋଡ଼ ଅଂଶରେ ଯନ୍ତ୍ରଣା, ରକ୍ତ ହୀନତା ଜାତ କରେ, ଗନ୍ଧକ ଦାନ୍ତ ଓ ମାଢ଼ିର କ୍ଷତି କରେ, ଫଳରେ ଦାନ୍ତ ଯନ୍ତ୍ରଣା ସୃଷ୍ଟି ହୁଏ । ପାରଦ ମସ୍ତିଷ୍କରେ କୁପ୍ରଭାବ ପକାଏ ଓ ଏକଜିମା ଜାତ କରେ । ମ୍ୟାଙ୍ଗାନିଜ୍ ନିମୋନିଆ, କାର୍ବନ ଡାଇସଲଫାଇଡ୍ ଉତ୍ତେଜନାର ମନୋବୃତ୍ତି, ଭ୍ରାନ୍ତି, ଅଙ୍ଗାର୍ଦ୍ଧ ଘାତ ଜାତ କରେ, ସିଲ ଯକ୍ଷ୍ମା ଜାତ କରେ । ଏଣୁ ଏ ସବୁର ସୁରକ୍ଷା ପାଇଁ ସଚେତ ସଜାଗ ଏକାନ୍ତ ଆବଶ୍ୟକ ।

କାରଖାନା ଆଇନ୍ ଓ ଖଣି ଆଇନ୍ ପ୍ରଭୃତିରେ ଶ୍ରମିକର ସୁରକ୍ଷା ଓ ସ୍ୱାସ୍ଥ୍ୟ ପାଇଁ କିଛି କିଛି ବ୍ୟବସ୍ଥା ଅଛି କିନ୍ତୁ ଏ ବ୍ୟବସ୍ଥା ଯଥେଷ୍ଟ ନୁହେଁ । ତେଣୁ ଆଜିର ପରିପ୍ରେକ୍ଷୀରେ ବିଶେଷ କରି ମାନବିକ ଦୃଷ୍ଟି କୋଣରୁ ପ୍ରତ୍ୟେକ ମାଲିକଙ୍କର ଦାୟିତ୍ୱ ହେଲା ଶ୍ରମିକମାନଙ୍କୁ ଦୁର୍ଘଟଣା ଓ ପେଶାଗତ ରୋଗରୁ ନିଶ୍ଚିତ ଭାବେ ରକ୍ଷା କରିବା ଏବଂ ଏହାର ସୁପରିଚାଳନାରେ ହିଁ ସୁସ୍ଥ ଶ୍ରମିକ ସମାଜ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆମେ ନିର୍ଦ୍ଦିଷ୍ଟ ଉତ୍ପାଦନର ଲକ୍ଷ୍ୟ ହାସଲ କରି ପାରିବା ।

ଭଗତପୁର, କଟକ-୯

# ନବୋଦୟ ବିଦ୍ୟାଳୟ ଓ ପଲ୍ଲୀ-ପ୍ରତିଭା



ଅଧ୍ୟାପକ ଅଶୋକ କୁମାର ହୋତା

ଆମ ଦେଶରେ ସମୁଦାୟ ଲୋକ ସଂଖ୍ୟାର ଶତକଡା ସତୁରୀ ଭାଗ ଲୋକ ଗାଁରେ ବାସ କରନ୍ତି । ନଗର ବା ସହର ଅଞ୍ଚଳରେ ବାସକରୁଥିବା ଲୋକମାନେ ଯେଉଁ କେତୋଟି ସୁବିଧା ସୁଯୋଗ, ଉତ୍ସାହ, ପ୍ରେରଣା ପାଉଥାନ୍ତି, ଗ୍ରାମବାସୀମାନେ ସେଥିରୁ ବଂଚିତ ହୁଅନ୍ତି । ପ୍ରତିଭା ଉପରେ ଗୁରୁତ୍ୱ ଦେଇଥାଣ୍ଡିକଥାଉଣ୍ଡୋଲ, ପ୍ଲାଟୋ ମତ ଦିଅନ୍ତି ଯେ ଗୋଟିଏ ଜାତିର ସବୁଠାରୁ ମୂଲ୍ୟବାନ ସଂପଦ ହେଉଛି ତା'ର ଅଧିବାସୀମାନଙ୍କର ପ୍ରତିଭା । ଗୋଟିଏ ଦେଶରେ କେତୋଟି ପ୍ରତିଭାବାନ ବ୍ୟକ୍ତି ରହୁଛନ୍ତି ତାହା କାହିଁକି ବଡ କଥା ନୁହଁ– ଦେଶ, ପ୍ରତିଭାର ସ୍ୱୀକୃତି, ବିକାଶ, ବିନିଯୋଗ ପାଇଁ ସେମାନଙ୍କୁ କେତେଦୂର ଉତ୍ସାହ କରୁଛି ତାହାହିଁ ଦେଖିବାର କଥା । ଭାବିଲେ ଦୁଃଖ ଲାଗେ ଗାଁରେ ବାସ କରୁଥିବା ବହୁ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଲୋକଲୋଚନକୁ ଆସିନପାରି ବଣର ମଲ୍ଲୀପରି ବଣରେ ହିଁ ମଉଳି ଯାଉଛନ୍ତି । ଏକଦା ପଣ୍ଡିତ ସ୍ୱର ଉଦ୍‌ଘୋଷଣ କରିଥିଲେ– ଦେଶର ଶାସକ ଉପରେ ଈଶ୍ୱରଙ୍କର ନ୍ୟସ୍ତଥିବା ପ୍ରଥମ ଦାୟିତ୍ୱ ହେଉଛି ପରିବାର ତଥା ପରିବେଶ ନିର୍ବିଶେଷରେ ଶିଶୁ ଅବସ୍ଥାରୁ ପ୍ରତିଭାର ପରିଚୟ ପାଇ ସେମାନଙ୍କୁ ଚିହ୍ନିତ କରିବା... ସେ ସୌଭାଗ୍ୟ ଆମର ବର୍ତ୍ତମାନ ଆସିଛି । ସରକାର ପଲ୍ଲୀପ୍ରତିଭା ଉପରେ ଗୁରୁତ୍ୱ ଦେଇ ତା'ର ବିକାଶ କରିବା ପାଇଁ ବଦ୍ଧପରିକର । ଅବହେଳିତ ପଲ୍ଲୀ ଅଞ୍ଚଳରେ ବାସ କରିଥିବା ବିଦ୍‌ବତ୍ତା ତଥା ପ୍ରତିଭା ସମ୍ପନ୍ନ ଶିଶୁମାନଙ୍କୁ ଚିହ୍ନିତ କରି ଉପଯୁକ୍ତ ପରିବେଶ ଦେଇ ସେମାନଙ୍କର ପ୍ରତିଭାର ବିକାଶ କରିବାକୁ ଆମର ସରକାର ତତ୍ପର ହୋଇ ଏକ ନୂତନ ପଦକ୍ଷେପ ହାତକୁ ନେଇଛନ୍ତି, ଯାହାକି ନବୋଦୟ ବିଦ୍ୟାଳୟ ନାମରେ ପରିଚିତ । ନବୋଦୟ ବିଦ୍ୟାଳୟ ଯୋଜନା କେନ୍ଦ୍ରସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଦ୍ୱାରା ନିୟନ୍ତ୍ରିତ । ଏହାକୁ କେନ୍ଦ୍ରସରକାରଙ୍କ ଦୂରଦର୍ଶୀ ତଥା ଆଦର୍ଶ ବିଦ୍ୟାଳୟ ଯୋଜନାର ରୂପାନ୍ତର କୁହାଯାଇପାରେ ।

ଏହି ନବୋଦୟ ବିଦ୍ୟାଳୟ ପଛରେ ଯେଉଁ ମହତ୍ ଉଦ୍ଦେଶ୍ୟ ରହିଛି ତାହା ହେଉଛି ପ୍ରାଥମିକ ଶିକ୍ଷା ଶେଷ କରିଥିବା ଗ୍ରାମୀଣ ଶିଶୁମାନଙ୍କ ମଧ୍ୟରୁ ବିଦ୍‌ବତ୍ତା ତଥା ପ୍ରତିଭା ସମ୍ପନ୍ନ ପିଲାମାନଙ୍କୁ ଚିହ୍ନିତ କରି ନବୋଦୟ ବିଦ୍ୟାଳୟର କାର୍ଯ୍ୟକ୍ରମ କରିଆରେ ସେମାନଙ୍କୁ ଉଚ୍ଚଶୋଭନ ଶିକ୍ଷା ପାଇଁ ଉତ୍ସାହିତ କରିବା । ପ୍ରାଥମିକ ବିଦ୍ୟାଳୟରେ ଦେଶର ବିଭିନ୍ନ ଅଞ୍ଚଳରେ ଏଥିପାଇଁ ଚଳିତ ଚାରିବର୍ଷ ବର୍ଷଗୁଡ଼ିକ ୮୦ଟି ନବୋଦୟ ବିଦ୍ୟାଳୟ ଖୋଲିବାର ଲକ୍ଷ୍ୟସ୍ଥିର କରାଯାଇଛି । ଆସନ୍ତା ତିନିବର୍ଷ ମଧ୍ୟରେ (୧୯୯୦ ମସିହା ସୁଦ୍ଧା) ଭାରତବର୍ଷରେ ଥିବା ସମୁଦାୟ ୪୩୨ଟି ଜିଲ୍ଲାରେ ଏହିପରି ଗୋଟିଏ ଗୋଟିଏ ନବୋଦୟ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିବ । ପ୍ରତି ନବୋଦୟ ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କୁ ମାଗଣାରେ ରହିବା, ଖାଇବାଠୁ ଆରମ୍ଭ କରି ଉପଯୁକ୍ତ ତାଲିମ ପ୍ରାପ୍ତ ଶିକ୍ଷକ, ପାଠାଗାର, ଖେଳ ସାମଗ୍ରୀ ତଥା ଉତ୍ତମ ବିଦ୍ୟାଳୟ ପରିବେଶ ଯୋଗାଇ ଦିଆଯିବ । ଯା' ଫଳରେ ସେମାନେ ନିଜ ନିଜ ପ୍ରତିଭାର ବିକାଶ ତଥା ଭବିଷ୍ୟତ ଜୀବନରେ ତା'ର ବିନିଯୋଗ ପାଇଁ ସକ୍ଷମ ହେବେ । ନବୋଦୟ ବିଦ୍ୟାଳୟରେ ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନଙ୍କ ପାଇଁ ଶତକଡା ୭୫ ଭାଗ ଆସନ ସଂରକ୍ଷିତ ରହିବ । ତଫସିଲଭୁକ୍ତ ଜାତି ଓ ଉପଜାତି ଛାତ୍ରଛାତ୍ରୀମାନେ ଏଥିରେ ସମସ୍ତ ସୁବିଧା ସୁଯୋଗ ପାଇପାରିବେ ।

ସ୍କୁଲରେ ଶିକ୍ଷକ, ପରିବାରରେ ଅଭିଭାବକ ଏପରିକି ସମାଜର ପ୍ରତ୍ୟେକ ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତି ନବୋଦୟ ବିଦ୍ୟାଳୟ ଉପରେ ଚିନ୍ତାକଲେ ମନକୁ ପ୍ରଥମ ପ୍ରଶ୍ନ ଆସେ– କିପରି ପଲ୍ଲୀପ୍ରତିଭା ଚିହ୍ନିତ କରାଯିବ । ଜାତୀୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଗ୍ରାମାଞ୍ଚଳ ପ୍ରତିଭାବାନ ଶିଶୁମାନଙ୍କୁ ଚିହ୍ନିତ କରିବାର ଦାୟିତ୍ୱ ହାତକୁ ନେଇଛନ୍ତି । ସଂପୃକ୍ତ ଜିଲ୍ଲାର ପଞ୍ଚମ ଶ୍ରେଣୀ ପାଶ୍ କରିଥିବା ଛାତ୍ରଛାତ୍ରୀମାନେ ଏଥିପାଇଁ ଏକ ବିଶେଷ ପରୀକ୍ଷାର ସମ୍ମୁଖୀନ ହୋଇ ଉତ୍ତୀର୍ଣ୍ଣ ହେଲାପରେ ନବୋଦୟ ବିଦ୍ୟାଳୟରେ ନାମଲେଖାଇବା ପାଇଁ ଯୋଗ୍ୟ ବିବେଚିତ ହେବେ । ଏହି ପରୀକ୍ଷା ସେମାନଙ୍କର ମାତୃଭାଷା କିମ୍ବା ଆଞ୍ଚଳିକ ଭାଷାରେ ହେବାର ବ୍ୟବସ୍ଥା ରହିଛି । ପଲ୍ଲୀପ୍ରତିଭା ଚିହ୍ନିତ କରଣରେ ମାଧ୍ୟମରୂପେ ବ୍ୟବହୃତ ହେଉଥିବା ବିଶେଷ ପରୀକ୍ଷାରୁ ବର୍ତ୍ତମାନ ବିସ୍ତରକୁ ଜଣାଯାଉ । ଉତ୍ତମ ମାନ ତଥା ଅସାମାନ୍ୟ କ୍ଷମତାସମ୍ପନ୍ନ ଶିଶୁମାନଙ୍କର ପୃଥକୀକରଣ ପାଇଁ ଭାଷା, ଅଙ୍କ ଓ ବୁଦ୍ଧି ଏହିପରି ତିନୋଟି ପରୀକ୍ଷଣର ନିର୍ଦ୍ଦେଶ ବିଭିନ୍ନ ଭାଷା ଯଥା– ଆସାମୀ, ବଙ୍ଗଳା, ଇଂରାଜୀ, ଗାରୋ, ଗୁଜୁରାଟି, ହିନ୍ଦି, କାନାଡା, ଖାସି, କନ୍‌କୋନି, ମାଲାୟାଲମ, ମଣିପୁରୀ, ମରାଠୀ, ମିଜୋ, ଓଡ଼ିଆ, ପଞ୍ଜାବୀ, ସିନ୍ଧି, ତାମିଲ, ତେଲୁଗୁ, ଉର୍ଦ୍ଦୁ ଏହିପରି ଊଣେଇଶଟି ଭାଷା ମାଧ୍ୟମରେ ବିଭିନ୍ନ ସ୍ଥାନକୁ ପଠାଇ ଦିଆଯିବାର ବ୍ୟବସ୍ଥା ରହିଛି ।

ପ୍ରଥମ ପରୀକ୍ଷାଟି ହେଉଛି ଭାଷା ପରୀକ୍ଷଣ ବା ମାତୃଭାଷା ପରୀକ୍ଷଣ । ମାତୃଭାଷା ଉପରେ ଗୁରୁତ୍ୱ ଦେଇ ସ୍ୱଭାବ କବି ଗଙ୍ଗାଧର ମେହେର ଗାଇଥିଲେ–ମାତୃଭୂମି ମାତୃ ଭାଷାରେ ମମତା ଯା' ହୃଦେ ଜନମି ନାହିଁ, ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା ଅଜ୍ଞାନୀ ରହିବେ କାହିଁ । ପ୍ରାଚୀନକାଳରେ ଗୁରୁକୁଳାଶ୍ରମରେ ଶିକ୍ଷାଗ୍ରହଣ କରୁଥିବା ଶିଶୁମାନଙ୍କର ଦକ୍ଷତାର ବିକାଶ କରିବା ପାଇଁ ପଠନ, ଲିଖନ ଓ ଗଣନ ମାଧ୍ୟମରେ ଶିକ୍ଷାଦାନ କରାଯାଉଥିଲା । ତେଣୁ ଶିଶୁର ବିଦ୍‌ବତ୍ତା ତା'ର ମାତୃଭାଷାର ଦକ୍ଷତା ଉପରେ ନିର୍ଭର କରୁଛି । ମାତୃଭାଷାରେ ତିନୋଟି ଅନୁଚ୍ଛେଦ ଦିଆଯିବ । ପ୍ରତ୍ୟେକ ଅନୁଚ୍ଛେଦ ତଳେ କେତୋଟି ପ୍ରଶ୍ନ ରହବ । ସମସ୍ତ ପ୍ରଶ୍ନ ବାଧ୍ୟତାମୂଳକ । ଅନୁଚ୍ଛେଦକୁ ପଢ଼ି, ବୁଝି ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରଶ୍ନପତ୍ର ପୁସ୍ତିକାରେ ହିଁ ଦେବାକୁ ହେବ । ଏଥିପାଇଁ ନିର୍ଦ୍ଦିଷ୍ଟ ସମୟସୀମା ରହିଛି ।

ଦ୍ୱିତୀୟ ପରୀକ୍ଷାଟି ହେଉଛି ଅଙ୍କ ପରୀକ୍ଷଣ । ଭାଷା ବ୍ୟତୀତ ଅଙ୍କ ଉପରେ ଥିବା ଶିଶୁର ଦକ୍ଷତା ମଧ୍ୟ ବିଦ୍ୟାଳୟର ଅନ୍ୟଏକ ପରିପ୍ରକାଶକ । ଏହି ଅଙ୍କ ପରୀକ୍ଷଣରେ ୨୦ଟି ବସ୍ତୁନିଷ୍ଠ ପ୍ରଶ୍ନ ରହିଥିବ । ପ୍ରତି ପ୍ରଶ୍ନ ବାଧ୍ୟତାମୂଳକ ଏବଂ ଏହାର ମଧ୍ୟ ନିର୍ଦ୍ଦିଷ୍ଟ ସମୟସୀମା ରହିଛି ।

ତୃତୀୟ ପରୀକ୍ଷାଟି ହେଲା ବୁଦ୍ଧି ପରୀକ୍ଷଣ । ବ୍ୟକ୍ତିଗତ ଜୀବନରେ ଏପରିକି ଶିକ୍ଷାଦାନ କ୍ଷେତ୍ରରେ ଶିଶୁର ବୁଦ୍ଧିର ସ୍ତର ତା'ର ଛାତ୍ରଜୀବନ ତଥା ବ୍ୟକ୍ତିଗତ ଜୀବନର କୃତିତ୍ୱ ପାଇଁ ସୂଚନା ଦେଇଥାଏ । ତେଣୁ ଶିଶୁର ବିଚକ୍ଷଣତା ତଥା ପ୍ରତିଭା ନିରୂପିତ କରିବାକୁ ଯାଇ ବୁଦ୍ଧି ପରୀକ୍ଷଣ ପ୍ରୟୋଗ କରିବା ଯୁକ୍ତିଯୁକ୍ତ ବୋଲି ମନେହୁଏ । ବୁଦ୍ଧିପରୀକ୍ଷଣ ଦୁଇ ପ୍ରକାର, ଯଥା– ମୌଖିକ ଏବଂ ଅଣମୌଖିକ । ଆମେ ସାଧାରଣତଃ ପର୍ଯ୍ୟବେକ୍ଷଣରୁ ଅବଗତ ହେଉଁ ଯେ ସହର ଓ ନଗରରେ ବାସ କରୁଥିବା ଶିଶୁ ତାହାର ସାମାଜିକ ଓ ସାଂସ୍କୃତିକ ପରିବେଶରୁ ଜ୍ଞାନ ଆହରଣର କେତେକ ସୁବିଧା, ସୁଯୋଗ ଆପଣା ଛାଏଁ ପାଇଥାଏ, ଯେଉଁଥିରୁ କି ପଲ୍ଲୀ ଅଞ୍ଚଳର ଶିଶୁ ବଞ୍ଚିତ ରହେ । ଏହି କେତୋଟି କାରଣରୁ ସହର ବା ନଗରରେ ବାସ କରୁଥିବା ଶିଶୁ ମୌଖିକ ବୁଦ୍ଧି ପରୀକ୍ଷାରେ ଗ୍ରାମାଞ୍ଚଳ ଶିଶୁଠାରୁ ଭଲ କରିବାର ଯଥେଷ୍ଟ ଅବକାଶ ରହିଛି । ଅଧିକନ୍ତୁ, ନବୋଦୟ ବିଦ୍ୟାଳୟ ଯୋଜନା ପଲ୍ଲୀଅଞ୍ଚଳର ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ଗ୍ରାମାଞ୍ଚଳ ଶିଶୁମାନଙ୍କର ବୁଦ୍ଧିସ୍ତର ନିରୂପଣ କରିବାକୁ ଯାଇ ଅଣମୌଖିକ ବୁଦ୍ଧିପରୀକ୍ଷଣ ବ୍ୟବହାର କରିବାର ବ୍ୟବସ୍ଥା ରହିଛି । ଯାହାଫଳରେ ଶିଶୁର ବୁଦ୍ଧି ପରୀକ୍ଷା ଉପରେ ତା'ର ଭାଷା, ସମାଜ, ସଂସ୍କୃତି ଏପରିକି ପରିବେଶ ପ୍ରଭାବ ପକାଇ ପାରିବ ନାହିଁ ।

ଏହି ଅଣମୌଖିକ ବୁଦ୍ଧି ପରୀକ୍ଷଣ ପାଇଁ ଚାରୋଟି ବିଭାଗ ରହିଛି । ପ୍ରତି ବିଭାଗରେ ଦଶଟି ପ୍ରଶ୍ନ ଏବଂ ମୋଟ ସମୟ ସୀମା ଏକ ଘଣ୍ଟା ଧାର୍ଯ୍ୟ କରାଯାଇଛି । ପ୍ରତ୍ୟେକ ବିଭାଗ ପାଇଁ ସ୍ୱତନ୍ତ୍ର ନିର୍ଦ୍ଦେଶ ଏବଂ ସମୟସୀମା ରହିଛି । ପ୍ରତ୍ୟେକ ପ୍ରଶ୍ନ ଫିଗର ବା ଡାଇଗ୍ରାମ ପାଇଁ ଚାରୋଟି ସମ୍ଭାବ୍ୟ ଉତ୍ତର ଫିଗର ବା ଡାଇଗ୍ରାମ ରହିଛି । ଏସବୁ ଭିତରୁ ଛାତ୍ରକୁ ଗୋଟିଏକୁ ଠିକ୍ ଉତ୍ତର ରୂପେ ଚିହ୍ନିତ କରିବାକୁ ହେବ । ଗୋଟିଏ ଦିନରେ ମାତୃଭାଷା, ଅଙ୍କ ଓ ବୁଦ୍ଧି ପରୀକ୍ଷା କ୍ରମାଗତ ଦିଆଯିବାର ବ୍ୟବସ୍ଥା ରହିଛି ।

ଭାରତ ସରକାରଙ୍କ ନବୋଦୟ କାର୍ଯ୍ୟକ୍ରମକୁ ସଫଳ କରିବା ଦିଗରେ ଶିକ୍ଷକମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଅଭିଭାବକ-ଶିକ୍ଷକ ସଂଘ ମାଧ୍ୟମରେ ଏହି କାର୍ଯ୍ୟକ୍ରମର ବିପୁଳ ପ୍ରଚାର କରି, ପିତାମାତାଙ୍କୁ ନବୋଦୟ ବିଦ୍ୟାଳୟ ଉପରେ ସଚେତନ ତଥା ଯତ୍ନଶୀଳ ହେବାକୁ ଶିକ୍ଷକମାନେ ପ୍ରେରଣା ଦେଇ ପାରିବେ । ତା'ଛଡା ଶିକ୍ଷକମାନେ ନିଜେ ଶିକ୍ଷାଦାନ କ୍ଷେତ୍ରରେ ଛାତ୍ରଛାତ୍ରୀମାନଙ୍କୁ ଏ ବିଷୟରେ ଧାରଣା ଦେବା ସଙ୍ଗେ ସଙ୍ଗେ ମାନସିକ ପ୍ରସ୍ତୁତି ପାଇଁ ସେମାନଙ୍କୁ ଉତ୍ସାହିତ କରି ପାରିବେ । ଶିକ୍ଷକମାନଙ୍କର ଯେ କେବଳ ଶିକ୍ଷାଦାନର ଦାୟିତ୍ୱ ରହିଛି ତା' ନୁହେଁ । ସେମାନେ ହେଉଛନ୍ତି ଜାତିର ଦ୍ରୁଷ୍ଟିକର୍ତ୍ତା । ଶିଶୁ ବ୍ୟକ୍ତିତ୍ୱର ସାର୍ବଜନୀନ ବିକାଶ କରିବା ତଥା ଅନ୍ତର୍ନିହିତ ପ୍ରତିଭାର ଆବିଷ୍କାର କରି ତା'ର ପରିପ୍ରକାଶ ତଥା ବିନିଯୋଗ କରିବା ଦିଗରେ ଶିକ୍ଷକ ମାନଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ରହିଛି ।

ଭାରତୀୟ ସମ୍ବିଧାନର ୪୫ ଧାରା ଅନୁଯାୟୀ ୧୪ ବର୍ଷ ବୟସସୀମା ଭିତରେ ରହୁଥିବା ସମସ୍ତ ଭାରତୀୟ ଶିଶୁଙ୍କର ଶିକ୍ଷା ଗ୍ରହଣ ବାଧ୍ୟତାମୂଳକ କରାଯିବା ସ୍ଥଳେ ଭାରତ ସ୍ୱାଧୀନ ହେବାର ଦୀର୍ଘ ୩୯ ବର୍ଷ ଭିତରେ ମଧ୍ୟ ତାହା ସଂପୂର୍ଣ୍ଣରୂପେ କାର୍ଯ୍ୟକାରୀ ହୋଇପାରି ନାହିଁ ! ପ୍ରଥମ ଶ୍ରେଣୀରେ ନାମ ଲେଖାଉଥିବା ପ୍ରତି ଶହେ ଜଣରୁ ପଞ୍ଚମ ଶ୍ରେଣୀକୁ ପଢ଼ିଥିବା ବେଳକୁ ମାତ୍ର ଛତିଶି ଜଣ ଦେଖିବାକୁ ମିଳୁଛନ୍ତି । ଏମିତି ଭାବରେ ଶତକଡା ଛତିଏ ଜଣ ପ୍ରାଥମିକ ଶିକ୍ଷା ସମାପ୍ତ କରି ନପାରି ବିରତ ରହୁଛନ୍ତି । ଏହା ସାଧାରଣତଃ ପଲ୍ଲୀଅଞ୍ଚଳରେ ଏବଂ ମୁଖ୍ୟତଃ ବିକାଶଶୀଳ ରାଷ୍ଟ୍ରରେ ଝିଅମାନଙ୍କଠାରେ ବେଶି ଦେଖିବାକୁ ମିଳୁଛି । ଏପରିକି କେତେକ ପାର୍ବତ୍ୟଅଞ୍ଚଳରେ ରହୁଥିବା ଶିଶୁମାନେ ସ୍କୁଲକୁ ଆଦୌ ଯାଉନାହାନ୍ତି । ଗବେଷଣା ସମ୍ବଳିତ ତଥ୍ୟରୁ ଜଣାପଡ଼ିଛି ଯେ, ପଲ୍ଲୀରେ ବାସକରୁଥିବା ଅଧିକାଂଶ ଲୋକଙ୍କର ଆର୍ଥିକ ସ୍ଥିତି ଦାରିଦ୍ର୍ୟର ସୀମାରେଖା ତଳେ ରହିଛି । ତେଣୁ ସେମାନେ ଗୃହ ତଥା ଦୈନନ୍ଦିନ ଜୀବନରେ ନିଜର ଶିଶୁମାନଙ୍କ ସହାୟତା ନେବାପାଇଁ ମନେ କରୁଛନ୍ତି । ଏପରିକି ଶିଶୁକୁ ସ୍କୁଲ ପଠେଇବା ତାଙ୍କର ଆର୍ଥିକ ବିକାଶ ଦିଗରେ ଏକ କୁଠାରାଘାତ ବୋଲି ସେମାନେ ମନେ କରୁଛନ୍ତି । ସେଥିପାଇଁ ସେମାନେ ନିଜ ଭଳି ନିଜର ଶିଶୁକୁ ମଧ୍ୟ ନିରକ୍ଷର କରିବାକୁ ବାଧ୍ୟ ହେଉଛନ୍ତି । ସେମାନଙ୍କର ସାଧାରଣ ଜୀବନ ଯାତ୍ରା ପ୍ରଣାଳୀ ତଥା ଶିଶୁର ଲାଳନ ପାଳନର ଧାରା ଶିଶୁଶିକ୍ଷା ପାଇଁ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ, ଯଦିଓ ଆମ ସରକାର ପଲ୍ଲୀ ଲୋକଙ୍କୁ ସ୍ୱାକ୍ଷର ତଥା ଶିକ୍ଷିତ କରିବା ପାଇଁ ଅଣଆନୁଷ୍ଠାନିକ ଶିକ୍ଷା, ପ୍ରୌଢ଼ ଶିକ୍ଷା, ବୃତ୍ତିଗତ ଶିକ୍ଷା, ଦୂରଶିକ୍ଷା, ମୁକ୍ତ ଶିକ୍ଷା, ନିରନ୍ତର ଶିକ୍ଷା ଯୋଗାଇ ଦେବାରେ ଯଥେଷ୍ଟ ଚେଷ୍ଟା ଚଳେଇଛନ୍ତି । ଯେତେବେଳେ ପର୍ଯ୍ୟନ୍ତ ପଲ୍ଲୀବାସୀଙ୍କ ଆର୍ଥିକ ସ୍ଥିତିର ମାନ ଉନ୍ନତ ନ ହୋଇଛି, ସେମାନଙ୍କର ଚିନ୍ତାଧାରାର ପରିବର୍ତ୍ତନ ତଥା ପ୍ରସାର ନ ଘଟିଛି, ସେତେବେଳେ ପର୍ଯ୍ୟନ୍ତ ସରକାରଙ୍କ ଏହି ମହତ୍ ଆଦର୍ଶ ବାସ୍ତବତାର ରୂପ ନେଇ ପାରିବ ନାହିଁ ।

ଦ୍ୱିତୀୟତଃ ଅନ୍ୟ ଶିଳ୍ପୋନ୍ନତ ବିକଶିତ ରାଷ୍ଟ୍ର ତୁଳନାରେ ବିକାଶଶୀଳ ରାଷ୍ଟ୍ର ହିସାବରେ ଭାରତ ତା'ର ସର୍ବମୋଟ ଜାତୀୟ ଉତ୍ପାଦନର ଖୁବ୍ କମ ଅଂଶ ଶିକ୍ଷା ଦିଗରେ ବିନିଯୋଗ କରୁଛି । ଆମର ପରିକଳ୍ପିତ ନବୋଦୟ ବିଦ୍ୟାଳୟ କାର୍ଯ୍ୟକ୍ରମ ଯେ କେବଳ ସମୟ ସାପେକ୍ଷ ତା ନୁହେଁ, ଏହା ବ୍ୟୟସାପେକ୍ଷ ମଧ୍ୟ । ତେଣୁ ଆମର ନବୋଦୟ ବିଦ୍ୟାଳୟକୁ କାର୍ଯ୍ୟକାରୀ କରି ଗ୍ରାମାଞ୍ଚଳ ପ୍ରତିଭାର ବିକାଶ କରିବାକୁ ହେଲେ ପଲ୍ଲୀବାସୀଙ୍କ ଶିକ୍ଷା, ଅର୍ଥଗତ କ୍ଷମତା, ଚିନ୍ତାଧାରା, ଦୃଷ୍ଟିକୋଣର ପରିବର୍ତ୍ତନ କରି ଶିକ୍ଷାଦିଗରେ ରାଷ୍ଟ୍ରର ସର୍ବମୋଟ ଜାତୀୟ ଉତ୍ପାଦନ ଅଧିକାଂଶ ଅର୍ଥ ବିନିଯୋଗ କରିବାକୁ ହେବ । ତା ସଙ୍ଗେ ସଙ୍ଗେ ସ୍କୁଲ ଶିକ୍ଷକଙ୍କଠାରୁ ଆରମ୍ଭ କରି ଶିକ୍ଷାବିତ୍, ଶାସକ, ରାଜନୀତିଜ୍ଞ, ସମାଜସେବୀ, ସରକାରଙ୍କ ଭାରପ୍ରାପ୍ତ ଅଫିସର, ପଲ୍ଲୀବାସୀ ସମସ୍ତେ ସାମିଲ୍ ହୋଇ ଏ ଦିଗରେ ଉପଯୁକ୍ତ କାର୍ଯ୍ୟପନ୍ଥା ଗ୍ରହଣ କରିବା ବାଞ୍ଛନୀୟ ।

ପ୍ରଶିକ୍ଷଣ ମହାବିଦ୍ୟାଳୟ
ଟିଟିଲାଗଡ଼

# ବିବାହରେ ବୈଦିକ ମନ୍ତ୍ରର ତାତ୍ପର୍ଯ୍ୟ



କୁମାରୀ ଶୁଭଲକ୍ଷ୍ମୀ ମହାନ୍ତି

ବିବାହ ହେଉଛି ଏକ ପବିତ୍ର ସଂସ୍କାର ଓ ଦ୍ୱିତୀୟ ଆଶ୍ରମ ପ୍ରବେଶ । ଏଥିରୁହିଁ ଗାର୍ହସ୍ଥ୍ୟ ଜୀବନର ଶୁଭାରମ୍ଭ ହୁଏ । ସ୍ତ୍ରୀ ହେଉଛି ପୁରୁଷର ଜୀବନ ସଙ୍ଗିନୀ ଓ ତାହାର ଅର୍ଦ୍ଧାଙ୍ଗିନୀ । ସ୍ତ୍ରୀ ବିନା ସେ କୌଣସି ଧର୍ମୋପାସନା କରିପାରେ ନାହିଁ । ସେ କୌଣସି ଧର୍ମକାର୍ଯ୍ୟ କଲାବେଳେ ସ୍ତ୍ରୀ ତାହାର ବାମ ପାର୍ଶ୍ୱରେ ଥାଏ । ଆର୍ଯ୍ୟ ସଂସ୍କୃତିରେ ସ୍ୱାମୀ ପକ୍ଷରେ ସ୍ତ୍ରୀ କଣ ହୋଇ ପାରେ ତାହା "ମହାମନୁଷ୍ୟାର୍ଯ୍ୟ" ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି—

"କାର୍ଯ୍ୟେଷୁ ମନ୍ତ୍ରୀ କରଣେଷୁ ଦାସୀ
ଭୋଜ୍ୟେଷୁ ମାତା ଶୟନେଷୁ ରମ୍ଭା ।
ଧର୍ମାନୁକୂଳା କ୍ଷମୟା ଧରିତ୍ରୀ
ଭାର୍ଯ୍ୟା ଚ ଷାଡ୍‌ଗୁଣ୍ୟ ବତୀହ ଦୁର୍ଲଭା"

ଅର୍ଥାତ୍ ମନ୍ତ୍ରଣାରେ ସେ ମୋର ମନ୍ତ୍ରୀ, କାର୍ଯ୍ୟରେ ସେ ମୋର ସ୍ୱକରାଣୀ, ଧର୍ମ କାର୍ଯ୍ୟରେ ସେ ମୋର ସହଧର୍ମିଣୀ, ସହନଶୀଳତାରେ ସେ ଧରଣୀ, ମମତାରେ ସେ ମୋର ଅବିକଳ ଜନନୀଙ୍କ ପରି; ଶଯ୍ୟାରେ ସେ ଠିକ୍ ରମ୍ଭା ସଦୃଶ ଓ ଖେଳ କୌତୁକରେ ସେ ମୋର ସହଚରୀ । ଏହା ହେଉଛି ହିନ୍ଦୁ ସ୍ତ୍ରୀର ଯଥାର୍ଥ ଆଦର୍ଶ ।

ବୈଦିକ ଯୁଗରେ ମହାନ୍ ଋଷିମାନେ ବିବାହିତ ଥିଲେ । ସେମାନେ ଉଚ୍ଛୃଙ୍ଖଳ କାମୁକ ଜୀବନ ଯାପନ କରୁ ନଥିଲେ । ପ୍ରାର୍ଥନା ଫଳରେ ଯେଉଁ ସନ୍ତାନ ଜନ୍ମ ଗ୍ରହଣ କରେ ସେ ଆର୍ଯ୍ୟ । ପବିତ୍ର ବେଦ ମନ୍ତ୍ରୋଚ୍ଚାରଣ ରସାସ୍ୱାଦନ ମାଧ୍ୟମରେ ନୂତନ ସନ୍ତାନର ଗର୍ଭ ସଞ୍ଚାର ହୁଏ । ଯୌନ ମିଳନ କେବଳ ଇନ୍ଦ୍ରିୟ ସମ୍ଭୋଗ ପାଇଁ ଉଦ୍ଦିଷ୍ଟ ନୁହେଁ— ଗୋଟିଏ ପବିତ୍ର ମାନବ ଶରୀର ଗଠନ ଉଦ୍ଦେଶ୍ୟରେ ସେହି ସୃଜନା ଶକ୍ତିର ବିନିଯୋଗ ହୋଇଥାଏ । କାମୁକ ଓ ଅସଂଯତ ଜୀବନ ଯାପନ କରିବା ଗୃହସ୍ଥାଶ୍ରମ ନୁହେଁ । ନଦୀକୁ ଯେପରି 'ନଦୀକୂଳ', ନରକୁ ସେପରି ନାରୀ । ନାରୀ ହେଉଛି ଅମୃତ ନିସ୍ୟନ୍ଦିନୀ; ସେ ହିଁ ପୁରୁଷକୁ ସତ୍ୟ ଆଡ଼କୁ ସୃଜନ କରିନିଏ । ସ୍ୱାମୀହିଁ ସ୍ତ୍ରୀର ସର୍ବସ୍ୱ । ଏ ସମ୍ପର୍କରେ 'ବ୍ରହ୍ମ ବୈବର୍ତ୍ତ ପୁରାଣ' ଶ୍ରୀକୃଷ୍ଣ ଜନ୍ମ ଖଣ୍ଡରେ ଉକ୍ତିଛି—

"ସର୍ବ ବେଦ ମୟ ସ୍ୱାମୀ ସର୍ବ ଦେବ ମୟଃ ଶ୍ରୁତି
ସର୍ବ ପୁଣ୍ୟ ସ୍ୱରୂପଶ୍ଚ ପତିରୂପୀ ଜନାର୍ଦ୍ଦନ ॥"

ବିବାହ ଏକ ପରମ ପବିତ୍ର ଅନୁଷ୍ଠାନ । ସନାତନ ଧର୍ମରେ ବିବାହର ଆଦର୍ଶକୁ ପ୍ରତିପାଦିତ କରିବା ପାଇଁ ବିବାହ— ସଂସ୍କାର କାଳୀନ କତିପୟ ମନ୍ତ୍ର ବିଶ୍ଳେଷଣ କରିବା ଉଚିତ ହେବ ।

ମନୁସଂହିତାରେ ନାରୀକୁ ନେତ୍ରୀ ଭାବରେ ଗ୍ରହଣ କରାଯାଇଛି । ମନୁସ୍ମୃତି ଅନୁସାରେ ଜାୟା, ଜନନୀ ଓ କନ୍ୟା ରୂପରେ ନାରୀ ପୂଜ୍ୟା । ସେ ପ୍ରଦୀପ ପରି ନିଜେ ଜଳି ପୋଡ଼ି ପାଉଁଶ ହୋଇ ଅନ୍ୟମାନଙ୍କୁ ଆଲୋକିତ କରେ । ସନାତନ ଧର୍ମର ସମସ୍ତ ଶାସ୍ତ୍ର ପୁରାଣରେ ସୁସ୍ଥ ସମାଜ ଗଠନ ଦିଗରେ ନାରୀର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ବୋଲି ବର୍ଣ୍ଣିତ ହୋଇଛି । ସେମାନଙ୍କ ଅସୀମ ତ୍ୟାଗ ଓ ତିତିକ୍ଷା ଫଳରେ ପରିବାରର ଉନ୍ନତି ହୁଏ । ନାରୀ ନରକର ଦ୍ୱାର ନୁହେଁ, ସେ ଗୃହ ଲକ୍ଷ୍ମୀ । ମହର୍ଷି ମନୁ ଗୃହସ୍ଥାଶ୍ରମର ମହତ୍ତ୍ୱ ବର୍ଣ୍ଣନା କରି କହିଛନ୍ତି—

'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରାଫଳା କ୍ରିୟା

—(ମନୁସଂହିତା ୩, ୫୬)

ଯେଉଁ ପରିବାରରେ ନାରୀ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯାଏ ସେଠାରେ ଦେବତାମାନେ ବାସ କରନ୍ତି । ଯେଉଁଠାରେ ନାରୀଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାନଯାଏ ସେଠାରେ ସମସ୍ତ ଧର୍ମକାର୍ଯ୍ୟ ବିଫଳ ହୁଏ । ମନୁ କହିଛନ୍ତି— 'ଯଥା ନଦୀନଦାଃ ସର୍ବେ ସାଗରେ ଯାନ୍ତି ସଂସ୍ଥିତିମ୍ ।
ତଥୈବାଶ୍ରମିଣଃ ସର୍ବେ ଗୃହସ୍ଥେ ଯାନ୍ତି ସଂସ୍ଥିତିମ୍'

(ମନୁସଂହିତା ୬, ୯୦)

ଅର୍ଥାତ୍ ଯେପରି ସମସ୍ତ ନଦନଦୀ ସାଗରରେ ମିଳିତ ହୁଅନ୍ତି, ସେହିପରି ସମସ୍ତ ଗୃହସ୍ଥ ଓ ଆଶ୍ରମୀ ଗୃହିଣୀ ଉପରେ ହିଁ ନିର୍ଭର କରିଥାନ୍ତି ।

ଆମ ସମାଜରେ ବିବାହ ଏକ ପବିତ୍ର ବନ୍ଧନ । ସନାତନ ଧର୍ମରେ ବ୍ରାହ୍ମଣର ପବିତ୍ର ମନ୍ତ୍ରୋଚ୍ଚାରଣ ମଧ୍ୟରେ ବିବାହ ବେଦୀରେ ଅଗ୍ନିକୁ ସାକ୍ଷୀ ରଖି ଶୁଦ୍ଧ ପୂତ ହୃଦୟରେ ପତି ପତ୍ନୀକୁ ଗ୍ରହଣ କରନ୍ତି । ଅଗ୍ନି ସତ୍ୟର ପ୍ରତୀକ । ସର୍ବ ଭୁକ୍ । ଅଗ୍ନିରେ ସମସ୍ତ ଆବିଳତାକୁ ଜାଳିଦେଇ ଶୁଦ୍ଧ ପୂତ ମନରେ ପତି ଓ ପତ୍ନୀ ପରସ୍ପରକୁ ଜୀବନ ସାଥୀ ରୂପେ ଗ୍ରହଣ କରନ୍ତି । ସନାତନ ଧର୍ମରେ ବିବାହ ପଦ୍ଧତି ଯେପରି ଦୀର୍ଘ ବୈଦିକ ମନ୍ତ୍ର ସେହିପରି ହୃଦୟସ୍ପର୍ଶୀ । ବିବାହ ଶବ୍ଦକୁ ବିଶ୍ଳେଷଣ କଲେ ଜଣାଯାଏ 'ବି' ଅର୍ଥ ବିଶେଷ ଓ 'ବାହ' ଅର୍ଥ 'ଯାନ' ଅର୍ଥାତ୍ ବିବାହ ଏପରି ଏକ ଯାନ, ଯେଉଁ ଯାନରେ ପତି ଓ ପତ୍ନୀ ଦୁଇଟି ଚକ । ଉଭୟ ଚକ ସମ ଗତିରେ ଗଲେ ଅର୍ଥାତ୍ ସ୍ୱାମୀ ସ୍ତ୍ରୀ ସତ୍ୟ, ଧର୍ମ, ନ୍ୟାୟ, ନିଷ୍ଠା ପାଳନ କରି ଏକ ମନ ଏକ ପ୍ରାଣ ହୋଇ ସଂସାରରେ ଗତି କଲେ ସେମାନଙ୍କର ବୈବାହିକ ଜୀବନ ସୁଖମୟ ହୋଇଥାଏ ତଥା ପରିବାର ଦେଶ ଓ ଜାତିର ସର୍ବବିଧ ଉନ୍ନତି ହୋଇଥାଏ । ବିବାହ ହେଉଛି ପତିପତ୍ନୀଙ୍କର ପୂର୍ଣ୍ଣତାର ସୋପାନ । ସନାତନ ଧର୍ମରେ ଯୁଗ ଯୁଗ ଧରି ଏହି ପବିତ୍ର ବିବାହ ପ୍ରଥା ପ୍ରଚଳିତ ହୋଇ ଆସୁଛି । କନ୍ୟାଦାନ ଶ୍ରେଷ୍ଠ ଦାନ ଭାବରେ ଶାସ୍ତ୍ରରେ ସ୍ୱୀକୃତ ହୋଇଛି । କନ୍ୟାକୁ ରତ୍ନ ଭାବରେ ଗ୍ରହଣ କରାଯାଇଛି । ଏହା କନ୍ୟାର ଶ୍ରେଷ୍ଠତ୍ୱ ତଥା ମହତ୍ତ୍ୱକୁ ହିଁ ବୁଝାଇ ଥାଏ । କନ୍ୟା ଦାନ କରି ପିତା ହୁଅନ୍ତି ଧନ୍ୟ ଓ ଦାନ ଗ୍ରହଣ କରି ପତି ହୁଏ ଜୀବନରେ ପରିପୂର୍ଣ୍ଣ ଓ ସମ୍ମାନୀତ । ଦାନ ଦେଲେ ଦକ୍ଷିଣା ଦେବାକୁ ହୁଏ

ହୁଏ ତେଣୁ ନିଜ ଆଦରଣୀୟା କନ୍ୟାକୁ ଦାନ କରି ପିତା ନିଜ ଶକ୍ତି ମୁତାବକ ଜାମାତା ହସ୍ତରେ କିଛି ଉପହାର, ଉପଢୌକନ ଆଦି ମଧ୍ୟ ଦେଇଥାନ୍ତି । ଯାହା ଛିପ ଯୋଡ଼ିଙ୍କର ନୂତନ ଜୀବନ ଗଠନର ସହାୟକ ହୁଏ । ଏହା ଆଜି ନୁହେଁ ବହୁ ପୁରାକାଳରୁ ସମାଜରେ ଚଳି ଆସିଛି । ଆର୍ଯ୍ୟ ସଂସ୍କୃତିରେ ପ୍ରତ୍ୟେକ ବ୍ୟକ୍ତି ଜୀବନର ବିକାଶ ପାଇଁ ଗୃହସ୍ଥାଶ୍ରମ ଗ୍ରହଣ କରିବା ଏକାନ୍ତ ଜରୁରୀ ବୋଲି କୁହାଯାଇଛି । ବିବାହରୁ ହିଁ ଗୃହସ୍ଥାଶ୍ରମର ଆରମ୍ଭ ହୋଇଥାଏ । ସ୍ନେହ, ଶ୍ରଦ୍ଧା, ତ୍ୟାଗ, ସହିଷ୍ଣୁତା ଓ ଧୈର୍ଯ୍ୟ ଆଦି ପ୍ରଦର୍ଶନ କରି ସୁସ୍ଥ ପରିବାର ଗଠନ କରିବା ବିବାହର ଲକ୍ଷ୍ୟ ।

ବେଦ ପୁରୁଷଙ୍କୁ କହିଛନ୍ତି– ''ମନୁର୍ଭବ ଜନୟା ଦୈବ୍ୟଜନମ୍''

(ଋକ୍‌ବେଦ ୧୦, ୪୩।)

ଅର୍ଥାତ୍ ହେ ପୁରୁଷ ତୁମେ ଉପଯୁକ୍ତ (ପ୍ରକୃତ ମନୁଷ୍ୟ) ହୁଅ ଓ ଦେବ ପ୍ରଜାଙ୍କୁ ଉତ୍ପାଦନ କର'' । ଗୃହିଣୀଙ୍କ ସମ୍ପର୍କରେ ବେଦ କହିଛନ୍ତି–

'ସାମ୍ରାଜ୍ଞୀ ଶ୍ୱଶୁରେ ଭବ, ସାମ୍ରାଜ୍ଞୀ ଅଧିଦେବୃଷୁ'' (ଋକ୍‌ବେଦ ୧୦।୮୫,୪୬)

ଅର୍ଥାତ୍ ହେ ଗୃହିଣୀ ! ଶାନ୍ତ ଦୃଷ୍ଟିରେ ଗୃହ । ସ୍ୱାମୀ ସୋହାଗିନୀ ହୁଅ । ପଶୁ ହିସାବରେ ତାଙ୍କର ଶୁଭ ଚିନ୍ତକ ହୁଅ । ସମସ୍ତ ପଶୁ ସମାଜର କଲ୍ୟାଣ କାରିଣୀ ହୁଅ । ମନସ୍ୱିନୀ ଓ ତେଜସ୍ୱିନୀ ହୁଅ ଏବଂ ସ୍ୱାମୀ, ପରିବାରର ଓ ଗୃହର ଶ୍ରୀ ବୃଦ୍ଧି କର ।

ଏହିପରି ଋକ୍ ବେଦରେ ଅନେକ ଉପଦେଶ ସମଗ୍ର ମାନବ ସମାଜକୁ ( ) ନାରୀ ପୁରୁଷଙ୍କୁ ଦିଆ ଯାଇଛି । ଅଥର୍ବ ବେଦରେ ମଧ୍ୟ କୁହାଯାଇଛି–

'ଇହୈବ ସ୍ତଂ ମା ବି ଯୌଷ୍ଟ''

(ଅଥର୍ବ ୧୪, ୧, ୨୨)

ହେ ପତିପତ୍ନୀ ! ବିବାହ ବେଦୀରେ ଅଗ୍ନି ଦେବତା ଓ ଦଶଦିଗ ପାଳଙ୍କୁ ସାକ୍ଷୀ ରଖି ଯେଉଁ ପ୍ରତିଜ୍ଞା ଗ୍ରହଣ କରିଥିଲ ତାହାକୁ ଭୁଲ ନାହିଁ । ସେଥିରୁ ଟିକେ ମାତ୍ର ବିଚ୍ୟୁତ ହୁଅ ନାହିଁ । କାରଣ ଏହାର ଅବମାନନା ଘୋର ଅନ୍ୟାୟ । ଏହାର ବିରୁଦ୍ଧାଚରଣ ଫଳେ ମନୁଷ୍ୟ ନର୍କଗାମୀ ହୋଇଥାଏ ।

ବିବାହ ବେଦୀରେ ବରକନ୍ୟା ଏକତ୍ର ଉଚ୍ଚାରଣ କରିଥାନ୍ତି–

ସମଂଜନ୍ତୁ ବିଶ୍ୱେ ଦେବା ସମାପୋ ହୃଦୟାନି ନୌ ।
ସଂ ମାତରିଶ୍ୱା ସଂ ଧାତା ସମୁଦେଷ୍ଟ୍ରୀ ଦଧାତୁ ନୌ ।'

(ଋକ୍ ୧୦, ୮୫, ୪୭)

ଅର୍ଥାତ୍– ଉପସ୍ଥିତ ସମସ୍ତ ନରନାରୀଙ୍କୁ ସମ୍ବୋଧନ କରି କହନ୍ତି ଆମେ ଉଭୟ ସ୍ୱେଚ୍ଛାରେ ଖୁସି ମନରେ ଗୃହସ୍ଥାଶ୍ରମରେ ପ୍ରବେଶ କରୁଛୁ । ଆମ ଉଭୟଙ୍କର ହୃଦୟ ଏକ ହେଉ । ଜଳପରି ଆମ ଦୁହିଁଙ୍କର ମନ ହୃଦୟ ମିଶିଯାଉ । ମନୁଷ୍ୟର ପ୍ରାଣବାୟୁ ଯେପରି ପ୍ରିୟ ଆମେ ପରସ୍ପରର ସେହିପରି ପ୍ରିୟ ହେଉ । ସ୍ରଷ୍ଟା ଯେପରି ସୃଷ୍ଟିକୁ ଧାରଣ କରିଛନ୍ତି– ଆମେ ସେହିପରି ପରସ୍ପରର ଆଧାର ହେବୁ । ଋକ୍ ବେଦ ଅନୁସାରେ ଐଶ୍ୱର୍ଯ୍ୟ ଓ ସୌଭାଗ୍ୟ ପାଇଁ ବିବାହର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ।

ବୈଦିକ ବିବାହ ବହୁ ପୁରୁଣାକାଳରୁ ପ୍ରଚଳନ ହୋଇ ଆସୁଛି । ଏହାର ମନ୍ତ୍ର ପ୍ରତିଜ୍ଞା ଯେପରି ହୃଦୟସ୍ପର୍ଶୀ ସେହିପରି ପ୍ରଭାବଶାଳୀ । ଶୁଭ ଦିନରେ ଶୁଭ ମୁହୂର୍ତ୍ତରେ ହିନ୍ଦୁ ଧର୍ମର ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇଥାଏ । ପ୍ରଚଳିତ ବିଧି ଅନୁସାରେ କୌଣସି ଏକ ଭଲ ଦିନରେ ଉଭୟ ପକ୍ଷ ଦେବ ମନ୍ଦିରରେ ବନ୍ଧୁବାନ୍ଧବଙ୍କ ଉପସ୍ଥିତିରେ ହିନ୍ଦୁ ଧର୍ମର କୁଳ ଦେବତା ଶ୍ରୀ ଜଗନ୍ନାଥଙ୍କ ମହାପ୍ରସାଦ ବେଢ଼ି ବିବାହ କାର୍ଯ୍ୟ କରିବାକୁ ପ୍ରତିଶ୍ରୁତିବଦ୍ଧ ହୁଅନ୍ତି । ପୁଣି ଅନ୍ୟ ଏକ ଶୁଭ ଦିନରେ କନ୍ୟାପକ୍ଷ ବରକୁ ସ୍ୱୀକାର କରିବାକୁ ଯାଇଥାଆନ୍ତି ।

ଆଉ ଏକ ଶୁଭ ଦିନରେ ନିଜ ନିଜର ନିମନ୍ତ୍ରଣ ପଠାଇବା ନିମନ୍ତେ ଅନୁକୂଳ ଆରମ୍ଭ କରନ୍ତି । ତା'ପରେ ପୁଅ ଝିଅଙ୍କର ରାଶି ଅନୁସାରେ ଶୁଭଲଗ୍ନରେ ଶୁଭ ମୁହୂର୍ତ୍ତରେ ବିବାହ କାର୍ଯ୍ୟ ସମାପନ କରିଥାନ୍ତି ।

ବରଙ୍କୁ ନିମନ୍ତ୍ରଣ କରିବା ପାଇଁ ମଧ୍ୟ ବରଧରା ଯିବାର ପ୍ରଥା ଆମ ସମାଜରେ ପ୍ରଚଳିତ ଅଛି । ବର, ବରକର୍ତ୍ତା, ବରଯାତ୍ରୀମାନଙ୍କ ସହିତ ଆଡ଼ମ୍ବର ସହକାରେ ପହଞ୍ଚିବା ପରେ କନ୍ୟାପିତା ସ୍ୱୟଂ ନାରାୟଣ ଭାବରେ ବରଙ୍କୁ ଗ୍ରହଣ କରି ତାଙ୍କର ପାଦ ଧୋଇ, ଫୁଲ ଚନ୍ଦନ ଦେଇ ତାଙ୍କୁ ବାଚବରଣ କରି ଘରକୁ ନିମନ୍ତ୍ରଣ କରନ୍ତି ଏବଂ ସମସ୍ତ ଚର୍ଚ୍ଚା କରନ୍ତି । ବର ଓ କନ୍ୟା ନାରାୟଣ ଲକ୍ଷ୍ମୀ ଭାବରେ ଚତୁର୍ଥୀ ପର୍ଯ୍ୟନ୍ତ ସମ୍ମାନ ପାଆନ୍ତି ।

ପାଣି ଗ୍ରହଣ ସମୟରେ ବର କନ୍ୟା ପରସ୍ପର ଅଗ୍ନିକୁ ସାକ୍ଷୀ ରଖି କେତେକ ପ୍ରତିଜ୍ଞା କରିବାକୁ ହୋଇଥାଏ । ଯାହାକୁ ଏଡ଼ାଇ ଦେଇ ବା ଅମାନ୍ୟ କରି ଏ ସୃଷ୍ଟିରେ କେହି କେବେ ତିଷ୍ଠିବା ସମ୍ଭବ ନୁହେଁ । ସେଗୁଡ଼ିକ ହେଲା–

''ଓଁ ଗୃଭ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା
ପତ୍ୟା ଜରଦଷ୍ଟି ର୍ଯ୍ଥାସଃ ଭଗୋ ଅର୍ଯ୍ୟମା ସବିତା
ପୁରନ୍ଧିର୍ମହ୍ୟଂ ସାଦୁର୍ଗାର୍ହପତ୍ୟାୟ ଦେବାଃ ॥

(ଋକ୍‌ବେଦ ୧୦, ୮୫, ୩୬)

ଅର୍ଥାତ୍ ବର କହନ୍ତି ହେ ବରାନନେ ମୁଁ ତୁମକୁ ସ୍ତ୍ରୀ ରୂପେ ଗ୍ରହଣ କରୁଛି । ଉତ୍ତମ ସନ୍ତାନ ଓ ସମୃଦ୍ଧି ସହିତ ତୁମେ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ମୋ ସହିତ ସୁଖ ଶାନ୍ତିରେ କାଳାତିପାତ କର । ସେଇ ଦୟାମୟ ହରି ଆମ ଦୁହିଁଙ୍କୁ ଗୃହସ୍ଥାଶ୍ରମର ପୂର୍ତ୍ତି ପାଇଁ ନିଯୁକ୍ତ କରନ୍ତୁ । ବେଦୀ ନିକଟରେ ଉପସ୍ଥିତ ସମସ୍ତ ଗୁରୁଜନ ଆମକୁ କଲ୍ୟାଣ କରନ୍ତୁ ।

ଓଁ ଭଗସ୍ତେ ହସ୍ତମଗ୍ରଭୀତ୍ ସବିତା ହସ୍ତମଗ୍ରଭୀତ୍
ପତ୍ନୀ ତ୍ୱମସି ଧର୍ମଣାହଂ ଗୃହପତିସ୍ତବ ॥

(ଅଥର୍ବ ୧୪, ୧, ୫୧)

ଅର୍ଥାତ୍ ହେ ବରାନନେ ! ମୁଁ ତୁମକୁ ମୋର ସ୍ତ୍ରୀ ଭାବରେ ସ୍ୱୀକାର କରୁଛି । ସନ୍ତାନ ଉତ୍ପାଦନରେ ସମର୍ଥଶାଳୀ ମୁଁ ତୁମର ହସ୍ତ ଗ୍ରହଣ କରୁଛି । ଧର୍ମରେ ଆମେ ସ୍ୱାମୀ ସ୍ତ୍ରୀ । ଉଭୟେ ଗୃହର ସମସ୍ତ କର୍ମ ଖୁସି ମନରେ ସଂପାଦନ କରିବା । ଅସିଦ୍ଧାଚରଣ, ବ୍ୟଭିଚାର ଓ ପାପକର୍ମରୁ ଦୂରେଇ ରହିବା ।

ଓଁ ମମେୟମସ୍ତୁ ପୋଷ୍ୟା ମହ୍ୟଂ ତ୍ୱା ଦାଦ୍ ବୃହସ୍ପତିଃ ।
ମୟା ପତ୍ୟା ପ୍ରଜାବତି ଶଂ ଜୀବ ଶରଦଃ ଶତମ୍ ॥

(ଅଥର୍ବ ୧୪,୧,୫୨)

ହେ ଗୃହିଣୀ ! ଜଗଦ୍‌କର୍ତ୍ତା ପରମେଶ୍ୱର ମୋତେ ତୁମକୁ ଦାନ କରିଛନ୍ତି ଅର୍ଥାତ୍ ମୋ ପାଇଁ ତୁମକୁ ରଖିଛନ୍ତି । ତୁମେ ମୋର ପୋଷଣ ଯୋଗ୍ୟା ଧର୍ମପତ୍ନୀ । ମୋ ସହିତ ଶହେ ବର୍ଷ ପର୍ଯ୍ୟନ୍ତ ଶାନ୍ତିରେ କାଳାତିପାତ କର ।

ଓଁ ତ୍ୱଷ୍ଟା ବାସୋ ବ୍ୟଦଧାଚ୍ଛୁଭେକଂ ବୃହସ୍ପତେଃ ପ୍ରଶିଷା କବୀନାମ୍ ।
ତେନେମାଂ ନାରୀଂ ସବିତା ଭଗଶ୍ଚ ସୂର୍ଯ୍ୟାମିବ ପରିଧତ୍ତା ପ୍ରଜୟା ॥

(ଅଥର୍ବ ୧୪,୧,୫୩)

ଅର୍ଥାତ୍–ହେ ପ୍ରିୟେ ! ଏ ସଂସାରରେ ଈଶ୍ୱରଙ୍କ କୃପାରୁ ଆଦର୍ଶ ଦମ୍ପତି ସୃଷ୍ଟି ହୁଅନ୍ତି । ସେଇ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି– ତୁମେ ଶୁଭବସ୍ତ୍ର ପରିହିତା ବିଦ୍ୟୁତ୍ ପ୍ରାୟ ମୋ ହୃଦୟରେ, ମନରେ ସ୍ଥାନ ପାଅ ଏବଂ ମୋ ଠାରୁ ସୁଖ ଶାନ୍ତି ଲାଭକର । ସୂର୍ଯ୍ୟ ଯେପରି ନିଜର ପ୍ରଖର ଜ୍ୟୋତିକୁ ଧାରଣ କରି ସଂସାରକୁ ନିଜର କିରଣ ପ୍ରଦାନ କରୁଛନ୍ତି ସେହିପରି ପରମାତ୍ମାଙ୍କ କୃପାରୁ ମୁଁ ମୋର ଏହି ଧର୍ମପତ୍ନୀଙ୍କୁ ମୋ ହୃଦୟ ମଧ୍ୟରେ ଗ୍ରହଣ କରୁଅଛି ଓ ଉପଯୁକ୍ତ ସନ୍ତାନ ସୃଷ୍ଟି କରିବା ପାଇଁ ପ୍ରାର୍ଥନା କରୁଅଛି ।

ଏ ସମସ୍ତ ମନ୍ତ୍ର ସ୍ୱାମୀ ଯେଉଁପରି ଭାବରେ ଉଚ୍ଚାରଣ କରନ୍ତି ସ୍ତ୍ରୀ ମଧ୍ୟ ସ୍ୱାମୀଙ୍କୁ ସମ୍ବୋଧନ କରି ସେହିପରି ଉଚ୍ଚାରଣ କରନ୍ତି ।

''ଓଁ ଇନ୍ଦ୍ରାଗ୍ନୀ ଦ୍ୟାବାପୃଥିବୀ ମାତରିଶ୍ୱା ମିତ୍ରାବରୁଣା
ଭଗୋ ଅଶ୍ୱିନୋଭୋ । ବୃହସ୍ପତିର୍ମରୁତୋ ବ୍ରହ୍ମ ସୋମ
ଇମାଂ ନାରୀଂ ପ୍ରଜୟା ବର୍ଧୟନ୍ତୁ' ।

(ଅଥର୍ବ ୧୪,୧,୫୪)

ବର କହନ୍ତି ହେ ଈଶ୍ୱର ବିଦ୍ୟୁତ୍, ସୂର୍ଯ୍ୟ, ଅଗ୍ନି, ଧର୍ମ, ଭୂମି, ପ୍ରାଣ, ଉଦାନ, ବୈଦ୍ୟ, ନ୍ୟାୟପତି ଏ ସମସ୍ତଙ୍କ ଆଶୀର୍ବାଦରୁ ମୋର ଭାର୍ଯ୍ୟା ଅଭ୍ୟୁଦୟ ଲାଭ କରନ୍ତୁ । କନ୍ୟା କହନ୍ତି– ହେ ପ୍ରଭୁ ! ମୁଁ ନିବେଦନ କରୁଛି ଆଶୀର୍ବାଦ ଭିକ୍ଷା କରୁଛି ମୋର ପତି ସଦା ସର୍ବଦା ପ୍ରସନ୍ନ ଚିତ୍ତରେ ରହନ୍ତୁ । ଆମେ ଉଭୟେ ଗୃହସ୍ଥାଶ୍ରମରେ ପ୍ରବେଶ କରି ସୁଖ ସମୃଦ୍ଧି ଲାଭ କରୁ ।

ପୁଣି ବର କହନ୍ତି–

''ଓଁ ଅହଂ ବି ଷ୍ୟାମି ମୟି ରୂପମସ୍ୟା ବେଦବିଦ୍ ପଶ୍ୟନ୍
ମନସଃ କୁଳାୟମ୍ । ନସ୍ତେୟମଦମି ମନସୋଦମୁଚ୍ୟେ
ସ୍ୱୟଂ ଶ୍ରଥ୍ନାନା ବରୁଣସ୍ୟ ପାଶାନ୍ ॥

(ଅଥର୍ବ ୧୪,୧,୫୭)

ଅର୍ଥାତ୍ ହେ କରୁଣାମୟୀ– କୁଳର ମର୍ଯ୍ୟାଦା ରକ୍ଷା ପାଇଁ ସମୃଦ୍ଧି ରକ୍ଷା ପାଇଁ ଅଭିଳାଷ ରଖୁଛି, ଆମ ଉଭୟଙ୍କର ପରସ୍ପର ପ୍ରତି ପ୍ରେମ ଅତୁଟ ରହୁ । ହେ ପ୍ରିୟେ । ଜୀବନରେ କୌଣସି ବିଷୟ ତୁମ ପାଖରେ ଲୁଚାଇ ରଖିବି ନାହିଁ । ମନରେ ତୁମପ୍ରତି କୌଣସି ପାପ ଚିନ୍ତା କପଟତା ରଖିବି ନାହିଁ । ମନରେ କେବେ ତୁମକୁ ସନ୍ଦେହ କରିବି ନାହିଁ, ସେହିପରି କନ୍ୟା କହନ୍ତି– ହେ ସ୍ୱାମୀ ମୁଁ ମଧ୍ୟ ମୋର ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ତୁମ ସହିତ କପଟ ଆଚରଣ ନକରି ସରଳ ମନରେ ତୁମ ସହିତ ଜୀବନ ଅତିବାହିତ କରିବି ।

ଏଇ ଛଅ ଗୋଟି ମନ୍ତ୍ର ବର ଓ କନ୍ୟା ନିଜ ମୁହଁରେ ହିଁ ଉଚ୍ଚାରଣ କରିଥାଆନ୍ତି । ବେଦରେ– ସ୍ୱାମୀ ସାମବେଦ ପରି ପ୍ରଶଂସିତ । ସ୍ତ୍ରୀ ଋକ୍‌ବେଦ ପରି ପ୍ରଶଂସିତା, ସ୍ୱାମୀ ହେଉଛନ୍ତି ସୂର୍ଯ୍ୟ ଏବଂ ଧରିତ୍ରୀ ଭାବରେ ସ୍ଥାନ ପାଇଛନ୍ତି । ଯୁଗେ ଯୁଗେ ନାରୀଜାତି ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କୁ ନିଜର କଲ୍ୟାଣ କାମନା କରି ପ୍ରାର୍ଥନା କରନ୍ତି ହେ ଈଶ୍ୱର । ଆମାତେ ପିତୃ କୁଳରୁ ଛିନ୍ନ କରନ୍ତୁ ଏବଂ ପତି ଗୃହରେ ସଂଯୋଗ କରନ୍ତୁ ଏବଂ ଆମ୍ଭ ଇହକାଳ ପରକାଳ ସ୍ୱାମୀ ଦେବତାଙ୍କ ନିକଟରୁ କେବେହେଲେ ପୃଥକ କରନ୍ତୁ ନାହିଁ । ମୋର ସ୍ୱାମୀ ଦୀର୍ଘାୟୁ ହୁଅନ୍ତୁ । ମୋର ପରିବାର ଧନ ଧାନ୍ୟରେ ପରିପୂର୍ଣ୍ଣ ହୁଅନ୍ତୁ ।

ସେହିପରି ମଧ୍ୟ କନ୍ୟାକୁ ଦେବୀ ଲକ୍ଷ୍ମୀର ମର୍ଯ୍ୟାଦା ଦେଇ କହିଥାନ୍ତି– ହେ ବଧୂ ! ତୁମେ ଅନ୍ନପୂର୍ଣ୍ଣା, ସରସ୍ୱତୀ, ଐଶ୍ୱର୍ଯ୍ୟମୟୀ ଅଟ । ହେ ପ୍ରଭୁ ! ଏଇ କାର୍ଯ୍ୟ ସ୍ୱରୂପିଣୀ ନାରୀକୁ ମୁଁ ବଧୂ ଭାବରେ ସ୍ୱୀକାର କରୁଛି । ଏହି ଜାୟାକୁ ସୁସନ୍ତାନ ପ୍ରଦାନ କରନ୍ତୁ । ବେଗବତୀ ଜଳଧାରା ଯେପରି ସମସ୍ତ ପ୍ରତିବନ୍ଧକ ଦୂରକରି ଆଗେଇଯାଏ, ଦୁହେଁ ସେଇପରି ଅଗ୍ରସର ହେଉ ।

ବିବାହ ବେଦୀରେ ସ୍ୱାମୀ ସ୍ୱୀକାର କରନ୍ତି– ହେ ବଧୂ ! ମୁଁ ତୁମକୁ ବରୁଣ ପାଖରୁ, ତୁମର ଜନ୍ମଦାତା ପିତାଙ୍କ ନିକଟରୁ ମୁକ୍ତ କରୁଅଛି । ଗୃହସ୍ଥାଶ୍ରମ ପାଇଁ ତୁମକୁ ଗ୍ରହଣ କରୁଛି ।

ନାରୀ ଶବ୍ଦ ଭାରତୀୟଙ୍କ ମନରେ ମାତୃତ୍ୱକୁ ହିଁ ସ୍ମରଣ କରାଇ ଦିଏ । ଭାରତର ସାଧାରଣ ମନୁଷ୍ୟ ନିକଟରେ– ନାରୀତ୍ୱର ସମସ୍ତ ଶକ୍ତି ମାତୃତ୍ୱରେ ଘନୀଭୂତ ହୋଇଅଛି । ପାଶ୍ଚାତ୍ୟରେ ସ୍ତ୍ରୀ ଗୃହକର୍ତ୍ତ୍ରୀ, ଭାରତୀୟ ଗୃହରେ କର୍ତ୍ତ୍ରୀ ଜନନୀ । ମା ସର୍ବଦା ଆମମାନଙ୍କ ଘରେ ବାସ କରନ୍ତି; ସ୍ତ୍ରୀକୁ ତାଙ୍କ ଅଧୀନରେ ରହିବାକୁ ହେବ । ସ୍ୱାମୀ ସ୍ୱରୂପାନନ୍ଦ ପରମହଂସ କହିଛନ୍ତି– ''ନାରୀ ମଧ୍ୟ ପୁରୁଷ । ପୁରୁଷ ଯେପରି ନାରୀର ଉପାସ୍ୟ, ନାରୀ ମଧ୍ୟ ସେହିପରି ପୁରୁଷର ଉପାସ୍ୟ । ପୁରୁଷ ଯେପରି ନାରୀର ବ୍ରହ୍ମ–ପ୍ରତୀକ, ନାରୀ ମଧ୍ୟ ସେହିପରି ପୁରୁଷର ବ୍ରହ୍ମ ପ୍ରତୀକ । ନାରୀ ଯେପରି ନିଜର ଯାବତୀୟ ସାତ୍ତ୍ୱିକୀ ବୃତ୍ତି ଦ୍ୱାରା ପତି ଦେବତାଙ୍କର ଅର୍ଚ୍ଚନା କରିବ, ପୁରୁଷ ପକ୍ଷରେ ମଧ୍ୟ ପତ୍ନୀ

ଦେବୀ ଅନୁରୂପ ଅର୍ଚ୍ଚନୀୟା'' । ନିଜକୁ ବଡ଼ ବୋଲି ମନେ କରି ପୁ
ଜାତିଟା ଏହିପରି ଭାବରେ କେବଳ କାଙ୍ଗାଳ ହୋଇଯାଇଛି । ତାର ମ
ଭଣ୍ଡାର ଶୂନ୍ୟ ହୋଇଯାଇଛି । ନାରୀକୁ ଦାସୀର ଜାତି ବୋଲି ସମୋ
କରି ପୁରୁଷ ବଳ ଦର୍ପିତର କ୍ରୀତ ଦାସ ହିଁ ହୋଇଛି । ଆଉ ଜୋର
ପତି ପୂଜା ଆଦାୟ କରିବାକୁ ଯାଇ ସେ ନିରୁଦ୍ୟମ ନଂପୁସକରେ
ପରିଣତ ହୋଇଯାଇଛି । ନିଜକୁ ନାରୀ ଜାତିର ଗୁରୁ ଆସନରେ ବସ
ସେ ସର୍ବଦା ଖାଲି ହୁକୁମ ପରେ ହୁକୁମ ଜାରି କରି ଚାଲିଛି ଓ ନାର
ଅବାଧ୍ୟତାର କଳ୍ପନା ମନରେ ଉଦିତ ହେବା ମାତ୍ରକେ ସେ ଉଦ
ଦଣ୍ଡରେ ତାର ମସ୍ତକ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଆସିଛି । କିନ୍ତୁ ଗୁରୁତ୍ୱ ଅର୍ଜନ ପ
ଯେଉଁ ଚେଷ୍ଟା ଆବଶ୍ୟକ ସେତକ ଅର୍ଜନ କରିବା ପାଇଁ କେବେ ପ୍ରୟ
ହୋଇ ନାହିଁ । ସେ ସ୍ତ୍ରୀ ଜାତିର ପରମେଶ୍ୱର ହେବାକୁ ଇଚ୍ଛା କରି ଅ
କିନ୍ତୁ ଭକ୍ତ ପ୍ରତି ଭଗବାନଙ୍କର ପ୍ରାଣର ଯେଉଁ ଅପରିସୀମ ଆକର୍ଷଣ, ତ
ଅନୁଶୀଳନ କରି ନାହିଁ । ଫଳରେ ପୁରୁଷର ମନୁଷ୍ୟତ୍ୱ ମଧ୍ୟରେ ଏ
ବିରାଟ ଅଭାବ ଓ ଶୂନ୍ୟତା ସୃଷ୍ଟି ହୋଇଅଛି । ବୈଦିକ ଯୁଗକୁ ଅନୁଧ୍ୟ
କଲେ ଦେଖାଯାଏ ତୁଲ୍ୟ ଘୃଣ୍ୟ ପ୍ରଥାର ଚିହ୍ନବର୍ଣ୍ଣ ସୁଦ୍ଧା ହିନ୍ଦୁ ଧର୍ମର ବିବ
ପଦ୍ଧତିରେ ନଥିଲା । ସତ୍ୟ ଯୁଗରେ ମିଥିଳାର ରାଜା ଜନକ ତାଙ୍କ କ
ସୀତା ଠାକୁରାଣୀଙ୍କୁ ଦଶରଥ ପୁତ୍ର ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ରଙ୍କ ସହି
ବିବାହ ଦେଇ ଅକଳନ ଧନ, ରତ୍ନ, ହାତୀ, ଘୋଡା ଦାନ ଦେଇଥି
ମାତ୍ର ଏଥିପାଇଁ ରାଜା ଦଶରଥ କିଛି ଦାବୀ କରି ନଥିଲେ, ବାଲ୍ମୀକି ଋ
ରାମାୟଣରେ ଲେଖା ଅଛି– ରାଜା ଲୋମପାଦଙ୍କ ରାଜ୍ୟରେ ବୃଷ୍ଟି
ହେବାରୁ ସେ ବୃଷ୍ଟି ହେବା ନିମନ୍ତେ ଋଷ୍ୟଶୃଙ୍ଗ ମୁନିଙ୍କୁ ନିମନ୍ତ୍ରଣ କ
ଆଣିଥିଲେ ଏବଂ ଅତିଥି ସତ୍କାର କରିବାକୁ ଯାଇ ନିଜର ପରମ ସର୍ବ
ସମ୍ପନ୍ନା ରୂପବତୀ କନ୍ୟା ଶାନ୍ତାଙ୍କୁ ତାଙ୍କ ହସ୍ତରେ ଦାନ କରି ଶ୍ରେଷ୍ଠ ସ
ଦେଇଥିଲେ । ଏବଂ ଜାମାତାଙ୍କୁ ବହୁ ଧନ ସମ୍ପତ୍ତି ଦେଇଥିଲେ ମ
ଋଷ୍ୟଶୃଙ୍ଗଙ୍କୁ ଏଥିପାଇଁ ତାଲିକା ପ୍ରସ୍ତୁତ କରିବାକୁ ହୋଇଥିଲା । ନି
ସ୍ନେହର କନ୍ୟାକୁ ଦେଇ ରାଜା ସ୍ନେହ ବଶତଃ ଯାହା ସ୍ୱଇଚ୍ଛା
ଦେଇଥିଲେ । ମାତ୍ର ଋଷି ତାହା ଗ୍ରହଣ ନକରି ସେ ସମସ୍ତ ସ
ଜନସାଧାରଣଙ୍କ ସେବାରେ ଉତ୍ସର୍ଗ କରି କେବଳ କନ୍ୟା ରତ୍ନ ଧରି ଫେ
ଯାଇଥିଲେ । ସେହିପରି କଣ୍ୱ ମୁନି, କନ୍ୟା ଶକୁନ୍ତଳାଙ୍କୁ ରାଜା ଦୁଷ୍ମ
ଅର୍ପଣ କରି କୌଣସି ଜିନିଷ ବା ସମ୍ପତ୍ତି ଦେଇ ନଥିଲେ । ମହାର
ଅଶ୍ୱପତି ଅଜସ୍ର ଧନ ସମ୍ପତ୍ତି ହାତୀ ଘୋଡା ଦେଇ ତାଙ୍କର କନ୍ୟା ସ
ଶିରୋମଣି ସାବିତ୍ରୀଙ୍କୁ ସତ୍ୟନିଷ୍ଠ ଅରଣ୍ୟବାସୀ ସତ୍ୟବାନଙ୍କ ହସ୍ତ
ଅର୍ପଣ କଲାବେଳେ, ପରମ ସତ୍ୟବ୍ରତ ସତ୍ୟବାନ ତନ
ତାଙ୍କର ଏକାନ୍ତ ଧର୍ମ କହି ସେ ସବୁ ଫେରାଇ ଦେଇଥିଲେ ଏବଂ ଉ
ଆଦର୍ଶ ପତିପତ୍ନୀ ଭାବରେ ଜୀବନ ବିତାଇବାର ସଙ୍କଳ୍ପ ନେଇଥିଲେ
ସତୀ ସାବିତ୍ରୀ ନିଜର ସତ୍, ଧର୍ମ ବଳରେ ସ୍ୱାମୀଙ୍କ ଜୀବନ ରକ୍ଷା ସ
ପିତୃକୁଳ ରକ୍ଷା କରିଥିଲେ । ଆଜି କିନ୍ତୁ ସେଦିନର ଦାନକୁ ଦାବୀ
ପୁରୁଷ ସମାଜ ନାରୀକୁ ନିର୍ଜୀବ ଖେଳ କଣ୍ଢେଇ ପରି ବ୍ୟବହାର କ
ଦାବୀ କରିଥିବା ଯୌତୁକରେ ସାମାନ୍ୟ କମ୍ ହେଲେ ବିବାହ ବେଦୀ
ବସି ଅଗ୍ନି ସାକ୍ଷୀ ରଖି ବୈଦିକ ମନ୍ତ୍ର ଉଚ୍ଚାରଣ କରି ବିବାହ କରିଥିବା କ
ମନକୁ ପାଶୋରି ଦେଉଛି ।

ଏ ଦେଶର ଶହ ଶହ ବରପୁତୀ କଢ଼ ଅକାଳରେ ଝଡି ପଡୁଛି
ଶାଶୁ ଶ୍ୱଶୁର ସ୍ୱାମୀ ସନ୍ତାନ ନେଇ ଘର କରିବାର ସ୍ୱପ୍ନ ନିର୍ମି
ଧୂଳିସାତ୍ ହୋଇଯାଉଛି ।

ଆମ ବୈଦିକ ମତରେ ବିବାହ ସମୟରେ କନ୍ୟାପିତା କନ୍ୟାଦ
କରି ବେଦୀ ଉପରେ କନ୍ୟାର ଦଶଦୋଷ କ୍ଷମା ମାଗିବାର ବିଧି ରହିଛି
କନ୍ୟାପିତା ୫ ଗୋଟି ହରିତା ହାତରେ ଧରି ସେପରି
କହିବେ–''ଦଶ ଦୋଷାଃ ପରିତ୍ୟକ୍ତ୍ୟାଃ ଶରଣଂ ତ୍ୱାମତଃ ପରା
ପାଳିତେୟଂ ତ ମସ୍ତୁନୀ ଦତ୍ତା ପଞ୍ଚ ହରିତକୀ''

ଅର୍ଥାତ୍–ମୋହର ଅତି ଯତ୍ନରେ ପାଳିତା ଆଦରଣୀୟା କନ୍ୟା ପ
ଏଇ ପଞ୍ଚ ଗୋଟି ହରିତକୀ ସମର୍ପଣ କରି ଶରଣ ପଶୁଛି । ଆପଣ ଏ
କନ୍ୟାର ଦଶ ଦୋଷ କ୍ଷମା କରିବେ, କନ୍ୟାର ଦଶଟି ଦୋ

ହେଲା–''ନିର୍ଲଜା ସ୍ୱୈରବୃତ୍ତିଶ୍ଚ ଡାକିନୀ ବ୍ୟଭିଚାରିଣୀ
ମୁଖରା ହିଂସକା ଦୁଷ୍ଟା ମିଥ୍ୟାବାଦିନୀ ଚୋଷିଣୀ
ପଳାୟନ ପରାଭୂୟୋ ଦଶ ଦୋଷା ଇତି ସ୍ମୃତାଃ'' ।

ଅର୍ଥାତ୍–ନିର୍ଲଜା ସ୍ୱୈରଣୀ, ଡାଆଣୀ, ବ୍ୟଭିଚାରିଣୀ, କଟୁଭାଷିଣୀ, ହିଂସାକାରିଣୀ, ଦୁଷ୍କର୍ମକାରିଣୀ, ମିଥ୍ୟାବାଦିନୀ, ସର୍ବଦା ଅସନ୍ତୁଷ୍ଟା, ବାରମ୍ବାର ଶାଶୁଘରୁ ପଳାଉଥିବା ଏହି ଗୁଣ ଗୁଡ଼ିକୁ କନ୍ୟାର ଦଶଦୋଷ କହନ୍ତି ।

ବରପିତା ୫ଟି ଗୁଆ କନ୍ୟାପିତାଙ୍କ ହାତରେ ଦେଇ କହିବେ–

''କନ୍ୟା କନକ ସମ୍ପନ୍ନା କନ୍ୟାଭରଣ ଭୂଷିତା
ପାଳନୀୟା ତତ୍ୱତ୍ପୁତ୍ରୀ ପଞ୍ଚପୁଗୀ ପ୍ରଗୃହ୍ୟତାଂ'' ।

ଅର୍ଥାତ୍ ତୁମର ସ୍ୱର୍ଣ୍ଣ ଓ ନାନାବିଧ ଅଳଙ୍କାର ଯୁକ୍ତ ଏହି କନ୍ୟାରତ୍ନ ମୋର ପାଳନୀୟ ।

ଯୌତୁକ ଏକ ସାମାଜିକ ବ୍ୟାଧି । ଯୌତୁକଜନିତ କଳୁଷିତ ଚେତନା ପବିତ୍ର ବିବାହ ବନ୍ଧନରେ ବାଧା ସୃଷ୍ଟି କରୁଛି । ଦାମ୍ପତ୍ୟ ଜୀବନ ମଧୁର ନ ହୋଇ ବିଧୁର ହେଉଛି । କନ୍ୟାର ଅନ୍ୟନାମ ଦୁହିତା ଅର୍ଥାତ୍ ବାପଘର ଏ ଶାଶୁଘର ପାଇଁ ହିତ । ଆଜି ଯୌତୁକ ଯୋଗୁଁ ଝିଅ ଜନ୍ମ ଏକ ଅଭିଶାପରେ ପରିଣତ ହୋଇଛି । ବାପ ମା'ଙ୍କ ପକ୍ଷେ ଝିଅ ଏକ ବୋଝ ପରି ମନେ ହେଉଛି । ମଧୁମୟ ସମ୍ପର୍କ ପ୍ରତିଷ୍ଠା ପାଇଁ ଯୌତୁକ ଏକ ଅଯଥା ମାଧ୍ୟମ ଏବଂ ଏଥିରେ ମନାନ୍ତର ସୃଷ୍ଟି ହୁଏ, ଏହା ଜାଣିବା ଦରକାର ।

ସୂଚନା ଓ ଲୋ ସମ୍ପର୍କ ବିଭାଗ, ଭୁବନେଶ୍ୱର ।





ମସୁରି ଅଞ୍ଚଳରେ ରାଜସ୍ୱ ମନ୍ତ୍ରୀ

# ନୂତନ ଶିକ୍ଷା ପରିପ୍ରେକ୍ଷୀରେ କ୍ରୀଡ଼ା



ଶ୍ରୀ କୃଷ୍ଣ ମୋହନ ମହା

ଉତ୍ତମ ଧ୍ୱନିର ଲହର ପାଇଁ ଉତ୍ତମ ବଇଁଶୀଟିଏ ଲୋଡ଼ା ହୁଏ । ଦଦରା ବଇଁଶୀରେ ସ୍ୱର ଭଲ ଶୁଭେ ନାହିଁ । ଦୁର୍ବଳ ଶରୀର ସୁସ୍ଥ ମନ ଗଢ଼ିବାରେ ସମର୍ଥ ହୋଇ ପାରେ ନାହିଁ । ଉତ୍ତମ ଶରୀରପାଇଁ ଉତ୍ତମ ମନଟିଏ ଲୋଡ଼ା ଓ ଉତ୍ତମ ମନ ପାଇଁ ସୁସ୍ଥ ଶରୀରଟିଏ ଲୋଡ଼ା ହୁଏ । ଶରୀର ଓ ମନ ଉଭୟେ ପରିପୂରକ । ଶରୀର ଓ ମନ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ଭଳି । ଗୋଟିଏର ଅଭାବରେ ଆଉ ଗୋଟିଏ ଦୁର୍ବଳ ଓ ଅସହାୟ ହୋଇ ପଡ଼େ । ପ୍ରାଚ୍ୟ ତଥା ପାଶ୍ଚାତ୍ୟ ଶିକ୍ଷାବିତ୍ ଓ ଚିନ୍ତାନାୟକ ଶରୀର ଚର୍ଚ୍ଚା ଉପରେ ଅନେକ ତତ୍ତ୍ୱ ଓ ତଥ୍ୟ ଦେଇ ଯାଇଛନ୍ତି । କୁହାଯାଏ 'ଶରୀରମାଦ୍ୟଂ ଖଳୁଧର୍ମ ସାଧନମ୍' । ଶରୀର ହିଁ ଶକ୍ତିର ପ୍ରାଣ କେନ୍ଦ୍ର ଓ ଶକ୍ତିର ଉତ୍ସ । ଧ୍ୟାନ, ଧାରଣା ଓ ସାଧନା ପାଇଁ ସୁସ୍ଥ ଶରୀର ଅପରିହାର୍ଯ୍ୟ । ସୁସ୍ଥ ଓ ନିରୋଗ ଜୀବନ ପାଇଁ ଉତ୍ତମ ଖାଦ୍ୟ ଓ ଶାରୀରିକ ପରିଶ୍ରମ ଦରକାର ହୁଏ । କେବଳ ଉତ୍ତମ ଖାଦ୍ୟରେ ଯେ ଆମେ ସୁସ୍ଥ ଶରୀରଟିଏ ଗଢ଼ି ପାରିବା ତାହା ମଧ୍ୟ ଠିକ୍ ନୁହେଁ । ଏଥିପାଇଁ ସୁନ୍ଦର ଓ ନିର୍ମଳ ପରିବେଶଟିଏ ଦରକାର ହୁଏ । ସୁସ୍ଥ ବାତାବରଣ ହିଁ ସୁସ୍ଥ ଶରୀରର ଜନକ ।

ଗୁରୁକୂଳ ଆଶ୍ରମଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ କ୍ରୀଡ଼ାକୁ ଏକ ଅପରିହାର୍ଯ୍ୟ ଅଙ୍ଗବୋଲି ଧରିନିଆଯାଇଛି । ଗୁରୁକୂଳ ଆଶ୍ରମରେ ଶାରୀରିକ ବ୍ୟାୟାମ ସାଙ୍ଗରେ ଯୋଗ ଓ ପ୍ରାଣାୟାମକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ନୂତନ ଶିକ୍ଷାପଦ୍ଧତିରେ ଶିକ୍ଷାକ୍ଷେତ୍ରରେ ଯୋଗର ପ୍ରବେଶ ସ୍ୱାଗତଯୋଗ୍ୟ । ଯେତେବେଳେ ଭାରତରେ ଇଂରେଜ ଶିକ୍ଷାର ପ୍ରବେଶ ଓ ପ୍ରାଧାନ୍ୟ ବିସ୍ତାର କଲା ସେତେବେଳେ ଭାରତର ପ୍ରାଚ୍ୟ ପରମ୍ପରାର ଶିକ୍ଷା କ୍ରମେ ଗୁରୁତ୍ୱ ହରାଇ ବସିଲା । ଶିକ୍ଷାର ମହତ୍ ଦିଗ ପ୍ରତି ଆମେ ଆଉ ଦୃଷ୍ଟିଦେଇ ପାରିଲୁ ନାହିଁ । ବିଦ୍ୟାଳୟର ପାଠ୍ୟକ୍ରମକୁ ଛାଡ଼ି ଅନ୍ୟଦିଗକୁ ଅବହେଳା ପ୍ରଦର୍ଶନ କରାଗଲା । ସମୟ ଓ ସାମାଜିକ ପରିବର୍ତ୍ତନ ସାଙ୍ଗରେ ଶିକ୍ଷାର ଲକ୍ଷ୍ୟ ବଦଳିଗଲା । ପରିବର୍ତ୍ତନହିଁ ଶାଶ୍ୱତ ଓ ଚିରସ୍ଥାୟୀ । ତା'ପରେ ବିଭିନ୍ନ ଶିକ୍ଷା କମିଶନ ଓ ଶିକ୍ଷାବିତ୍‌ମାନଙ୍କ ରିପୋର୍ଟ ଅନୁସାରେ ଶିକ୍ଷା ପଦ୍ଧତିର କ୍ରମପରିବର୍ତ୍ତନ ହୋଇ ନୂତନ ରୂପ ଧାରଣ କଲା । ବର୍ତ୍ତମାନ ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ରରେ ଶିକ୍ଷା ପଦ୍ଧତିରେ କ୍ରୀଡ଼ାକୁ ଏକ ମୁଖ୍ୟ ବିଭାଗରୂପେ ଗ୍ରହଣ କରାଯାଇଛି । ଗାଁ ସହରଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ କ୍ରୀଡ଼ାର ପ୍ର... ବିଶେଷ ଯତ୍ନ ନିଆଯାଉଛି । କ୍ରୀଡ଼ାର ବୃହତ୍ତ... ଆଜି ଉନ୍ମୋଚନ ହୋଇପାରିଛି । ସଂକୀର୍ଣ୍ଣ... ଆଜି ବଦଳିଯାଇଛି । କ୍ରୀଡ଼ାକ୍ଷେତ୍ରରେ ବିଭିନ୍ନ ଦେଶର... ଓ ମମତ୍ୱବୋଧ ଆମ ମନରେ ନୂତନ ସମ୍ଭାବନାମୟ... ଆଶା ଓ ବିଶ୍ୱାସ ଆଣି ଦିଏ ।

## କ୍ରୀଡ଼ା ଓ ବ୍ୟକ୍ତିତ୍ୱର ବିକାଶ

ବ୍ୟକ୍ତି ଓ ସମାଜ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ... ବ୍ୟକ୍ତିତ୍ୱ ବିକାଶରେ ସୁସ୍ଥ ସମାଜ ଗଠନ କରାଯ... ଗାନ୍ଧୀ କହନ୍ତି Education, I mean allround... ment of body, mind and spirit. ଶରୀ... ଆଧ୍ୟାତ୍ମିକତାର ପୂର୍ଣ୍ଣାଙ୍ଗ ବିକାଶହିଁ ଶିକ୍ଷାର ଲ... ଶିକ୍ଷାହିଁ ଉତ୍ତମ ବ୍ୟକ୍ତିତ୍ୱ ଗଠନ ପାଇଁ ସ... ତେବେ ବ୍ୟକ୍ତିତ୍ୱ କହିଲେ ଶରୀର, ମନ ଓ ଆ... ତିନୋଟି ସମ୍ମିଶ୍ରଣ । ବ୍ୟକ୍ତିତ୍ୱ କହିଲେ ଏତି... ପାରେ ଯେ ବ୍ୟକ୍ତିର ସାମଗ୍ରିକ କାର୍ଯ୍ୟକଳାପ... ସୁସ୍ଥ ଶୃଙ୍ଖଳିତ ସମାଜ ଗଠନ କରିବାରେ ସହାୟ... ଆଜିର ବିଶ୍ୱରେ ନୈତିକତାର ମାନଦଣ୍ଡ... ନୈତିକତାର ଅଧଃପତନହିଁ ପ୍ରତ୍ୟେକ ସମସ୍ୟାର... ନୈତିକତାର ମୂଲ୍ୟବୋଧ ହୃଦୟଙ୍ଗମ ନ କରିବା ପ... ସମାଧାନ ହୋଇ ପାରିବନାହିଁ । ଶୃଙ୍ଖଳିତ ସ... ପାଇଁ ନୈତିକତା ଅପରିହାର୍ଯ୍ୟ । ନୀତିହୀନ ସ... ବିଶୃଙ୍ଖଳ । ବିଶୃଙ୍ଖଳ ସମାଜରେ ବ୍ୟକ୍ତି ସ... ସ୍ନେହ ସୌହାର୍ଦ୍ଦ୍ୟ ସ୍ଥାପନ କରାଯାଇ ପାରିବ... ବାତାବରଣ ପାଇଁ ବ୍ୟକ୍ତିର ସୌହାର୍ଦ୍ଦ୍ୟ ଏକା... ଅସୁସ୍ଥ ବାତାବରଣରେ ଶିକ୍ଷା, ଶିଳ୍ପ, ବିଜ୍ଞାନ... ପାରିବେନାହିଁ । ବିଭ୍ରାନ୍ତ ଯୁବ ମାନସକୁ... ସଂଗଠିତ କରିବାପାଇଁ କ୍ରୀଡ଼ାକୁ ଏକ ମାଧ୍ୟମ... କରିବାକୁ ପଡ଼ିବ । ତେବେ ଏତିକି... କ୍ରୀଡ଼ାଶିକ୍ଷାଦ୍ୱାରା ନୈତିକତା ଶିକ୍ଷା ଦିଆ... ପରସ୍ପର ମଧ୍ୟରେ ସହଯୋଗ ଓ ବନ୍ଧୁତା... ପାରିବ । ଶିକ୍ଷାର ସଫଳତା ଆଦର୍ଶ ପ୍ରତି...

ଶିକ୍ଷା ପରିଯୋଜନା ଓ ପ୍ରୟୋଗ ବିଧିମାନଙ୍କରେ ନିର୍ଭର କରେ । କ୍ରୀଡ଼ା ମାଧ୍ୟମରେ ଆଦର୍ଶ ଓ ଶୃଙ୍ଖଳିତ ବ୍ୟକ୍ତିତ୍ୱର ବିକାଶ କରାଯାଇପାରେ । ଏହା ଶିକ୍ଷକଙ୍କର ଧୈର୍ଯ୍ୟ, ନିଷ୍ଠା ଓ ସାଧନାକୁ ଅପେକ୍ଷା କରେ ।

## କ୍ରୀଡ଼ା ଓ ମହାଭାରତୀୟ ଚେତନା

ପ୍ରାଚ୍ୟ ପରମ୍ପରା ଓ ଆଦର୍ଶ ନେଇ ଯୁଗେ ଯୁଗେ ଭାରତ ଗର୍ବ ଓ ଗୌରବର ଅଧିକାରୀ । ବିଶ୍ୱ କ୍ରୀଡ଼ା କ୍ଷେତ୍ରରେ ଭାରତ ପଛେଇ ଯିବାର କାରଣ ଆର୍ଥିକ ଦୁର୍ବଳତା । ବ୍ୟକ୍ତିର ଆର୍ଥିକ ଅବସ୍ଥା ଉପରେ ତାହାର ଜୀବନ ଯାପନ ପ୍ରଣାଳୀ ନିର୍ଭର କରେ । ଆର୍ଥିକ ସ୍ୱଚ୍ଛଳତା ଓ ଶିକ୍ଷାର ଅଗ୍ରଗତି ଉଭୟେ ପରସ୍ପର ପରିପୂରକ । ବର୍ତ୍ତମାନ ଦେଖାଯାଏ ଯେଉଁ ଦେଶ ଶିକ୍ଷା କ୍ଷେତ୍ରରେ ଯେତେ ଆଗୁଆ କ୍ରୀଡ଼ା କ୍ଷେତ୍ରରେ ମଧ୍ୟ ସେତିକି ଆଗୁଆ । ଭାରତଭଳି ଏକ ଦେଶରେ କ୍ରୀଡ଼ାର ଅନ୍ୟଏକ ବୃହତ୍ତର ଦିଗକୁ ଦୃଷ୍ଟି ଦିଆଯାଇପାରେ । ଏକତାହିଁ ମହା-ଭାରତୀୟ ଚେତନା । ରାଜ୍ୟ ରାଜ୍ୟ ମଧ୍ୟରେ ଭ୍ରମ ବୁଝାମଣା ଓ ସୌହାର୍ଦ୍ଦ୍ୟ ସ୍ଥାପନ ଏକାନ୍ତ କାମ୍ୟ । ଜାତି, ଧର୍ମ, ଭାଷା ନିର୍ବିଶେଷରେ ଆମେ ସମସ୍ତେ ଭାରତୀୟ । କ୍ରୀଡ଼ା ମାଧ୍ୟମରେ ଏହି ମହାଭାରତୀୟ ଜାତୀୟ ଚେତନା ପ୍ରତ୍ୟେକ ଯୁବଶକ୍ତିର ମନରେ ଭରିଦେବାକୁ ପଡ଼ିବ । ତାହା ହେଲେ ଆମେ 'ଗାନ୍ଧୀଙ୍କ ସ୍ୱପ୍ନର ଭାରତକୁ ବାସ୍ତବରେ ରୂପାନ୍ତରିତ କରିପାରିବା । ଆଞ୍ଚଳିକ ମନୋଭାବ ତ୍ୟାଗକରି ମହା-ଭାରତୀୟ ଚେତନାରେ ଅନୁପ୍ରାଣିତ ହେବାକୁ ପଡ଼ିବ । ନା'ହେଲେ ଆମେ ସୁନାର ଭାରତ ଗଢିପାରିବା ।

## କ୍ରୀଡ଼ା ଓ ବିଶ୍ୱବନ୍ଧୁତାର କଳ୍ପନା

ଏକା ଏକା ହୋଇ ବଞ୍ଚିବାର ଦିନ ଆଜି ଆଉ ନାହିଁ । ବ୍ୟକ୍ତିର କ୍ଷୁଦ୍ର ପରିବାର ଏକ ବିଶ୍ୱପରିବାରରେ ପରିଣତ ହୋଇଯାଇଛି । ଆମେ ସମସ୍ତେ ଗୋଟିଏ ମଣିଷଜାତି । ତେବେ ବହୁପୂର୍ବରୁ କୁହାଯାଇଛି 'ବସୁଧୈବ କୁଟୁମ୍ବକମ୍' । ବ୍ୟକ୍ତି ପୃଥିବୀର ଯେଉଁ କୋଣରେ ଥାଉନା କାହିଁକି ତାହାର ଚିନ୍ତା ଚେତନା ସମଗ୍ର ବିଶ୍ୱକୁ ପ୍ରଭାବ ବିସ୍ତାର କରି ପାରିଛି । ବିଜ୍ଞାନର ଅଗ୍ରଗତି ଆଜି ଆମକୁ ଏକ ପରିବାରଭୁକ୍ତ କରିଛି । ଗୋଟିଏ ଦେଶର କାର୍ଯ୍ୟକଳାପ, ଚିନ୍ତା ଓ ଚେତନା ଅନ୍ୟ ଦେଶ ଉପରେ ପ୍ରଭାବ ପକାଉଛି । ଦେଶ ଦେଶ ମଧ୍ୟରେ ସ୍ନେହ ସଦ୍‌ଭାବ ଓ ବନ୍ଧୁତା ବିନା କୌଣସି ଦେଶ ଆଗେଇ ପାରିବ ନାହିଁ । ଏହି ପରିପ୍ରେକ୍ଷୀରେ ଆମେ କ୍ରୀଡ଼ାକୁ ବିଶ୍ୱବନ୍ଧୁତା ସୃଷ୍ଟିକରିବା ନିମନ୍ତେ ପ୍ରୟୋଗ କରିପାରିବା । ଆଜି କ୍ରୀଡ଼ାର ଲକ୍ଷ୍ୟ ଜୟ ପରାଜୟର ଊର୍ଦ୍ଧ୍ୱରେ । ବିଶ୍ୱ ଭ୍ରାତୃତ୍ୱ ସୃଷ୍ଟି କରିବା ପାଇଁ କ୍ରୀଡ଼ା ଏକ ମାଧ୍ୟମ । ସଂକୀର୍ଣ୍ଣ ଚିନ୍ତାଧାରାକୁ ଏଡ଼ାଇ ଏକ ସମ୍ବେଦନ-ଶୀଳ ହୃଦୟ ପ୍ରତିଷ୍ଠା କରିବା ଆଜିର କ୍ରୀଡ଼ା ପ୍ରତିଯୋଗିତାର ମହାନ ଅଭିମୁଖ୍ୟ । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଭ୍ରମ ବୁଝାମଣା ସୃଷ୍ଟି କରି ଏକ ବିଶ୍ୱ ପରିବାର ଗଠନ କରିବା ହିଁ ଆମର ଲକ୍ଷ୍ୟ ।

ଚଉରା,
ନୂଆପଡ଼ା,
ଓଡ଼ିଶା ୭୬୬୦୧୬



# ଦଶ ମହାବିଦ୍ୟାରେ ଚତୁର୍ଥୀ ଭୁବନେଶ୍ୱରୀ



ଇଂଜିନିୟର ରଘୁନାଥ ପାତ୍ର

''ଅହଂ ବ୍ରହ୍ମ ରୂପିଣୀ ।
ମତ୍ତଃ ପ୍ରକୃତି ପୁରୁଷାତ୍ମକଂ ଜଗତ୍ ।
ଶୂନ୍ୟଂଚାଶୂନ୍ୟଂଚ । ବେଦୋଽହମବେଦୋଽହମ୍ ।
ବିଦ୍ୟାହମ ବିଦ୍ୟାହମ୍ ।।''

ଅଥର୍ବୋକ୍ତ ଶ୍ଲୋକରୁ ଆନନ୍ଦମୟୀ ବ୍ରହ୍ମମୟୀ ଆଦ୍ୟାଶକ୍ତିଙ୍କର ପ୍ରାଧାନ୍ୟ ସୁସ୍ପଷ୍ଟ । ଉକ୍ତ ଶକ୍ତି ସ୍ୱରୂପା ବ୍ରହ୍ମମୟୀଙ୍କଠାରୁ ସତ୍ ଓ ଅସତ୍, ପୁରୁଷ ଓ ପ୍ରକୃତି, ବେଦ ଓ ଅବେଦ ଏବଂ ବିଦ୍ୟା ଓ ଅବିଦ୍ୟା ସମସ୍ତଙ୍କର ସୃଷ୍ଟି । ''ଯା ଶକ୍ତିଃ ପରମାତ୍ମା ସୌ ।'' ବ୍ରହ୍ମ ଓ ଶକ୍ତି ଏକ ଓ ଅଭିନ୍ନ । ଅଗ୍ନି ଓ ତାହାର ଦାହିକାଶକ୍ତି ଓତପ୍ରୋତ ଭାବେ ଜଡ଼ିତ ଥିବାପରି ବ୍ରହ୍ମ (ପୁରୁଷ) ଓ ଶକ୍ତି (ପ୍ରକୃତି) ଏକ ଅଭିନ୍ନ । ଜଗତ୍ସ୍ରଷ୍ଟା ଓ ଭକ୍ତଜନଙ୍କ ପ୍ରୀତି ବର୍ଦ୍ଧନ ପାଇଁ ସର୍ବାତ୍ମା, ସର୍ବେଶ୍ୱରୀ ନିତ୍ୟାନନ୍ଦମୟୀ ବିଭିନ୍ନ ରୂପରେ ରୂପାୟିତା । ''ଏକମେବ ବହୁସ୍ୟାଂ ।''

''ସୋଽହଂ ଶକ୍ତିର୍ମହାମାୟା ସଚ୍ଚିଦାନନ୍ଦ ରୂପିଣୀ ।
ରୂପଂ ବିଭର୍ତ୍ୟରୂପାଚ ଭକ୍ତାନୁଗ୍ରହ ହେତବେ ।।''

(ଦେବୀ ଭାଗବତ ପୁରାଣ ପୃ୨୨୯)

ପୁନଶ୍ଚ ତ୍ରୟାଣାଂ ଲୋକାନାଂ ଅମ୍ବକଃ ତ୍ର୍ୟମ୍ବକଃ । ଭଗବାନ୍ ଶଂକର ଲୋକତ୍ରୟର ଜନକ ହେତୁ ତ୍ର୍ୟମ୍ବକ ନାମରେ ପରିକୀର୍ତ୍ତିତ । ତ୍ର୍ୟମ୍ବକ ଶିବଙ୍କର ନିତ୍ୟାନନ୍ଦ ମହାଶକ୍ତି ଭୁବନେଶ୍ୱରୀ, ଦଶ ମହାବିଦ୍ୟାର ଚତୁର୍ଥ ମହାବିଦ୍ୟାରୂପେ ସର୍ବତ୍ର ପୂଜାଧିତା । ଉକ୍ତ ବ୍ରହ୍ମମୟୀ ଆଦ୍ୟାଶକ୍ତିଙ୍କ କୃପା ବା ଅନୁକଂପାରୁ ଭଗବାନ ଶଂକର ଅମରତ୍ୱର ଅଧିକାରୀ । ଭଗବତୀ ଭୁବନେଶ୍ୱରୀ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ଅଧିକାରିଣୀ ଓ ଅଧିଷ୍ଠାତ୍ରୀଦେବୀ ।

ମହାଦେବୀ ପ୍ରାତଃକାଳୀନ ସୂର୍ଯ୍ୟସମ ପ୍ରଭାମୟୀ, ରକ୍ତବର୍ଣ୍ଣା, ଶଶାଙ୍କ ଶେଖରା, ଉନ୍ନତ ବକ୍ଷୋଜା, ତ୍ରିନୟନା ଓ ମୃଦୁହାସିନୀ । ଦେବୀଙ୍କ ଊର୍ଦ୍ଧ୍ୱ ଦକ୍ଷିଣ ହସ୍ତରେ ପାଶ ଓ ଅଧଃ ଦକ୍ଷିଣ ହସ୍ତରେ ଅଭୟମୁଦ୍ରା; ଊର୍ଦ୍ଧ୍ୱ ବାମ ହସ୍ତରେ ଅଙ୍କୁଶ ଓ ଅଧଃ ବାମ ହସ୍ତରେ ବର ମୁଦ୍ରା ।

''ଉଦ୍ୟଦ୍ଦିନକରଦ୍ୟୁତିମିନ୍ଦୁକିରୀଟାଂ ତୁଙ୍ଗକୁଚାଂ ନୟନ ତ୍ରୟସଂଯୁକ୍ତାମ୍ । ସ୍ମେରମୁଖୀଂ ବରଦାଂକୁଶ ପାଶାଭୀତିକରାଂ ପ୍ରଭଜେତ୍ ଭୁବନେଶ୍ୱରୀମ୍ ।।''

(ଶାକ୍ତାନନ୍ଦ ତରଙ୍ଗିଣୀ)

ତାତ୍ତ୍ୱିକ ବିଶ୍ଳେଷଣ:–

(୧) ଭୁବନେଶ୍ୱରୀ ଉଦିତ ସୂର୍ଯ୍ୟସମ ଅରୁଣାଭ । ରକ୍ତ ବା ଅରୁଣବର୍ଣ୍ଣ ରଜଗୁଣର ପ୍ରତୀକ । ସୃଷ୍ଟି ବା ସୃଜନ ପ୍ରକ୍ରିୟାରେ ରଜଗୁଣର ବୈଶିଷ୍ଟ୍ୟ ପ୍ରତିପାଦିତ ହୁଏ । ତେଣୁ ମହାଦେବୀ ଭୁବନେଶ୍ୱରୀ ହେଉଛନ୍ତି ସୃଷ୍ଟିର ଚତୁର୍ଥ ଧାରା, ଚତୁର୍ଥ ମହାବିଦ୍ୟା ।

(୨) ଦେବୀଙ୍କ କିରୀଟ ବା ମୁକୁଟ ରୂପକ ଚନ୍ଦ୍ରମା ଜଗତକୁ ପୋଷଣ କରିବା ସଙ୍ଗେ ସ୍ନିଗ୍ଧତା ବା ଶୀତଳତା ପ୍ରଦାନ କରନ୍ତି । ଋଗ୍ୱେଦ ୯/୫୧/୨, ୯/୯୭/୩ ରେ ଚନ୍ଦ୍ରମା ଅମୃତର ଅଧିକାରୀ କାରଣ ଚନ୍ଦ୍ରକିରଣ ସେବନକାରୀଙ୍କୁ ସର୍ବଦା ରୋଗମୁକ୍ତ ରଖେ । ଶତପଥ ୫/୧/୩/୭ ରେ ଚନ୍ଦ୍ରମା ନୂତନ ଶକ୍ତିର ସ୍ରଷ୍ଟା ତଥା ପ୍ରଜାପତି ରୂପେ ବର୍ଣ୍ଣିତ । ପୁନଶ୍ଚ ଶତପଥ ୧୨/୫୨/୧୩ ରେ ସୋମ ଦୁଗ୍ଧ ରୂପେ ଅଖ୍ୟାୟିତ କାରଣ ଦୁଗ୍ଧ ଦ୍ୱାରା ଶିଶୁ ପାଳିତ ହେବାପରି ଚନ୍ଦ୍ରମା ଜୀବଜଗତକୁ ପାଳନ କରେ ।

(୩) ମାତୃସ୍ତନ ନିଃସୃତ ଦୁଗ୍ଧ ସନ୍ତାନର ପରିପୋଷଣ କରିଥାଏ । ଭଗବତୀଙ୍କର ଉନ୍ନତ କୁଚ ଯୁଗଳ ଅସୀମ ସନ୍ତାନ ସ୍ନେହଳତାର ପରିଚୟ ପ୍ରଦାନ କରେ । ଜଗନ୍ମାତାଙ୍କ ଦୁଗ୍ଧାମୃତ ପାନ କରି ସଚରାଚର ବିଶ୍ୱ ବ୍ରହ୍ମାଣ୍ଡ ଉଜ୍ଜୀବିତ ।

(୪) ପରଂବ୍ରହ୍ମ (ଚୈତନ୍ୟ ସତ୍ତା) ତଥା ପ୍ରକୃତି (ଜଡ଼ ସତ୍ତା) ଉଭୟ ଅନାଦି ଓ ଅନନ୍ତ । ଶିବ ରୂପୀ ବିନ୍ଦୁ ଓ ଶକ୍ତି ରୂପୀ ବୀଜ ସଙ୍ଗମରେ ନାଦର ସୃଷ୍ଟି । ଉକ୍ତ ନାଦରୁ ଇଚ୍ଛାଶକ୍ତି, ଜ୍ଞାନଶକ୍ତି ଓ କ୍ରିୟାଶକ୍ତିର ଉତ୍ପତ୍ତି । ଭଗବତୀ ଭୁବନେଶ୍ୱରୀଙ୍କ ତ୍ରିନେତ୍ର ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ବା ଇଚ୍ଛା, ଜ୍ଞାନ ଓ କ୍ରିୟାଶକ୍ତିର ପ୍ରତୀକ ।

(୫) ଭଗବତୀ ଭୁବନେଶ୍ୱରୀ ସ୍ମେରମୁଖୀ ବା ମୃଦୁହାସିନୀ ଅର୍ଥାତ୍ ଆନନ୍ଦମୟୀ କୃପାମୟୀ ସନ୍ତାନରୂପୀ ସମସ୍ତ ଜୀବଜଗତ ଉପରେ କୃପାକଟାକ୍ଷ ପାତ କରନ୍ତି । ମୃଦୁମନ୍ଦହାସ କୃପା ବା ଅନୁକମ୍ପାର ନିଦାନ ।

(୬) ଭଗବତୀଙ୍କ ହସ୍ତସ୍ଥିତ ପାଶଦ୍ୱାରା ସଚରାଚର ବିଶ୍ୱବ୍ରହ୍ମାଣ୍ଡ ଆବଦ୍ଧ ହୋଇ ଜୀବନଚକ୍ର ପର୍ଯ୍ୟାୟରେ ବାରମ୍ବାର ସଂସାରକୁ ଯାତାୟତ କରେ । ବିଶ୍ୱର ସମସ୍ତ ଜଡ଼ଚେତନ ଭଗବତୀଙ୍କ ଆୟତାଧୀନ ।

(୭) ଅଙ୍କୁଶ ଧର୍ମର ଦ୍ୟୋତକ । ଏହା କୁପଥଗାମୀ ସାଧକର ଗତିରୋଧ କରିବା ସଙ୍ଗେ ସମସ୍ତ ସାଧନା ନିୟନ୍ତ୍ରଣ କରିଥାଏ । ସାଧକ ଜଗନ୍ମୟୀଙ୍କ କୃପାରୁ ସର୍ବଦା ଧର୍ମାନୁରାଗୀ ହୁଏ ।

(୮) ମହାଦେବୀଙ୍କ ବରମୁଦ୍ରା ସାଧକକୁ ସମସ୍ତ ସାଂସାରିକ ଓ ପାରମାର୍ଥିକ ଐଶ୍ୱର୍ଯ୍ୟ ପ୍ରଦାନ କରିଥାଏ । ଭକ୍ତ ବାଞ୍ଛାକଳ୍ପତରୁ ଭୁକ୍ତି ମୁକ୍ତିପ୍ରଦାୟିନୀ ଭଗବତୀ ଭକ୍ତର ମନବାଞ୍ଛା ଅଚିରେ ପୂରଣ କରିଥାଆନ୍ତି ।

(୯) ଜଗନ୍ମୟୀ ଭୁବନେଶ୍ୱରୀଙ୍କ ଅଭୟମୁଦ୍ରା ସାଧକକୁ ସାଂସାରିକ ଘୂର୍ଣ୍ଣିବାତ୍ୟାରେ ଅଭୟ ପ୍ରଦାନ କରିଥାଏ । ଭକ୍ତ ସର୍ବଦା ନିଃଶଙ୍କ ରହେ ଏବଂ ସାଂସାରିକ କଳୁଷ କାଳିମାରୁ ବିମୁକ୍ତ ହୋଇ ଉଦାତ୍ତ କଣ୍ଠରେ ଆନନ୍ଦମୟୀଙ୍କୁ ପ୍ରାର୍ଥନା କରେ ''ହେ ମାତ ! ତୁମେ ହିଁ ଏ ସଚରାଚର ବିଶ୍ୱବ୍ରହ୍ମାଣ୍ଡର ଆଦ୍ୟାଶକ୍ତି ଓ ଉତ୍ପତ୍ତି କାରିଣୀ । ତୁମଠାରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସମସ୍ତେ ପ୍ରକଟିତ, ତୁମେ ହିଁ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ବିଲୟକାରିଣୀ ।

"ଆଦ୍ୟାମଶେଷ ଜନନୀମରବିନ୍ଦ ଯୋନେ–
ର୍ବିଷ୍ଣୋଃ ଶିବସ୍ୟ ଚ ବପୁଃ ପ୍ରତିପାଦୟିତ୍ରୀମ୍ ।
ସୃଷ୍ଟି ସ୍ଥିତିକ୍ଷୟକାରୀଂ ଜଗତାଂ ତ୍ରୟାଣାଂ
ସ୍ତୁତ୍ୱା ଗିରଂ ବିମଳୟାମ୍ୟହମମ୍ବିକେ ତ୍ୱାମ୍ ॥"

ଭୁବନେଶ୍ୱରରେ ମହାଦେବୀ ଭୁବନେଶ୍ୱରୀଙ୍କ ମନ୍ଦିର ସମ୍ଭବତ ଅଷ୍ଟମ ଶତାବ୍ଦୀର । ଲିଙ୍ଗରାଜ ମନ୍ଦିର ନିର୍ମାଣ ସମୟରେ, ଭୁବନେଶ୍ୱରୀ ଦଶମହାବିଦ୍ୟାର ଏକ ମହାବିଦ୍ୟା ରୂପେ ପ୍ରତିଷ୍ଠା ଲାଭ କୌଣସି ପ୍ରମାଣ ଦୃଷ୍ଟି ଗୋଚର ହୁଏ ନାହିଁ । ତେବେ ଦଶମହାବିଦ୍ୟାର ଭୁବନେଶ୍ୱରୀଙ୍କ ଧ୍ୟାନ ସହିତ ଲିଙ୍ଗରାଜ ମନ୍ଦିରର ଭୁବନେଶ୍ୱରୀଙ୍କ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ମହାଦେବୀ ଦ୍ୱିଭୁଜା । ଭଗବତୀ ତାହା ସଦୃଶ ଦକ୍ଷିଣ ପଦ ନିମ୍ନ ଦେଶକୁ ବିସ୍ତାରିତ କରି ବାମପଦ ଅର୍ଦ୍ଧ ପଦ୍ମାସନରେ ଉପବିଷ୍ଟା । ଦକ୍ଷିଣ କରରେ ଉତ୍ପଳ ଓ ବାମ କରରେ ରତ୍ନ ଚଷକ ।

ଆନନ୍ଦମୟୀ ବ୍ରହ୍ମମୟୀ, ଭୁବନେଶ୍ୱରୀଙ୍କ ନିମ୍ନୋକ୍ତ ଧ୍ୟାନ ଦ୍ରଷ୍ଟବ୍ୟ । ଦେବୀ ଶ୍ୟାମାଙ୍ଗୀ, ଶଶିଶେଖରା ଓ ତ୍ରିନୟନା । ହସ୍ତ ଚତୁଷ୍ଟୟରେ ରକ୍ତପଦ୍ମ, ରତ୍ନାଢ୍ୟ ଚଷକ ଓ ବରାଭୟ ମୁଦ୍ରା ଶୋଭାୟମାନ । ମୁକ୍ତାହାର ଉନ୍ନତ ସ୍ତନଭାରରେ ଜଗନ୍ମୟୀ ଅବନତା ।

"ଶ୍ୟାମାଙ୍ଗୀ ଶଶିଶେଖରା ନିଜକରୈର୍ଦାନଞ୍ଚ ରକ୍ତୋତ୍ପଳଂ
ରତ୍ନାଢ୍ୟଂ ଚଷକଂ ପରଂ ଭୟହରଂ ସଂବିଭ୍ରତୀଂ ଶାଶ୍ୱତମ୍ ।
ମୁକ୍ତାହାର–ଲସତ୍–ପୟୋଧରନତାଂ ନେତ୍ରତ୍ରୟୋଲ୍ଲାସିନୀଂ
ବନ୍ଦେହଂ ସୁର ପୂଜିତାଂ ହରବଧୂଂ ରକ୍ତାରବିନ୍ଦସ୍ଥିତାମ୍ ॥"

ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିରରେ ଭଗବାନ ଅନନ୍ତ ଶେଷଦେବ ଓ ଭଗବାନ ବିଷ୍ଣୁ ବାସୁଦେବଙ୍କ ମଧ୍ୟରେ ଭଗବତୀ ଭୁବନେଶ୍ୱରୀ ପୂଜା ପାଉଥାଆନ୍ତି । ଭଗବାନ ଅନନ୍ତ ଓ ବାସୁଦେବଙ୍କ ମଧ୍ୟରେ ଭୁବନେଶ୍ୱରୀ ଦଣ୍ଡାୟମାନା ।

ପୁରୀର ଶ୍ରୀମନ୍ଦିର ଭିତର ବେଢ଼ା ଅର୍ଥାତ୍ ଶ୍ରୀଜଗନ୍ନାଥ ମନ୍ଦିରର ଉତ୍ତର ପଶ୍ଚିମ କୋଣ ଓ ମହାଲକ୍ଷ୍ମୀଙ୍କ ମନ୍ଦିର ପାର୍ଶ୍ୱରେ ଭୁବନେଶ୍ୱରୀ ମନ୍ଦିର ବିଦ୍ୟମାନ । ଉକ୍ତ ମନ୍ଦିରରେ ଭୁବନେଶ୍ୱରୀ ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜା ପାଉଥିଲେ ମଧ୍ୟ ଜଗମୋହନର ଏକ ପାର୍ଶ୍ୱରେ ଦେବୀ ସରସ୍ୱତୀ ଓ ଅପର ପାର୍ଶ୍ୱରେ ଷଷ୍ଠୀ, ସାବିତ୍ରୀ ଓ ଗାୟତ୍ରୀ ଦେବୀ ପୂଜା ପାଉଥାଆନ୍ତି ଏବଂ ଜଗମୋହନସ୍ଥିତା ଦେବୀଗଣଙ୍କ ପ୍ରତିଷ୍ଠା ଓ ଉପାସନା ବହୁ ପରବର୍ତ୍ତିକାଳୀନ ପରି ମନେ ହୁଏ । ଶ୍ରୀମନ୍ଦିରର ଭୁବନେଶ୍ୱରୀ ପଦ୍ମାସନୀ, ତ୍ରିନୟନା, ମୃଦୁହାସିନୀ ଓ ଚତୁର୍ଭୁଜା । ବାମ ଊର୍ଦ୍ଧ୍ୱ ହସ୍ତରେ ଅଙ୍କୁଶ, ଦକ୍ଷିଣ ଊର୍ଦ୍ଧ୍ୱ ହସ୍ତରେ ପାଶ ଓ ଅନ୍ୟ ଦୁଇଟି ଅଧଃ ହସ୍ତରେ ବରାଭୟ । ମହାଦେବୀ ବିଦ୍ୟା ରୂପରେ ଅତି ସୌମ୍ୟା ଶାନ୍ତ ମୂର୍ତ୍ତି ଓ ଅବିଦ୍ୟା ରୂପରେ ଅତିରୌଦ୍ରା (ପ୍ରଚଣ୍ଡା) । "ଅତି ସୌମ୍ୟାତିରୌଦ୍ରାୟୈ ନତାସ୍ତସ୍ୟୈ ନମୋ ନମଃ ।"

ପୁନଶ୍ଚ ଶାକ୍ତ ପରମ୍ପରାରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ଯଥାକ୍ରମେ ତାରା, ଭୁବନେଶ୍ୱରୀ ଓ ଦକ୍ଷିଣକାଳିକା ରୂପେ ପରିକଳ୍ପିତ । ଏତଦ୍‌ବ୍ୟତୀତ ସୁଭଦ୍ରାଙ୍କର ପୂଜାରାଧନା ଭୁବନେଶ୍ୱରୀ ମନ୍ତ୍ରରେ ଅନୁଷ୍ଠିତ ହୋଇଥାଏ ।

ବ୍ରହ୍ମମୟୀ, ଆନନ୍ଦମୟୀ ଆଦ୍ୟାଶକ୍ତିଙ୍କର କୃପାମୟ ସୁଚିହ୍ନିତ ଅବସ୍ଥା ବା ସ୍ୱରୂପ ହିଁ ଭୁବନେଶ୍ୱରୀ ବା ରାଜରାଜେଶ୍ୱରୀ । ତ୍ରିପୁରା, ଜୟଦୁର୍ଗା, ବନଦୁର୍ଗା, ତ୍ରିକଣ୍ଟକୀ, 'କାତ୍ୟାୟନୀ, ମହିଷଘ୍ନୀ, ଦୁର୍ଗା, ବଜ୍ରପ୍ରସାରଣୀ, ଶୂଳିନୀ, ଗୃହଦେବୀ, ମେଧା, ରାଧା ଓ କାଳିକା ପ୍ରମୁଖ ଭଗବତୀ ଭୁବନେଶ୍ୱରୀଙ୍କ ବିଭିନ୍ନ ରୂପ ବିଶେଷ ମାତ୍ର ।

ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରାରାଧିତା ସୁରାସୁର ବନ୍ଦ୍ୟା ଆନନ୍ଦମୟୀ ବ୍ରହ୍ମମୟୀ ଯୁଗେ ଯୁଗେ ସୃଷ୍ଟି, ସ୍ଥିତି ଓ ବିଳୟର କାରଣ ହୋଇଥାଆନ୍ତି । ଯୁଗେ ଯୁଗେ ସନ୍ଥ ମହାତ୍ମାଙ୍କ ରକ୍ଷା, ବେଦୋଦ୍ଧାର ଓ ଦୁଷ୍ଟ ସଂହାର ପାଇଁ ଜଗନ୍ମୟୀଙ୍କର ଆବିର୍ଭାବ ।

"ସାଧୂନାଂରକ୍ଷଣଂ କାର୍ଯ୍ୟଂ ହନ୍ତବ୍ୟା ଯେଽପ୍ୟ ସାଧବଃ
ବେଦ ସଂରକ୍ଷଣଂ କାର୍ଯ୍ୟମବତାରୈରନେକଶଃ ।
ଯୁଗେ ଯୁଗେ ତାନେବାହମବତାରାନ୍ ବିଭର୍ମି ଚ ॥"

ଶ୍ରୀମଦ୍ ଶଂକରାଚାର୍ଯ୍ୟ ଜଗତ୍‌ପିତା ଶଂକରଙ୍କ ଅପେକ୍ଷା ଜଗନ୍ମାତା ଭବାନୀଙ୍କ ଆଧିକ୍ୟ ପ୍ରତିପାଦନ କରିବାକୁ ଯାଇ ଦେବୀସ୍ତୋତ୍ରରେ ମୁକ୍ତ କଣ୍ଠରେ ଗାଇଛନ୍ତି "ହେ ମା ଭବାନି ଶ୍ମଶାନ ଭସ୍ମ ବିଲେପିତ; ସର୍ପ, ନୃମୁଣ୍ଡମାଳ ବିଭୂଷିତ; ଗରଳ ଭକ୍ଷକ, ଜଟାଧାରୀ, ଦିଗମ୍ବର, ପଶୁପତି ଭୂତନାଥ କେବଳ ତୁମ ପାଣିଗ୍ରହଣ କରିବା ଫଳରୁ ଜଗଦୀଶ୍ୱର ରୂପେ ସର୍ବଲୋକ ବିଦିତ, ସର୍ବାଦୌ ଆରାଧିତ ।

"ଚିତାଭସ୍ମ ଲେପୋ ଗରଳ ମଶନ–
ଦିକପଟ ଧରେ ,
ଜଟାଧାରୀ କଣ୍ଠେ ଭୁଜଗପତିହାରୀ
ପଶୁପତିଃ ।
କପାଳେ ଭୂତେଶୋ ଭଜତି
ଜଗଦୀଶୈକ ପଦବୀଂ
ଭବାନି ! ତ୍ୱତ୍ ପାଣି ଗ୍ରହଣ ପରିପାଟୀ
ଫଳମିଦମ୍ ॥"

ସଂପାଦକ 'ମହାପ୍ରଭୁ'
ବୃନ୍ଦାବନ ଧାମ,
ଲୋକନାଥ ରୋଡ୍, ପୁରୀ–୭୫୨୦୦୧





# ପ୍ରାଚୀନ ଓଡ଼ିଶାର ଗୃହ ନିର୍ମାଣ

ସୀମାଞ୍ଚଳ ପ୍ରଧାନ

ମନୁଷ୍ୟ ଖରା, ବର୍ଷା, ଶୀତ, ଚୋର ତଥା ଜୀବଜନ୍ତୁ ପ୍ରଭୃତିଙ୍କ ହାତରୁ ମୁକ୍ତହୋଇ ନିରାପଦ ଜୀବନ ଯାପନ କରିବା ଆଶାରେ ବାସଗୃହ ନିର୍ମାଣ କଲା । 'ବାସ' କହିଲେ ଆମେ ସାଧାରଣତଃ ଘର/ଗୃହ ବୋଲି ବୁଝୁ । ଏହି ଘରଗୁଡ଼ିକର ନିର୍ମାଣ ପ୍ରଣାଳୀରେ ତାରତମ୍ୟ ଥିବା ଲକ୍ଷ କରାଯାଇପାରେ । ମନୁଷ୍ୟର ସଂଗୃହୀତ ଖାଦ୍ୟଶସ୍ୟ, ପଶୁପକ୍ଷୀ, ଓ ପରିବାରର ରକ୍ଷଣାବେକ୍ଷଣ ନିମିତ୍ତ ଗୃହ ହିଁ ଥିଲା ତାର ନିରାପଦ ଆଶ୍ରୟ ସ୍ଥଳ । ଏହାପରେ କ୍ରମଶଃ ସେ ନିଜର ରୁଚି ଓ ସମ୍ଭବ ଅନୁଯାୟୀ ବାସଗୃହର ସଜ୍ଜୀକରଣ କରିବା ପାଇଁ ଚେଷ୍ଟା କରିଛି । ମଣିଷ ତା'ର ପ୍ରଥମ ରହିବାସ୍ଥାନ ଗିରିର ଗୁମ୍ଫା ଓ ଗଛର ମଞ୍ଚାକୁ ପରିତ୍ୟାଗ କରି ଆଜି ବିଭିନ୍ନ ପ୍ରଣାଳୀରେ ନିର୍ମିତ ଗୃହରେ ବାସ କରୁଛି । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହି ବାସଗୃହଗୁଡ଼ିକର ନାମାଙ୍କନ କରାଯାଇଥିବା ଲକ୍ଷ୍ୟ କରିହୁଏ । ବର୍ତ୍ତମାନ ଗୃହ ନିର୍ମାଣରେ ଆଞ୍ଚଳିକ ତାରତମ୍ୟ ଓ ସେଗୁଡ଼ିକର ନାମକରଣ ସମ୍ପର୍କରେ ସାମାନ୍ୟ ଆଲୋଚନା କରାଯାଇପାରେ ।

ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ବସବାସ କରୁଥିବା ଅଧିକାଂଶ ପରିବାର ମାଟି କାନ୍ଥରେ ତିଆରି ଘରେ ରହନ୍ତି । ଏହି ପ୍ରକାର ଘରକୁ କୁଡ଼ିଆଘର (୧) କୁହାଯାଏ । ସାଧାରଣତଃ ଏହି ଘରଗୁଡ଼ିକରେ ଗରିବ ଶ୍ରେଣୀର ଲୋକେ ବାସ କରନ୍ତି । ଆଜି କାଲିର ଉନ୍ନତ ଧରଣର ଘରପରି କୁଡ଼ିଆଘର ବହୁ କୋଠରୀଯୁକ୍ତ ନୁହେଁ କିମ୍ବା ଚୂନ ସିମେଣ୍ଟରେ ନିର୍ମିତ ଛାତ ନୁହେଁ । ଏହା ଉଚା ନଡ଼ା (ଛଣ) (୨) ବାଉଁଶବାଡ଼ି ଓ ନଡ଼ିଆ ପତ୍ରରେ (୩) ତିଆରି । ଏହିପରି କୁଡ଼ିଆଘରଗୁଡ଼ିକ ଓଡ଼ିଶାର ପ୍ରାୟ ସବୁ ପଲ୍ଲୀରେ ଦେଖାଯାଏ । କୁଡ଼ିଆଘର (୪) ଠାରୁ କ୍ରମଶଃ ଉନ୍ନତ ଧରଣର ବାସଘରକୁ ଘର, କୋଠା, ପ୍ରାସାଦ ପ୍ରଭୃତି ନାମରେ ନାମିତ କରାଯାଉଥିବା ଦୃଷ୍ଟିଗୋଚର ହୁଏ । ଏଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟି ପୂର୍ବ ଅପେକ୍ଷା ଉନ୍ନତତର ।

ଘର— କୁଡ଼ିଆ ଓ ନଡ଼ା କୁଡ଼ିଆ ଠାରୁ (୫) ଘର ଉନ୍ନତ ଧରଣର । ଏହା ଇଟା, ଚୂନ, ପଥର ଓ କାଦୁଅରେ ତିଆରି । କେହି କେହି ନିଜର ସମ୍ବଳ ଅନୁଯାୟୀ ବିଭିନ୍ନ ପ୍ରକାର ଘର ତିଆରି କରିଥାଆନ୍ତି । ଏହି ଘରଗୁଡ଼ିକ ସାଉଡ଼ିଘର, ଖଞ୍ଜାଘର ନାମରେ ନାମିତ । ଗଞ୍ଜାମ ଅଞ୍ଚଳର ପ୍ରତ୍ୟେକ ଘରକୁ 'ସାଉଡ଼ି' କହନ୍ତି । ସମଗ୍ରଘର ଏକାଧିକ କୋଠରୀରେ ବିଭକ୍ତ । ପ୍ରତ୍ୟେକ କୋଠରୀ ସହିତ ପ୍ରତ୍ୟେକ କୋଠରୀ ସଂଲଗ୍ନ । କେହି କେହି ଘର ମଝିରେ 'ଅଗଣା' ରଖିଥିବା ଦେଖାଯାଏ । ହାତ ଗୋଡ଼ ଧୋଇବାଠାରୁ ଆରମ୍ଭକରି ବାସନ କୁସନ ସଫା କରିବାପାଇଁ ସମସ୍ତକାର୍ଯ୍ୟ ସେଠାରେ ହିଁ ହୋଇଥାଏ । ଏତଦ୍ ବ୍ୟତୀତ ଅନ୍ୟାନ୍ୟ କୋଠରୀଗୁଡ଼ିକୁ ଶୋଇବାଘର, ଗମ୍ଭିରୀଘର, ଧାନଘର, ଅଟୁଘର, ଢିଙ୍କିଘର, ଗୁହାଳଘର (୬) ରୋଷେଇଘର (୭) ହାଣ୍ଡିଶାଳ/ରୂପେ ବ୍ୟବହାର କରାଯାଇଥାଏ ।

## ଖଞ୍ଜାଘର

ଦକ୍ଷିଣ ଓଡ଼ିଶାରେ ଖଞ୍ଜାଘର ଆଦୌ ଦେଖାଯାଏ ନାହିଁ । ଏହା ଉତ୍ତର ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଇତ୍ୟାଦି ଅଞ୍ଚଳରେ ଦେଖିବାକୁ ମିଳେ । ଖଞ୍ଜା ନିର୍ମିତ ଘରର କୌଣସି କୋଠରୀ ସହିତ କୌଣସି କୋଠରୀ ମୁହାଁମୁହିଁ ସଂଲଗ୍ନ ନ ଥାଏ । ଘରର ଚତୁଃସୀମାକୁ ଘେରି କୋଠରୀ-ଗୁଡ଼ିକ ତିଆରି କରାଯାଇଥାଏ ଓ ମଝିଅଂଶ ଖୋଲାଥାଏ । ଏହି ଖଞ୍ଜାଘର ଭିତରେ ସଂଯୁକ୍ତ ଅନ୍ୟାନ୍ୟ କୋଠରୀଗୁଡ଼ିକ ଯଥାକ୍ରମେ ଢିଙ୍କି ଘର (୮) ରନ୍ଧାଘର, ଶୋଇବାଘର, ମରେଇ (୯) ରୂପେ ବ୍ୟବହାର କରାଯାଏ । ଗଞ୍ଜାମ ଅଞ୍ଚଳରେ ମରେଇକୁ ଧାନଘର କୁହାଯାଏ ।

## କଳଡାଟାଟି ଘର

ଗରିବ ପରିବାର କଳଡାଟାଟିଘରେ (୧୦) ବାସ କରନ୍ତି । ଏହି ଘରଟି କେବଳ ଗୋଟିଏ କିମ୍ବା ଦୁଇଟି କୋଠରୀଯୁକ୍ତ । କରଡ଼ାକାଠ କୋଠରୀ ଚତୁର୍ଦ୍ଦିଗରେ ପୋତାଯାଇ ସେଥିରେ କାଦୁଅ ଲଗା ଯାଇଥାଏ । ତାଳ ଚାହୁଙ୍ଗା କିମ୍ବା ଛଣରେ ଛାଟି ବାନ୍ଧି ଘର ଛପର କରାଯାଇଥାଏ ।

## ଗମ୍ଭିରୀ

ପ୍ରତ୍ୟେକ ଘରେ ପ୍ରାୟତଃ ଏକାଧିକ ଗମ୍ଭିରୀ (୧୧) ଥାଏ । ଆବଶ୍ୟକ ଅନୁଯାୟୀ ଏହି ଗମ୍ଭିରୀ ଭିତରେ ଘରର ମୂଲ୍ୟବାନ

ଜିନିଷପତ୍ର ରଖାଯାଇଥାଏ । ସାଧାରଣତଃ ଗମ୍ଭିରୀ ଘରଗୁଡ଼ିକ ଏକମୁହାଁ ଓ ଏଥିରେ ପ୍ରାୟ ଝରକାର ବ୍ୟବସ୍ଥା ନ ଥାଏ । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ଘର, କୋଠା, ଉଆସ, ନଅରମାନଙ୍କରେ ଗମ୍ଭିରୀ ରହିଥାଏ ।

## ଅନ୍ଧାରଆ ଗମା

ଏକମୁହାଁ । ଗମ୍ଭିରୀଘରକୁ ଅନ୍ଧାରିଆ ଗମା (୧୨)କୁହାଯାଏ । ରାଜ ପରିବାର କିମ୍ବା ସାଧବ ପରିବାର ପରି ଧନାଢ୍ୟ ପରିବାରର ଉଆସ ଭିତରେ ସ୍ୱତନ୍ତ୍ର ଘରଟିଏ ନିର୍ମାଣ କରାଯାଇଥାଏ ଉପଯୁକ୍ତ ପରିବାରର ନାରୀମାନେ ନିଜର ଅଭିଳାଷ ପୂରଣ ନିମିତ୍ତ ଅଭିମାନ କରି ମୁହଁ ମାଡ଼ି ଉପାସ ରହି ଏହିଘରେ ଶୋଇ ରହନ୍ତି ।

## ବଖରା

ଅଧିକାଂଶ ଘର ଭିତରେ ତଳ ଉପରକରି ଅନେକ ବଖରା (୧୩) ତିଆରି ହୋଇଥାଏ । କେତେକ ଘର ମଧ୍ୟ ଏକ ବଖରା (୧୪) ଅଟେ । ଗଞ୍ଜାମ ଅଞ୍ଚଳର ବଖରାଗୁଡ଼ିକ ଏକ ମୁହାଁ ଥିବାର ଦେଖିବାକୁ ମିଳେ । ଏହି ଘରଗୁଡ଼ିକ ମଧ୍ୟରୁ କେତେକ ଝିଙ୍କର (୧୫) ଦେଶୀ ଝିଙ୍କରରେ ଛପର ହୋଇଥାଏ । ଉକ୍ତ ବଖରାଗୁଡ଼ିକ ସାଧାରଣତଃ ଗୃହୋପକରଣ ଜିନିଷପତ୍ର ରଖିବାପାଇଁ ଉଦ୍ଦିଷ୍ଟ ଅଟେ । ପ୍ରତ୍ୟେକ ଘରର ବାଡ଼ି ବଖରା ରନ୍ଧାବଢ଼ା କରିବା ପାଇଁ ଉଦ୍ଦିଷ୍ଟ । ତାରିପିଣ୍ଡା ଅନ୍ୟାନ୍ୟ ବଖରା ତୁଳନାରେ ପ୍ରଶସ୍ତ । ଏଠାରେ ଘୋରଣା, ଶିଳ, ପେଷଣା ଓ ଢିଙ୍କି ଇତ୍ୟାଦି ରଖାଯାଇଥାଏ ।

## ଆଟୁଘର

ଓଡ଼ିଶାର ପ୍ରତ୍ୟେକ ଘରେ ସାଧାରଣତଃ ଆଟୁଟିଏ (୧୬) ଥାଏ । ଏହି 'ଆଟୁ' କାଠପଟା କିମ୍ବା ମାଟି ଝାଟିରେ ତିଆରି । ଖାଦ୍ୟ ଉପଯୋଗୀ ଜିନିଷପତ୍ର ଏଥିରେ ରଖାଯାଇଥାଏ । ଏତଦ୍‌ବ୍ୟତୀତ କେତେକ ଘରେ କାନ୍ଥ ଦେହରେ କାଠପଟା ଦେଇ ଭାଡ଼ି କରାଯାଇଥିବା ଦେଖିବାକୁ ମିଳେ । ଏହି ଭାଡ଼ିର ଲମ୍ବତା ପ୍ରାୟ ଛଅଫୁଟ ହୋଇଥାଏ । ଏହା ନିତ୍ୟ ବ୍ୟବହୃତ ଜିନିଷପତ୍ର ରଖିବା ପାଇଁ ଉଦ୍ଦିଷ୍ଟ ।

## ଖୁଆଡ଼

ଘରର ଅନ୍ୟାନ୍ୟ କୋଠରୀ ତୁଳନାରେ ଗୋଟିଏ ଲମ୍ବା ବଡ଼ କୋଠରୀ ଘରର ବାରିପଟେ ନିର୍ମାଣ କରାଯାଇଥାଏ । ଏହା ଖୁଆଡ଼ ଭାବରେ ପରିଚିତ । ଏହି ଖୁଆଡ଼ରେ ଗୃହପାଳିତ ପଶୁ, ପକ୍ଷୀ ଇତ୍ୟାଦି ରଖା ଯାଇଥାଏ । ଉପରୋକ୍ତ ଗୃହଗୁଡ଼ିକ ସାଧାରଣ ପରିବାର ପାଇଁ ଉଦ୍ଦିଷ୍ଟ । କିନ୍ତୁ ସାଧାରଣ ପରିବାରର ଗୃହଠାରୁ ସମ୍ଭ୍ରାନ୍ତ ପରିବାରର ଗୃହ ମଧ୍ୟରେ ଥିବା ପାର୍ଥକ୍ୟକୁ ନିମ୍ନରେ ଆଲୋଚନା କରିବା ଆବଶ୍ୟକ ମନେହୁଏ ।

ସଂଭ୍ରାନ୍ତ ପରିବାର ବସବାସ କରୁଥିବା ଗୃହଗୁଡ଼ିକୁ ମୁଖ୍ୟତଃ କୋଠା, ନଅର, ଉଆସ ନାମରେ ନାମିତ କରାଯାଇଥିବା କାହାକୁ ଅବିଦିତ ନୁହେ । ଉପରୋକ୍ତ ବାସଗୃହଗୁଡ଼ିକ ମଧ୍ୟ ଅନେକ କୋଠରୀରେ ବିଭକ୍ତ । କ୍ରମାନୁସାରେ ସେଗୁଡ଼ିକର ନାମୋଲ୍ଲେଖ ନିମ୍ନରେ କରାଯାଇପାରେ ।

## ଉଆସ

ଧନାଢ୍ୟ ପରିବାରର ବାସସ୍ଥଳୀକୁ ଉଆସ (୧୭) କୁହାଯାଏ । ଏହି ଉଆସରେ ରାଜ ପରିବାର, ସାଧବ ପରିବାର ରୁହନ୍ତି । ଏହା ଦୁଇମହଲ (୧୮), ତିନିମହଲ, (୧୯), ସାତମହଲ (୨୦) ଏପରି କି ଏକାଧିକ ମହଲବିଶିଷ୍ଟ ହୋଇଥିବା ଦେଖିବାକୁ ମିଳେ । ପ୍ରତ୍ୟେକ ଉଆସ ବହୁ କୋଠରୀସଂଯୁକ୍ତ । ସେଥିମଧ୍ୟରୁ ରାଣୀ ଓ ରାଜ ଜେମାଙ୍କର ଅନ୍ତଃପୁର (୨୧), ରୋଷେଇଘର, ଗୁଡ଼ଘର (୨୨) ଘିଅଘର (୨୩), ବିଅଁଘର (୨୪), ଭଣ୍ଡାର ଘର (୨୫) । ମରେଇଘର (୨୬) ଇତ୍ୟାଦି ଅନ୍ତର୍ଭୁକ୍ତ ।

## କୋଠି

ବହୁପରିମାଣରେ ଗଚ୍ଛିତ ଶସ୍ୟ ଇତ୍ୟାଦି ଖାଦ୍ୟ ପଦାର୍ଥ ସାଇତି ରଖିବା ପାଇଁ କୋଠି (୨୭) ନିର୍ମାଣ କରାଯାଇଥାଏ । ଏହା ବାସଗୃହ ସହିତ ସଂଲଗ୍ନ । କିନ୍ତୁ ଆଉ କେତେକ କୋଠି ସ୍ୱତନ୍ତ୍ର ସ୍ଥାନରେ ନିର୍ମାଣ କରାଯାଇଥିବା ପରିଦୃଷ୍ଟ ହୁଏ । ଗଞ୍ଜାମ ଅଞ୍ଚଳରେ ଏହି ପ୍ରକାର ଘରକୁ "ଗାଦିଆ" ଘର କୁହାଯାଏ । ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଏହା ଅମାର/ମରେଇ ନାମରେ ନାମିତ ଥିବା ଜଣାଯାଏ ।

## ଭଣ୍ଡାର ଘର

ମୂଲ୍ୟବାନ ପଦାର୍ଥ ସବୁ ନିରାପଦରେ ରଖିବା ପାଇଁ ଭଣ୍ଡାର ଘର (୨୮) ନିର୍ମିତ ହୋଇଥାଏ । ମୁଖ୍ୟତଃ ଏହିଘର ଧନାଢ୍ୟ ବ୍ୟକ୍ତିମାନେ କରିଥାନ୍ତି । ରାଜାମାନଙ୍କ ନଅର କିମ୍ବା ସାଧବମାନଙ୍କ ଉଆସ ଭିତରେ ଏହି ଭଣ୍ଡାର ଘର ତିଆରି ହୋଇଥିବା ଦେଖାଯାଏ ।

## ନଅର

ନଅର ଭିତରେ ବହୁ ପରିବାର ରହିବା ନିମିତ୍ତ ବହୁଘର ନିର୍ମାଣ କରାଯାଇଥାଏ । ନଅର ଚତୁଃଦିଗରେ ଗୋଟିଏ ବିରାଟ ପାଚେରୀ ରହିଥାଏ । ଏହି ନଅର ଭିତରେ ଉଆସ ମଧ୍ୟ ସଂଯୁକ୍ତ । ରାଜାଙ୍କ ବାସସ୍ଥାନ ମଧ୍ୟରେ ଅଗଣା (୨୯) ଥାଏ । ସମୟେ ସମୟେ ଚିତ୍ତବିନୋଦନ ସକାଶେ ରାଜାମାନେ ଏହି ଅଗଣାରେ ବୁଲବୁଲି କରି ମନକୁ ଆନନ୍ଦିତ କରିଥାନ୍ତି ।

## ଖଞ୍ଜାଶାଳ/ଅସ୍ଥାୟୀ ଚୋପେଇ ଘର

ସାଧାରଣତଃ ବିବାହ, ବ୍ରତାଦି ଅନ୍ୟାନ୍ୟ ଭୋଜିଭାତରେ ବହୁ ଲୋକଙ୍କ ଭୋଜନ ନିମିତ୍ତ ଖଞ୍ଜାଶାଳ (୩୦) ନିର୍ମାଣ କରାଯାଇଥାଏ । ଏହି ଖଞ୍ଜାଶାଳ ରନ୍ଧନ ପାଇଁ ଉଦ୍ଦିଷ୍ଟ । ଏତଦ୍‌ବ୍ୟତୀତ ପ୍ରାଚୀନ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କାଠ ମୋଡ଼ିଆ ଘର (୩୧), ତମ୍ବୁଘର (୩୨), ପାଲଘର (୩୩)ର ଉଲ୍ଲେଖ ଦେଖିବାକୁ ମିଳେ । ଉପଯୁକ୍ତ ଆଲୋଚନାରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ନିର୍ମିତ ଗୃହର ତାରତମ୍ୟ ଓ ନାମକରଣକୁ ଲକ୍ଷ୍ୟ କରାଯାଇପାରେ ।

**ପାଦଟୀକା :**

(୧) ମୂଷା କନିଆଁ କଥା–ଲୋକ ଗଳ୍ପ ସଞ୍ଚୟନ, ଡ଼ଃ କୁଞ୍ଜବିହାରୀ ଦାଶ, ପୃଷ୍ଠା ୨୦ (ଗଞ୍ଜାମ) ।

(୨) ଅରକ୍ଷିତଙ୍କୁ ଦଇବ ସାହା–ତତ୍ରୈବ, ପୃ ୫୪୫ (କୋରାପୁଟ) ।

(୩) ସୋମନାଥ ବ୍ରତକଥା–ଓଡ଼ିଶାର ଓଷାବ୍ରତ କଥା–ଶ୍ରୀମତୀ ପ୍ରେମଲତା ଦାଶ, ପୃଷ୍ଠା–୫୨ ।

(୪) ଆରେ ଆରେ କେଶରୀ–ଲୋ: ଗ: ସଂ–ପୃ ୧୧୩ (କଟକ) ।

(୫) ଅରକ୍ଷିତଙ୍କୁ ଦଇବ ସାହା–ଲୋ : ଗ : ସଂ–ପୃ ୫୪୫ (କୋରାପୁଟ) ।

(୬) ସିଆଣିଆ–ତତ୍ରୈବ–ପୃ ୬୮୦ (ଢେଙ୍କାନାଳ)

(୭) ତତ୍ରୈବ–ତତ୍ରୈବ, ପୃ ୬୮୦

(୮) ଅନନ୍ତବ୍ରତ କଥା–ଓ : ଓ : ବ୍ରତକଥା–ପୃ ୩୬

(୯) ଧାନମାଣିକା ଗୁରୁବାର ଓଷା–ତତ୍ରୈବ–ପୃ ୮୭

(୧୦) ଅର୍ଥ ଉଦୁଆ ରବିବାର–ତତ୍ରୈବ–ପୃ ୧୨୫

(୧୧) ଖୁଦୁରୁକୁଣୀ ଓଷା କଥା–ତତ୍ରୈବ–ପୃ ୨୫

(୧୨) ମୂଷା କନିଆ କଥା–ଲୋ:ଗ:ସଂ–ପୃ ୨୦ (ଗଞ୍ଜାମ)

(୧୩) ମାଇଗୁଲିଆ ଟଙ୍କେଇ ସାଉ–ତାରିଣୀ ଚରଣ ଗ୍ରନ୍ଥାବଳୀ, ପୃ ୨୧୭ (ଗଞ୍ଜାମ) ।

(୧୪) ତୁମ ଦିଂଢଣଙ୍କୁ ଖାଇଥାନ୍ତି–ଲୋ:ଗ:ସଂ–ପୃ ୬୫୦ (ପୁରୀ) ।

(୧୫) ମାଇଗୁଲିଆ ଟଙ୍କେଇ ସାଉ–ତା : ଚ : ଗ୍ର–ପୃ ୨୧୭ (ଗଞ୍ଜାମ) ।

(୧୬) ଖୁଦୁରୁଣୀ ଓଷା–ଓ : ଓ : ବ୍ରତକଥା, ପୃ ୧୩୨

(୧୭) ମାଙ୍କେଡ଼ି ଆଉ ମହାଜନ ଝିଅ କଥା–ଲୋ: ଗ: ସଂ–ପୃ ୪୦ ।

(୧୮) ମାଇଗୁଲିଆ ଟଙ୍କେଇ ସାଉ–ତା: ଚ: ଗ୍ର–ପୃ ୨୧୭

(୧୯) ଧାନମାଣିକା ଗୁରୁବାର ଓଷା–ଓ: ଓ:–ବ୍ରତକଥା ପୃ ୮୭ ।

(୨୦) ଖୁଦୁରୁଣୀ ଓଷା କଥା–ତତ୍ରୈବ, ପୃ ୧୩୮

(୨୧) ସୁଦଶା ବ୍ରତ କଥା–ତତ୍ରୈବ, ପୃ ୩

(୨୨) ଦ୍ୱିତୀୟା ଓଷା କଥା–ତତ୍ରୈବ, ପୃ ୧୫

(୨୩) ତତ୍ରୈବ–ପୃ ୧୬

(୨୪) ଅନନ୍ତ ବ୍ରତ କଥା–ତତ୍ରୈବ, ପୃ ୩୬ ।

(୨୫) ମୁଁ ହେଇଚି ରାଜା ଖାଉଛନ୍ତି ଡୁଲି ବେଙ୍ଗଟି–ଲୋ : ଗ : ସଂ–ପୃ ୬୬ (ପୁରୀ) ।

(୨୬) ଧାନମାଣିକା ଗୁରୁବାର ଓଷା–ଓ: ଓ: ବ୍ରତକଥା–ପୃ ୮୭ ।

(୨୭) ମୁଁ ହେଇଚି ରାଜା ଖାଉଛନ୍ତି ଡୁଲି ବେଙ୍ଗଟି–ଲୋ: ଗ: ସଂ–ପୃ ୬୬ (ପୁରୀ) ।

(୨୮) ତତ୍ରୈବ–ପୃ ୬୬

(୨୯) ତତ୍ରୈବ–ପୃ ୬୬

(୩୦) ମୂଷା କନିଆ କଥା–ଲୋ : ଗ : ସଂ–ପୃ ୨୪ (ଗଞ୍ଜାମ) ।

(୩୧) ମଣିଷ ବିପ୍ଳବର ଢେଉ, ଦେବତା ବିପ୍ଳବ ହେଲା–ତତ୍ରୈବ–ପୃ ୨୪ ।

(୩୨) ସେ ଝିଅ ଲଙ୍କା ଜିଣିଲା–ତତ୍ରୈବ–ପୃ ୨୩୯ (ସିଂହଭୂମ୍) ।

(୩୩) ତତ୍ରୈବ, ପୃ ୨୪୯

( ଓଡ଼ିଆ ଲୋକସାହିତ୍ୟ ଉପରେ ଆଧାରିତ )

ଗବେଷକ, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
୭୬୦୦୦୭ ।



# ପଦ୍ମକ୍ଷେତ୍ର କୋଣାର୍କ



ଶ୍ରୀ ଲକ୍ଷ୍ମୀଧର ବ୍ରହ୍ମାଣୀ

ଉତ୍କଳର ଭାସ୍କର୍ଯ୍ୟ ଇତିହାସ ସଂପର୍କରେ ପର୍ଯ୍ୟାଲୋଚନା କଲେ ସୂଚିତ ହୁଏ ଯେ କୋଣାର୍କ ମନ୍ଦିର ସମସ୍ତ ବିଶ୍ୱର ଅତୁଳନୀୟ ତଥା ଅଦ୍ୱିତୀୟ ଭାସ୍କର୍ଯ୍ୟ ରୂପେ ପ୍ରତିଷ୍ଠିତ ହୋଇଛି । ଏହି ମନ୍ଦିର ଗାତ୍ରରେ ପ୍ରତ୍ୟେକଟି ସୂକ୍ଷ୍ମ କଳା ତଥା କାରୁକାର୍ଯ୍ୟ ସମଗ୍ର ବିଶ୍ୱ ଦରବାରର ପର୍ଯ୍ୟଟକଙ୍କୁ ବିସ୍ମିତ କରି ଦେଇଥାଏ । ଅବଶ୍ୟ ଏହାର ପ୍ରଧାନ ମନ୍ଦିର ଆଜି ଅବଲୁପ୍ତ ତଥାପି ଏହି ପ୍ରଧାନ ମନ୍ଦିରର ମୁଖଶାଳାଟିକୁ ଦେଖିଲେ ଉତ୍କଳୀୟ ଶିଳ୍ପୀମାନେ କିଭଳି ଭାସ୍କର୍ଯ୍ୟ ସଂପନ୍ନ ଥିଲେ ତାହାର ଅପୂରତ ଚିତ୍ରର ସୂଚନା ଦିଏ । କେବଳ ଭାସ୍କର୍ଯ୍ୟ ପାଇଁ ଏହା ଆଶ୍ଚର୍ଯ୍ୟ ଜନକ ନୁହେଁ, ଭାସ୍କର୍ଯ୍ୟ ସହିତ ତତ୍କାଳୀନ ଉତ୍କଳର ସାମାଜିକ ରୀତିନୀତି, ରାଜନୈତିକ ଚିନ୍ତା ଓ ଚେତନା, ବିଜ୍ଞାନ ସମ୍ମତ ଭାବଧାରା, ବିଭିନ୍ନ ଧର୍ମର ପରଂପରା, ସାଂସ୍କୃତିକ ଭାବନା ବୋଧ, ସ୍ୱଚ୍ଛଳ ଅର୍ଥନୈତିକ ଅବସ୍ଥା ତଥା ସମସାମୟିକ ଯୁଦ୍ଧ ବିଷୟକ ବାତାବରଣକୁ ଜୀବନର ପ୍ରତ୍ୟେକଟି ମହତ୍ତ୍ୱକୁ ପ୍ରତିପାଦିତ କରିପାରୁଛି । ଏଣୁ ଏହି ମନ୍ଦିରକୁ ଅତୀତ ଉତ୍କଳର ସମସ୍ତ ଶିଳ୍ପ ଗୌରବର ତଥା ସଂସ୍କୃତି ସମୂହର ଶ୍ରେଷ୍ଠ ମୂକସାକ୍ଷୀ କହିଲେ ଅତ୍ୟୁକ୍ତି ହେବନାହିଁ । ଜଗନ୍ନାଥ ମନ୍ଦିର ନିର୍ମାଣ ବା ଦେବତା ପ୍ରତିଷ୍ଠା ପାଇଁ ଯଦି ଭୂଷଣ୍ଡ କାକ ମାର୍କଣ୍ଡେଶ୍ୱର ପୁଷ୍କରଣୀର କଚ୍ଛପ ଇତ୍ୟାଦି ପଶୁପକ୍ଷୀଙ୍କ ସାକ୍ଷ୍ୟ ପ୍ରକାରେ ଆମେ ଏହା ଇନ୍ଦ୍ରଦ୍ୟୁମ୍ନଙ୍କ କିର୍ତ୍ତୀଥିଲା ବୋଲି ଗ୍ରହଣ କରିନେଉ ତଥା ଓଡ଼ିଶା ଭୂମିର ନଦୀଗଙ୍ଗଙ୍କ ଗଙ୍ଗରାଜଙ୍କ ନୂତନ କୀର୍ତ୍ତୀରୂପେ ଓ ଭୁବନେଶ୍ୱରସ୍ଥ ଅନନ୍ତ ବାସୁଦେବଙ୍କ ମନ୍ଦିର ନିର୍ମାଣ ପାଇଁ ଗଙ୍ଗା କନ୍ୟା ଚନ୍ଦ୍ରିକା ଦେବୀଙ୍କ ଆଗ୍ରହ ପ୍ରକାଶରେ ଏହା ସଂପନ୍ନ ହୋଇଛି, ତେବେ ଆଲୋଚ୍ୟ କୋଣାର୍କ ମନ୍ଦିର ନିର୍ମାଣରେ ସେମାନେ ଯେ ଚିନ୍ତା କରି ନଥିବେ ଏକଥା ନୁହେଁ । ନିଶ୍ଚିତରୂପେ ସେମାନେ ଏଭଳି ଉଚ୍ଚକୋଟୀର ମନ୍ଦିର ନିର୍ମାଣରେ ବ୍ରତୀ ହୋଇଥିବେ, ମାତ୍ର ଏହି ନିର୍ମାଣ କାର୍ଯ୍ୟ ଉପରେ ବହୁ ଲୌକିକ କିମ୍ବଦନ୍ତୀ, ଲୋକକଥା ପ୍ରବେଶ କରିଯିବାରେ ତାହା ବିବାଦୀୟ ହୋଇ ପଡ଼ିଛି । ବହୁ ଐତିହାସିକଙ୍କ ସିଦ୍ଧାନ୍ତ ପ୍ରକାରେ ଏହି ମନ୍ଦିର ଐତିହ୍ୟର ସ୍ରଷ୍ଟା ହେଉଛନ୍ତି ଗଙ୍ଗବଂଶୀୟ ଆଦର୍ଶ ନରପତି ନରସିଂହ ଦେବ । ସେ ସୁପ୍ରସିଦ୍ଧ ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ନାତି (ତୃତୀୟ ଅନଙ୍ଗଭୀମ ଦେବ)ଙ୍କ ପୁତ୍ର ପ୍ରବଳ ପ୍ରତାପୀ ନରସିଂହ ଦେବରୂପେ ଅଭିହିତ ହୋଇଥାନ୍ତି । ସେ ଏହି ମନ୍ଦିରକୁ ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗ ଅର୍ଥାତ ୧୨୪୫ ଖ୍ରୀ : ଅ : ରେ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇ ୧୨୫୬ ଖ୍ରୀ : ଅ : ରେ ସଂପୂର୍ଣ୍ଣ କରାଇଥିଲେ । କିମ୍ବଦନ୍ତୀ ବା ଜନଶ୍ରୁତିରେ ନରସିଂହ ଦେବଙ୍କ ଆଦେଶ ଅନୁଯାୟୀ ଶିଳ୍ପୀ ଶିବେଇ ସାନ୍ତରା, ମନ୍ଦିର ନିର୍ମାଣର ଦାୟିତ୍ୱ ବହନ କରି କୃତକାର୍ଯ୍ୟ ହୋଇ ନପାରି ଏକ ପଲ୍ଲୀର ବୃଦ୍ଧାଙ୍କଠାରୁ ଗରମ ଭାତକୁ ଖାଇବା ଶୈଳୀ ବା କୌଶଳ ନପାଇ ସାଗର ଶଯ୍ୟାରେ ପଥର ପୋତିବା କୌଶଳ ଶିକ୍ଷା କରି ମନ୍ଦିର ନିଅଁ ପକାଇଥିଲେ । ସେହିପରି ୧୨ ଶହ ବଢ଼େଇ ଦୀର୍ଘ ଦିନ କାମ କଲେ ମଧ୍ୟ ମନ୍ଦିରର ଚୂଡ଼ା ସ୍ଥାପନ କରି ନ ପାରିବାରେ ତାହା ଏକ ଶିଳ୍ପୀଙ୍କ ପୁଅ ଧରମା ଦ୍ୱାରା ସମାପ୍ତ ହୋଇଥିବା କିମ୍ବଦନ୍ତୀ ରହିଛି । ଆମେ ଯଦି ପୁରାଣ ଯୁଗକୁ ଯିବା ସେଥିରେ ଦେଖି ପାରିବା ଯେ ବହୁ ଜନଶ୍ରୁତି ପୌରାଣିକ ଆଖ୍ୟାନ ମାନଙ୍କରେ ଆଖ୍ୟାୟିତ ହୋଇ ଆମ ଧାର୍ମିକ ଜୀବନକୁ ପରିପୂର୍ଣ୍ଣ କରିପାରୁଛି । ପୁରାଣର ଏକ୍ ଆଖ୍ୟାନରେ କଥିତ ଅଛି—ଶ୍ରୀକୃଷ୍ଣ ପତ୍ନୀଗଣ ଏକଦା ସରୋବର ମଧ୍ୟରେ ସ୍ନାନ ଓ ସନ୍ତରଣ କରୁଥିବା ଅବସ୍ଥାରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ସେହି ପଥରେ ଯାଇ ଏହି କୃଷ୍ଣ ନାରୀଙ୍କ ଅଙ୍ଗ ସୌଷ୍ଠବର ଯୌବନ ଦର୍ଶନରେ ସେମାନଙ୍କ ପ୍ରତି କାମ ଭାବନା ପୋଷଣ କରିଥିଲେ । ପରେ ଶ୍ରୀକୃଷ୍ଣ ଏହା ଜାଣିପାରି ମାତ୍ର ସମ୍ଭୋଗ ବାସନାର ଫଳ ସ୍ୱରୂପ ଶାମ୍ବକୁ କୋଷବ୍ୟାଧିର ଅଭିଶାପ ଦେଲେ । ଏହି ଅଭିଶାପରୁ ମୁକ୍ତି ଇଚ୍ଛାରେ ଶାମ୍ବ ପିତା ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ଏଥିରେ ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୋଇ ସେହି ବ୍ୟାଧିରୁ ମୁକ୍ତ ହେବା ପାଇଁ ପଦ୍ମ କ୍ଷେତ୍ରରେ ସୂର୍ଯ୍ୟଙ୍କୁ ପୂଜା ଅର୍ଚ୍ଚନା ପାଇଁ ନିର୍ଦ୍ଦେଶ ଦେଲେ । ପରେ ଶାମ୍ବ ଏହି ସୂର୍ଯ୍ୟଙ୍କୁ ପଦ୍ମକ୍ଷେତ୍ରରେ ଉପାସନା କରି ରୋଗମୁକ୍ତ ହୋଇଥିଲେ । ଏହା ପରେ ସେହି ପଦ୍ମକ୍ଷେତ୍ରଟି ଏକ ପବିତ୍ର ଧର୍ମପୀଠରୂପେ ଖ୍ୟାତି ଲଭିବାରେ ଉତ୍କଳର ଗଙ୍ଗବଂଶୀୟ ରାଜା ନରସିଂହ ଦେବ ସୂର୍ଯ୍ୟଦେବତାଙ୍କୁ ଆରାଧନପାଇଁ ଏହିମନ୍ଦିର ନିର୍ମାଣରସ୍ଥାନ ନିର୍ବାଚନ କରିଥିଲେ । ତେଣୁ ଏହି ମନ୍ଦିରର ନାମ ସୂର୍ଯ୍ୟ ମନ୍ଦିର ଥିଲେ ହେଁ ତାହା କୋଣାର୍କ ମନ୍ଦିର ନାମରେ ଅଭିହିତ ହୋଇଛି । ଉତ୍କଳର ଚାରିଟି ପ୍ରଧାନ କ୍ଷେତ୍ର ଯଥା ଶଂଖ କ୍ଷେତ୍ର, ଚକ୍ରକ୍ଷେତ୍ର, ଗଦାକ୍ଷେତ୍ର ଓ ପଦ୍ମକ୍ଷେତ୍ର ମଧ୍ୟରୁ ଶେଷୋକ୍ତ କ୍ଷେତ୍ରଟି କୋଣାର୍କରେ ଅବସ୍ଥିତ ବୋଲି ଉଲ୍ଲେଖ ଅଛି ।

କୋଣାର୍କ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବରୁ ସୁଦୂର ପୌରାଣିକ ଯୁଗରେ ଏହି କ୍ଷେତ୍ରର ମହାତ୍ମ୍ୟ ପ୍ରତିଷ୍ଠିତ ହୋଇ ସାରିଥିଲା । ତାହା ଅର୍କ କ୍ଷେତ୍ର ଓ ମିତ୍ରବନ ନାମରେ ନାମିତ ହୋଇଥିଲା ।

କୋଣାର୍କ ନାମଟି ବହୁ ପରବର୍ତ୍ତୀ ଏବଂ ଏହା କୋଣାକୋଣ ଶବ୍ଦରୁ ସୃଷ୍ଟି ହୋଇଛି । ସୂର୍ଯ୍ୟ ଦକ୍ଷିଣାୟନ ସୀମା ବା ଅୟନ କୋଣରେ ଥିଲାବେଳେ ଠିକ୍ ବାହାରିବା ମାତ୍ରେ ତାଙ୍କର କିରଣ ସିଂହଦ୍ୱାର ଓ ମୁଖଶାଳା ଭେଦକରି ମନ୍ଦିରର ସିଂହାସନ ଉପରେ ପଡ଼ିଥାଏ । ଏଣୁ ଏଥିପାଇଁ ଏହାର ନାମ କୋଣାର୍କ ହୋଇଛି । ଏହି କୋଣାର୍କର ସୂର୍ଯ୍ୟୋଦୟ ବିଶେଷତଃ ଶୀତ ଦିନେ ଦେଖିବାର ବିଷୟ । ଯେକୌଣସି ଦିନ ସମୁଦ୍ର କୂଳରେ ନିଆଁହେଲେ ସୂର୍ଯ୍ୟୋଦୟ ଦୃଶ୍ୟ ଅତି ରମଣୀୟ ଦେଖାଯାଏ । ସୂର୍ଯ୍ୟ ବିମ୍ବ ସମୁଦ୍ର ଛାଡ଼ି ଉଠିଯାଏ ଦିଗ୍-ବଳୟକୁ । ମାତ୍ର ଏହା ବହୁ ଦୂର ପର୍ଯ୍ୟନ୍ତ ସୂର୍ଯ୍ୟରୁ ଖଣ୍ଡେ ସମୁଦ୍ର ଉପରେ ଭାସି ରହିଲା ପରି ଦେଖାଯାଏ ।

ମନ୍ଦିରଟି ପୁରୀଠାରୁ ପ୍ରାୟ ୨୦ ମାଇଲ ଦୂରରେ ଅବସ୍ଥିତ । ଏହା ବଙ୍ଗୋପସାଗରର ପବିତ୍ର ଜଳରାଶିକୁ ସଂଲଗ୍ନ କରୁଥିଲା । କିନ୍ତୁ କାଳକ୍ରମେ ପୃଥିବୀର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ହେତୁ ସମୁଦ୍ର ତଟରୁ ବିଚ୍ଛିନ୍ନ ହୋଇଛି । ଏହାର ସର୍ବଶେଷ ଅବସ୍ଥିତିରୁ ସୂଚିତ ହୁଏ । ଏହା ପ୍ରାୟ ସମୁଦ୍ରଠାରୁ ଦୁଇ ମାଇଲ ଦୂରରେ ରହିଯାଇଛି ।

ଆଜି କୋଣାର୍କର ସେହି ପ୍ରଧାନ ମନ୍ଦିରଟି ନାହିଁ । ତା'ର ନିଦର୍ଶନ ସ୍ୱରୂପ ମୁଖଶାଳାଟି ପଡ଼ିରହିଛି । ଏହା ଆମର ଐତିହ୍ୟର ସ୍ମରଣ ସ୍ୱରୂପ ଆମମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ପାରିଛି । ମନ୍ଦିରଟି ସନ୍ଦର ତଥା ସୂକ୍ଷ୍ମ କାରୁ-କାର୍ଯ୍ୟରୂପେ ଅନ୍ୟାନ୍ୟ ମନ୍ଦିରମାନଙ୍କଠାରୁ ଗୁଣ ଗରିମାରେ ଗୌରବଶାଳୀ । ଏହାର ପ୍ରଧାନ ମନ୍ଦିରର ଉଚ୍ଚତା ଥିଲା ପ୍ରାୟ ୬୮ ମିଟର ଏବଂ ଏହା ପ୍ରାୟ ୨୫୭ ମିଟର ଲମ୍ବ ଓ ବହୁ ମିଟର ବିଶିଷ୍ଟ ଏକ ଉଚ୍ଚ ପ୍ରାଚୀର ଦ୍ୱାରା ପରିବେଷ୍ଟିତ ହୁଏ । ସମଗ୍ର ମନ୍ଦିରଟି ଗୋଟିଏ ରଥ ଆକାରରେ ନିର୍ମିତ ହୋଇଥିଲା ଏବଂ ଏଥିରେ ୨୪ ଗୋଟି ଚକର ସଂଲଗ୍ନ ହୋଇଥିଲା ଏହି ମନ୍ଦିର ସନ୍ନିହିତ ଅରୁଣସ୍ତମ୍ଭଟି ମରହଟ୍ଟା ରାଜତ୍ୱରେ ଶ୍ରୀକ୍ଷେତ୍ରକୁ ସ୍ଥାନାନ୍ତରୀତ କରାଯାଇ ଶ୍ରୀମନ୍ଦିର ସମ୍ମୁଖ ଭାଗରେ ପ୍ରତିଷ୍ଠା କରାଯାଇଛି । ସେହିପରି ଏକ ପଥରରେ ନିର୍ମିତ ଏକ ବିଶାଳ ନବଗ୍ରହ ମୂର୍ତ୍ତିକୁ ଇଂରେଜ ରାଜତ୍ୱରେ ସ୍ଥାନାନ୍ତରିତ କରାଯାଇଥିଲେ ହେଁ ତାହା ନିଜର ବିଶାଳ ବପୁ ଫଳରେ ସ୍ଥାନାନ୍ତର କରଣରେ ବିଘ୍ନ ସୃଷ୍ଟି ହୋଇ ନିର୍ଜନ ସ୍ଥାନରେ ପଡ଼ି ରହିଛି ।

ଏହି କ୍ଷେତ୍ରଟି ଐତିହାସିକ ଦୃଷ୍ଟି କୋଣରୁ ଏକ ଇତିହାସ ଗ୍ରନ୍ଥରୂପେ ପ୍ରତୀୟମାନ ହୁଏ । କାରଣ ଏହା ବୈଦିକ ଯୁଗରୁ ବୈଦିକ ଦେବତା ସୂର୍ଯ୍ୟ ଉପାସନାର ପ୍ରଧାନକ୍ଷେତ୍ର ଓ ଦେବତାଙ୍କ ପୀଠସ୍ଥଳୀରୂପେ ପ୍ରତିଷ୍ଠିତ ହୋଇଛି । ମହା ପରାକ୍ରମଶାଳୀ କେଶରୀବଂଶୀୟ ନରପତି ଲଙ୍ଗୁଳାନ ଦେବ ଉତ୍କଳର ବହୁ ଉପାସିତ ଶୈବଧର୍ମ ଗ୍ରହଣ ନକରି ଏକ ବିଷ୍ଣୁ ବା ସୂର୍ଯ୍ୟନାରାୟଣ ମନ୍ଦିର ନିର୍ମାଣ କରି ନୂତନ ଧର୍ମ, ଦର୍ଶନ ଓ ଦେବଉପାସନାର ସୂତ୍ରପାତ କରାଇଥିଲେ । ଏହି କ୍ଷେତ୍ରଟି ସମୁଦ୍ରର ତଟ ଦେଶରେ ଥିବାରୁ ଏହା ସ୍ଥଳ ପଥ ଅପେକ୍ଷା ଜଳପଥରେ ଗମନାଗମନ ଓ ବହିର୍ବାଣିଜ୍ୟର ସୂଚନା ଦିଏ । ଏଥି ସହିତ ଚନ୍ଦ୍ରଭାଗା, ପ୍ରାଚୀ ପ୍ରଭୃତି ନଦୀ ଏହି ସ୍ଥଳରେ ସାଗରଗାମୀ ହୋଇଥିବାରୁ ସ୍ଥାନଟି ବାଣିଜ୍ୟ କାରବାରର ପ୍ରଧାନ କ୍ଷେତ୍ର ଥିବା ସୂଚନା ଦିଏ । ଏଭଳି ଏକ ଐତିହାସିକ କ୍ଷେତ୍ରଟି ଯେ ଇତିହାସ ଦୃଷ୍ଟି କୋଣରୁ ସମୃଦ୍ଧ ଥିଲା ତାହା ନୁହେଁ । ଏଥି ସହିତ ଅର୍ଥନୈତିକ ଦିଗରୁ ମଧ୍ୟ ସମୃଦ୍ଧ ଥିଲା । ଯଦି ଏହି କ୍ଷେତ୍ରକୁ ଅର୍ଥାଗମର ଲାଭଜନକ ସ୍ଥାନ ହିସାବରେ ଗ୍ରହଣ କରାଯାଇନଥାନ୍ତା ତେବେ ଏତେ ବଡ଼ ବିଶାଳ ମନ୍ଦିର ନିର୍ମାଣରେ ରାଜ୍ୟର ବହୁ ବର୍ଷର ଆୟକୁ ଖର୍ଚ୍ଚ କରାଯାଇଥାନ୍ତା କାହିଁକି ? ନୌବାଣିଜ୍ୟର ବନ୍ଦର ହିସାବରେ ଏହାର ସୂଚନା ମିଳେ । ପୂର୍ବେ କୁଶଭଦ୍ରା ଓ ପ୍ରାଚୀ ନଦୀକୁ ସଂଯୁକ୍ତ କରି ଚନ୍ଦ୍ରଭାଗା ନଦୀ ପ୍ରବାହିତ ହେଉଥିଲା । ଏହି ଚନ୍ଦ୍ରଭାଗା କୂଳରେ "ଚାରିତ୍ର" ନାମକ ଗୋଟିଏ ବିଶାଳ ବଣିକ ନଗରୀ ଏବଂ "ମିତ୍ରବନ" ନାମକ ଗୋଟିଏ ତରୁଲତା ପୂର୍ଣ୍ଣବନ ଥିଲା । ଏହି ବଣିକ ଗୋଷ୍ଠୀ ବହୁ ଦ୍ୱୀପପୁଞ୍ଜକୁ ବାଣିଜ୍ୟ ବ୍ୟବସାୟ କରିବାକୁ ଯାଇ ଉତ୍କଳର ସମୃଦ୍ଧିରେ ସହାୟକ ହୋଇଥିଲେ । ଏଥି ସହିତ ସେହି ବଣିକ ମାନଙ୍କ ଆଗମନ ସମୟରେ ସେମାନଙ୍କଠାରୁ ଧନରତ୍ନ ଲୁଣ୍ଠନ ହୋଇଥିଲା । ସେହି ଲୁଣ୍ଠନକାରୀ ଜଳଦସ୍ୟୁଗଣ ନିକଟବର୍ତ୍ତୀ ଅସ୍ତରଙ୍ଗ ହରିରାଜପୁର ପ୍ରଭୃତି ଅଞ୍ଚଳରେ ବସବାସ କରୁଥିଲେ । ଏହି ପଶ୍ଚାତ ସୂର୍ଯ୍ୟକ୍ଷେତ୍ରରୂପେ ଭାରତରେ ପ୍ରସିଦ୍ଧି ଲାଭ କରିଥିବା ଏବଂ ବହୁ ତୀର୍ଥଯାତ୍ରୀ ଯାତାୟତରେ ଅର୍ଥନୈତିକ ଦିଗକୁ ସୁଦୃଢ଼ କରିପାରୁଥିଲା । ଏହି କୋଣାର୍କର ପ୍ରଧାନ ମନ୍ଦିର ଦେହରେ ଲାଗିଥିବା ଏକ ଚୁମ୍ବକୀୟ ଦ୍ରବ୍ୟ ସମୁଦ୍ର ପଥରେ ଯାତାୟତକାରୀ ପର୍ତ୍ତୁଗୀଜ ତଥା ଅନ୍ୟାନ୍ୟ ସମୁଦ୍ରତରୀକୁ ଟାଣିଆଣୁଥିବା ଫଳରେ ସେମାନେ କୂଳକୁ ଆସି ଲୁଣ୍ଠିତ ହେଉଥିଲେ । ଏଣୁ କାଳକ୍ରମେ ତାହା ମନ୍ଦିର ଦେହରୁ ବିଚ୍ଛିନ୍ନ କରିଦେବା ଫଳରେ ପ୍ରଧାନ ମନ୍ଦିରଟି ଭୁଶୁଡ଼ି ପଡ଼ିଛି ।

ମୁଖ୍ୟତଃ ଏହା ଏକ ବୈଦିକ ଦେବତା କ୍ଷେତ୍ର ହୋଇଥିବାରେ ସାକାରବାଦୀ ହିନ୍ଦୁଙ୍କର ବହୁ ବିଶ୍ୱାସ ପ୍ରକାରେ ବହୁଧର୍ମ ଧାରଣାର ପୀଠସ୍ଥଳୀ ହୋଇ ପଡ଼ିଥିଲା । ଆଜି ଯେପରି ଜଗନ୍ନାଥ ଧାମକୁ ଯୁଗାନୁସାରେ ଭାରତର ବିଶିଷ୍ଟ ଧର୍ମଯାଜକମାନେ ଆସି ସ୍ୱ ସ୍ୱ ଧର୍ମଧାରଣାର ପ୍ରଚାର ପ୍ରସାର କରି ଯାଇଛନ୍ତି ଏବଂ ଜଗନ୍ନାଥ ସର୍ବଧର୍ମର ସମନ୍ୱୟ ଦେବତା ହୋଇ ପାରିଛନ୍ତି ସେହିପରି ଜଗନ୍ନାଥ କ୍ଷେତ୍ର ପରି ଏହି ପଦ୍ମକ୍ଷେତ୍ରଟି ବିଶିଷ୍ଟ ଧର୍ମକ୍ଷେତ୍ରରୂପେ ପ୍ରତିଷ୍ଠା ଅର୍ଜନ କରିଥିଲା । ଏଣୁ ବହୁଯୁଗ ମଧ୍ୟଦେଇ ଏହି କ୍ଷେତ୍ରଟି ଅବସ୍ଥିତ ରହି ବୌଦ୍ଧକାଳରେ ଏହି କ୍ଷେତ୍ରରେ ବୌଦ୍ଧ ଧର୍ମର ବହୁ ଉପାସନା ସ୍ଥଳ, ମୂର୍ତ୍ତି ତଥା ଗ୍ରନ୍ଥ ରଚନା ପ୍ରଭୃତି କ୍ଷେତ୍ରରେ ଚରମ ଉତ୍କର୍ଷତା ଲାଭ କରିଥିଲା । ଏହା ଏବେ "ଯମ ଧର୍ମ କ୍ଷେତ୍ର" ରୂପେ ପ୍ରଚ୍ଚରିତ ହେଉଛି । ସେହି ପ୍ରାଚୀନ ସୂର୍ଯ୍ୟମୂର୍ତ୍ତି ଏହି ବୌଦ୍ଧ ଯୁଗରେ ପୁଣି ନିରଞ୍ଜନ ଦେବରୂପେ ପ୍ରତିଷ୍ଠିତ ହୋଇ ଧର୍ମ ଧାରଣାର ପବିତ୍ର କ୍ଷେତ୍ର ରୂପେ ବହୁ ଚର୍ଚ୍ଚିତ ହୋଇ ପାରିଛି ।

ସାମାଜିକ ରୀତିନୀତିର ସୂଚନା ଏହି ମନ୍ଦିର ଗାତ୍ରରେ ଅପୂର୍ବ ପ୍ରତିଛବିରୂପେ ସୂଚିତ ହୁଏ । ଏଥିରେ ଖୋଦିତ ହୋଇ ଥିବା ବିଭିନ୍ନ ପଶୁ, ପକ୍ଷୀ, ବୃକ୍ଷଲତା, ନର୍ତ୍ତକୀ, ଶିକ୍ଷକ, ଛାତ୍ର, ରାଜା, ରାଣୀ, ମୃଗୟାବିନୋଦ, ନାନାବିଧ ବାଦ୍ୟଯନ୍ତ୍ର, ବସ୍ତ୍ର, ଅଳଙ୍କାର ପରିଧାନ ପ୍ରଭୃତି ଚିତ୍ରରୁ ତତ୍କାଳୀନ ସାମାଜିକ

ଜୀବନର ଅତି ଉନ୍ନତ ଓ ପରିମାର୍ଜିତ ରୂପ ବୋଲି ସୁସ୍ପଷ୍ଟରୂପେ ପ୍ରତିବିମ୍ବିତ ହୋଇଥାଏ ।

ରାଜନୈତିକ କାରଣରୁ ଏହି କ୍ଷେତ୍ର କମ୍ ଗୌରବଶାଳୀ ନ ଥିଲା । ଉତ୍କଳର ଜନସାଧାରଣ ଥିଲେ ଧର୍ମଧ୍ୱଜୀ । ଶାସକ ବା ରାଜା ରାଜୁଡ଼ାମଧ୍ୟ ଧର୍ମବଲମ୍ବୀ ଥିଲେ । ସେମାନେ ବିଭିନ୍ନ ମନ୍ଦିର, ମଠ, ଉପାସନା କ୍ଷେତ୍ର ପ୍ରଭୃତି ନିର୍ମାଣ କରାଇ-ଥିବେ । ମାତ୍ର ଜଣେ ବୈଦେଶିକ ରାଜା ହିସାବରେ ଉତ୍କଳରେ ପଦାର୍ପଣ କରି ଯେଉଁ ସବୁ କୀର୍ତ୍ତି କଳାପ ମଠ ମନ୍ଦିର ଇତ୍ୟାଦି ନିର୍ମାଣ କଲେ ଏବଂ ସ୍ୱକୀୟ ଧର୍ମ ଧାରଣାର ପ୍ରଚ୍ଚର ପ୍ରସାର କରି ଚାଲିଲେ ସେଥିରେ ତାଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତଥାପି ଏହି ନୂତନ ଧର୍ମଟି ଏଭଳି ବହୁ ଚର୍ଚ୍ଚିତ ହୋଇପାରିଲା ଯେ ସେଥିରେ ଉତ୍କଳୀୟ ଧର୍ମ ଓ ସଂସ୍କୃତି ସମ୍ମିଳିତ ହୋଇ ଏକ ସମନ୍ୱୟ ଧର୍ମୀ ଧର୍ମର ଆବିର୍ଭାବ ଘଟିଲା ।

ଯେଉଁ ସବୁ ଗଜ, ଅଶ୍ୱ, ରଥ, ଚକ୍ର ବା ବହୁ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ଅଶ୍ୱାରୋହୀ ପୁରୁଷଙ୍କୁ ଦେଖିବାକୁ ମିଳେ ସେଥିରୁ ସମ-ସାମୟିକ ଯୁଦ୍ଧ ବିଗ୍ରହର ସୂଚନା ମିଳେ । ଏଥି ସହିତ ଦେଶ ମଧ୍ୟରେ ମତାନ୍ତର, ଜୟ, ଖେଳୁପଡା ଇତ୍ୟାଦି ଦୃଷ୍ଟିରୁ ଲାଗି ରହିବା ଫଳରେ ସେ ସମସ୍ତ ଦିଗର ସୂଚନା ଏହି ମନ୍ଦିର ଗାତ୍ରସ୍ଥ ଭାସ୍କର୍ଯ୍ୟରେ ସନ୍ନିହିତ ହୋଇଛି । ଏହି ଭାସ୍କର୍ଯ୍ୟ ମଧ୍ୟରେ ପାରିଧି, ଅଭିଯାନ, ଚତୁଷ୍ପାଠୀ, ଗାନ, ବାଦ୍ୟବିଳାସ ଅଭିଷେକ ଉତ୍ସବ ପ୍ରଭୃତି ତଥା ଜୀବନ୍ତ ଦେବମୂର୍ତ୍ତି ସମସାମୟିକ ଯୁଦ୍ଧ ବିଗ୍ରହର ସୂଚନା ଦିଏ ।

ଏହି ମନ୍ଦିରଟି ବର୍ତ୍ତମାନ ଐତିହାସିକ ପୀଠରୂପେ ନ ରହି ଏହା ଏକ ଅର୍ଥନୈତିକ ଜୀବନର ଏକ ମୁଖ୍ୟ ଅଙ୍ଗରୂପେ ପ୍ରତିଷ୍ଠା ଅର୍ଜନ କରିଛି । କୋଟି କୋଟି ବୈଦେଶିକ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରାଇ କୋଟି କୋଟି ବୈଦେଶିକ ମୁଦ୍ରା ସଂଗ୍ରହର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସେ ସବୁ ଦେଶମାନଙ୍କ ସହିତ ସମସ୍ତ ପ୍ରକାର ସମନ୍ୱୟତା ଯଥା ରାଜନୈତିକ, ସାଂସ୍କୃତିକ, ଧାର୍ମିକ ପ୍ରଭୃତି ସଂପର୍କ ପ୍ରତିଷ୍ଠା କରିବାରେ ଯଥେଷ୍ଟ ସହାୟକ ହୋଇ ପାରିଛି । ସରକାର ଏହି ସ୍ଥାନକୁ ଭାରତର ଏକ ପ୍ରଧାନ ପର୍ଯ୍ୟଟନ କେନ୍ଦ୍ରରୂପେ ଘୋଷଣା କରି ଉତ୍କଳୀୟ ସଂସ୍କୃତିକୁ ପୁନର୍ଜୀବିତ କରିବା ସଙ୍ଗେ ସଙ୍ଗେ ଜାତି ତଥା ଦେଶର ଉଚ୍ଚ ପରଂପରା ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ପ୍ରାଚୀନ କୋଣାର୍କର ଶିଳ୍ପୀବୃନ୍ଦ ଏବେବି ବଞ୍ଚିରହି ସ୍ୱକୀୟ କଳାର ପାଟବତା ପ୍ରଦର୍ଶନ କରିପାରିବେ ଓ ସ୍ୱକୀୟ ସୂକ୍ଷ୍ମ କାରୁକାର୍ଯ୍ୟକୁ ନିହାଣ ମୁନରେ ଫୁଟାଇ ପାରିବେ ବୋଲି ଗଭୀର ଆତ୍ମବିଶ୍ୱାସ ପ୍ରକାଶେ ଏକ ନୂତନ କୋଣାର୍କ ମନ୍ଦିରର ନିର୍ମାଣ ଚିନ୍ତା କରି ତା'ର ନିର୍ମାଣ ଅଟକଳ ନକ୍ସା ପ୍ରଭୃତି ପ୍ରସ୍ତୁତ କରି ନିର୍ମାଣର ନିକଟବର୍ତ୍ତୀ ହୋଇ ଗଲେଣି, ଯଦି ଏହା ନିର୍ମିତହୋଇ ପାରେ ତାହା ଆମର ପରବର୍ତ୍ତୀ ସମୟର ଦାୟାଦଙ୍କୁ ଏହି କୋଣାର୍କର ସୂଚନା ଦେବା ସଙ୍ଗେ ସଙ୍ଗେ ପୂର୍ବଭଳି ଭାସ୍କର୍ଯ୍ୟ ନିର୍ମାଣ କଳାକୁ ଆଗେଇ ନେବ ।

ସା : ପୋ : ବଡ଼ଖଲଡ଼ି
ଜିଲ୍ଲା : ମୟୂରଭଞ୍ଜ



# ଉତ୍କର୍ଷ

● ଶ୍ରୀ ନରହରି ଉପାଧ୍ୟାୟ

ହାସ୍ୟ ରସିକ କବି ଯଦୁମଣି ମହାପାତ୍ରେ ରସିକତା କରି ଗାଇଥିଲେ ।–

"ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହସ୍ତରେ ଦେଲି ଗୋଦାନ ଟେକି
ଲଙ୍ଗା ମଧ୍ୟରେ ଖଡ଼ା କଲି ରଜକ
କାମୁଡ଼ା ଘୋଡ଼ା ମୁଖେ ଦେଲି ଚୁମ୍ବନ
ହେ ରାଜା କି କଲ
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ।"

ଉକ୍ତିଟି ଅପାତ ହାସ୍ୟୋଦ୍ଦୀପକ ବୋଧ ହେଲେ ହେଁ, ଭାବ ତାତ୍ପର୍ଯ୍ୟର ଗଭୀରତା ପ୍ରଣିଧାନଯୋଗ୍ୟ । ବସ୍ତୁର ମୂଲ୍ୟ ଅବଧାରଣ ନ କରି ହେୟ ସ୍ଥାନରେ ଫିଙ୍ଗିଦେବାରୁ କବି କଣ୍ଠରେ ଉଠିଛି ବିକ୍ଷୋଭର ସ୍ୱର । ଆଲୋଚନାର ଅଗ୍ରଗତିରୁ ଏହାର ପ୍ରାସଙ୍ଗିକତା ଅନୁଧ୍ୟେୟ

କପିଳ ସଂହିତା ଉଲ୍ଲେଖ କରିଛି–

"ବର୍ଷାନାଂ ଭାରତଃ ଶ୍ରେଷ୍ଠୋ
ଦେଶାନାମୁତ୍କଳେ ଶ୍ରୁତଃ
ଉତ୍କଳସ୍ୟ ସମୋ ଦେଶୋ
ଦେଶୋନାସ୍ତି ମହୀତଳେ ।"

ପୌରାଣିକ ଯୁଗରୁ ଉତ୍କଳ ଦେଶର ଖ୍ୟାତି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଧରାପୃଷ୍ଠରେ ତାଦୃଶ ଅନ୍ୟ ଦେଶ ନାହିଁ । ଅପରନ୍ତୁ ଐତିହାସିକ ଯୁଗରେ ତାର ଗୌରବ ଗରିମାକୁ ଅତି ନିଷ୍ଠୁର ଭାବରେ ମ୍ଳାନ କରି ଦିଆଯାଇଛି । ତାର ଅକ୍ଷୟ ଅନୁପମ କାନ୍ତି ବୈଭବକୁ ବିସ୍ମୃତି ଗର୍ଭକୁ ଠେଲି ଦିଆଯାଇଛି । କାରଣ ଅତି ସ୍ପଷ୍ଟ : ଶତାବ୍ଦୀ ଶତାବ୍ଦୀ ଧରି ଘଟଣା ଚକ୍ରରେ ଏ ଦେଶର ଭାଗ୍ୟଚକ୍ର ପ୍ରତିକୂଳରେ ଘୂରିଛି । ଏହାର ଭୌଗୋଳିକ ମହନୀୟତା କିପରି ଅଜ୍ଞାତ ଅଶ୍ରୁତ ହୋଇ ରହି ଯାଉଛି, ତାର ପ୍ରମାଣ ଦିଏ କବିବର ରାଧାନାଥଙ୍କର ନିମ୍ନୋଦ୍ଧୃତ ଶ୍ଳୋକୋକ୍ତି–

"କ୍ଷୁଦ୍ର ସିପ୍ରାସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ
ସରୁପା ଅଂଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ ପୁଷ୍କର ।

× × ×

ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ
ମହାତୀର୍ଥ ରୂପେ ଲୋକେ ପୂଜାପାଏ ।
ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭିନାହିଁ ଗିରି ସମାଜେ ଆସନ ।" (ଚିଲିକା)

ଏ ସବୁ ଶ୍ଳୋକୋକ୍ତିର ଅବତାରଣା କରିବାର ତାତ୍ପର୍ଯ୍ୟ ହେଲା, ଅଯୁକ୍ତିରେ ଯୁକ୍ତି ଓ ଅବସ୍ତୁରେ ବସ୍ତୁଜ୍ଞାନ, ଲଘୁକୁ ଗୁରୁ ଏବଂ ଗୁରୁକୁ ଲଘୁ ପ୍ରତିପନ୍ନ କରିପାରେ । ଆମର ଏ ପୁରାଣ ପ୍ରସିଦ୍ଧ, ପରଂପରା ସମୃଦ୍ଧ ଉତ୍କଳ ଦେଶ ଭାଗ୍ୟରେ ପରବର୍ତ୍ତୀ କଥାଟି କିପରି ସତ୍ୟ ପ୍ରତିପାଦିତ ହୋଇଛି, ସଂଶିତ ଶୀର୍ଷକରେ ଆଲୋଚନା ପ୍ରସଙ୍ଗରେ ତାହା ଦର୍ଶାଇଦେବା କାମ୍ୟ ।

ଅଖଣ୍ଡ ଭାଣ୍ଡରୂପ ବ୍ରହ୍ମାଣ୍ଡ ମଧ୍ୟରେ ଦିବ୍ୟଧାମ ସ୍ୱର୍ଗ । ସେ ଠାବର ଅଧିବାସୀ ଦିବ୍ୟଦେହୀ .... ଦିବ୍ୟଚେତା । ଆକର ଦିବ୍ୟାଗ୍ନିର । ଦିବ୍ୟ ତେଜରେ ସତତ ଉଦ୍ଭାସିତ । ସେଠାରେ ଯାହାକିଛି ସବୁ ଦିବ୍ୟ । ଦେବଭୂମି ରୂପେ ସଚରାଚର ଆଖ୍ୟାତ– ବିଖ୍ୟାତ ଓ ମର୍ଯ୍ୟାଦିତ ସେ ଧାମ । ଚର୍ମ ଚକ୍ଷୁରେ କେହି କେବେ ଦେଖିନାହିଁ । ତାର ସ୍ୱରୂପ । ଅଥଚ ସନାତନ ଜଗତର ବିଶ୍ୱାସ ପରଂପରାରେ ଶାନ୍ତିର ପରମଧାମ ସ୍ୱର୍ଗ ରାଜ୍ୟ । ଜୀବ ଖୋଜେ ତାର ମାର୍ଗ, ଅନ୍ତିମ କାଳରେ ଆମ୍ଭର ଆଶ୍ରୟସ୍ଥଳ ରୂପେ ତାରି ଖୋଜ । କିନ୍ତୁ ସେ କି ସହଜ ଲଭ୍ୟ ? ଏମନ୍ତେ ଜଣେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ସ୍ୱ ଦେହରେ ସ୍ୱର୍ଲୋକ, ସତ୍ୟଲୋକ

ଯାତ୍ରୀ ହୋଇପାରିବେ ? ତେଣୁ ଏହି ଧରାଧାମରେ ହିଁ ସନ୍ଧାନୀବାକୁ ହେବ । ସେହି ପରମପାବନ ସ୍ୱର୍ଗଧାମର ସ୍ଥିତି, ଯେଉଁଠି ଆକାଂକ୍ଷିତ ଜୀବ ଲଭିବ ଶାନ୍ତି, ତୃପ୍ତି, ସଦ୍‌ଗତି ।

କେଉଁ ପ୍ରାଚୀନ କାଳରୁ ଆମ ଭାରତୀୟ ସତ୍‌ଶାସ୍ତ୍ରପ୍ରଣେତା ଦିବ୍ୟଦ୍ରଷ୍ଟାଗଣ ଏହି ଭୂମଣ୍ଡଳରେ ଦେଇଛନ୍ତି ଭୂ-ସ୍ୱର୍ଗର ସନ୍ଧାନ । କଳ୍ପନାର କୌଣସି ତୁଳିଚିତ୍ରିତ ରାଜ୍ୟ ନୁହେଁ, ବାସ୍ତବତାର ସାକାର ରୂପ । କାଳ ବିପର୍ଯ୍ୟୟ ହେଉ ଅଥବା ଭାଗ୍ୟ ବିଡ଼ମ୍ବନାରୁ ହେଉ, ସେ ଭୂସ୍ୱର୍ଗ ଆଜି ଆମ ଜ୍ଞାନ ପରିସୀମାର ପ୍ରାୟ ଅନ୍ତର୍ହିତ, ଅଜ୍ଞାତ ଅଖ୍ୟାତ, ଅବଜ୍ଞାତ । ଶାସ୍ତ୍ରୀୟ ପ୍ରେରଣାକୁ ସମ୍ବଳ କରି, ବିସ୍ମୃତି ଗର୍ଭରୁ ଛିନ୍ନ ସୂତ୍ରର ଖିଅ ଧରି, ଲୁପ୍ତପ୍ରାୟ ଦୀପ୍ତ ଗୌରବକୁ ବିକଶିତ କରିବା ପାଇଁ ଆମେ ପ୍ରୟାସୀ । ସେଥି ପାଇଁ ପରିବର୍ତ୍ତିତ ପରିସ୍ଥିତିଦ୍ୱାରା ଆମେ ଯେତିକି ପ୍ରଣୋଦିତ, ସେତିକି ଉତ୍ସାହିତ ।

ଶ୍ରୀମଦ୍ ବୃହନ୍ନାରଦୀୟ ପୁରାଣ ପ୍ରମାଣ କରି ଦେଇଛନ୍ତି—

"ପୁରୁଷୋତ୍ତମାତ୍ ପରଂ କ୍ଷେତ୍ରଂ
ନାସ୍ତ୍ୟତ୍ର ପୃଥିବୀ ତଳେ
ଭୂସ୍ୱର୍ଗମିତି ବିଖ୍ୟାତଂ
ଦେବାନାମପି ଦୁର୍ଲଭମ୍ ।"

ଅର୍ଥାତ୍ ପୁରୁଷୋତ୍ତମଠାରୁ ବଳି ମହତ୍ତମ କ୍ଷେତ୍ର ପୃଥିବୀ ପୃଷ୍ଠରେ ନାହିଁ । ଏହି ଦେବଦୁର୍ଲ୍ଲଭ ଧାମ ଭୂସ୍ୱର୍ଗ ନାମରେ ଜଗତ ବିଖ୍ୟାତ । ଏ କ୍ଷେତ୍ରକୁ ସ୍ୱର୍ଗଠାରୁ ଉଚ୍ଚତର ସ୍ଥାନ ଦେବାର ତାତ୍ପର୍ଯ୍ୟ ହେଲା, ସ୍ୱର୍ଗଦେବଙ୍କୁ ସୁଲଭ, ମାତ୍ର ପ୍ରୋକ୍ତ ଭୂସ୍ୱର୍ଗ ଦୁର୍ଲ୍ଲଭ । କ୍ଷେତ୍ରର ସ୍ଥିତି ନିର୍ଦ୍ଦେଶ ପୂର୍ବକ ପୂର୍ବୋକ୍ତ ସିଦ୍ଧାନ୍ତିକ ଉକ୍ତି ସମର୍ଥନରେ ଶ୍ରୀ ପଦ୍ମ ପୁରାଣ କହନ୍ତି—

"ଲବଣାମ୍ଭୋନିଧେସ୍ତୀରେ
ପୁରୁଷୋତ୍ତମ ସଂଜ୍ଞକମ୍
ପୁରଂ ତେ ବ୍ରାହ୍ମଣ ଶ୍ରେଷ୍ଠ
ସ୍ୱର୍ଗାଦପି ସୁଦୁର୍ଲ୍ଲଭମ୍ ।"

ଏହାର ତାତ୍ପର୍ଯ୍ୟ ହେଲା, ସ୍ୱର୍ଗ ତ ଦୁର୍ଲ୍ଲଭ, କିନ୍ତୁ ଲବଣ ସମୁଦ୍ର ତୀରସ୍ଥ ପୁରୁଷୋତ୍ତମଖ୍ୟ ଭୂସ୍ୱର୍ଗ ନାମଧେୟ ଯେଉଁ ପୁର, ସେ ସୁଦୁର୍ଲ୍ଲଭ ।

ଶ୍ରୀ ନୀଳାଚଳକୁ କେନ୍ଦ୍ର କରି ପୁରୁଷୋତ୍ତମ କ୍ଷେତ୍ରର ପରିଧି ଦଶ ଯୋଜନ ବିସ୍ତୀର୍ଣ୍ଣ ବୋଲି କପିଳ ସଂହିତା ନିର୍ଣ୍ଣୟ କରିଛନ୍ତି । କିନ୍ତୁ ଏହାର ପରିସୀମାକୁ ଆହୁରି ପ୍ରଶସ୍ତ କରି ଦେଇଛନ୍ତି ସ୍କନ୍ଦ ପୁରାଣ, ଯଥା—

"ଯତ୍ରାସ୍ତେ ଭାରତେ ବର୍ଷେ
ଦକ୍ଷିଣୋଦଧି ସଂସ୍ଥିତଃ
ଉତ୍କଳଦେଶ ଇତି ଖ୍ୟାତଃ
ସ୍ୱର୍ଗ ମୋକ୍ଷ ପ୍ରଦାୟକଃ ।"

ଏଥିରେ ଦକ୍ଷିଣ ସମୁଦ୍ର ତୀରବର୍ତ୍ତୀ ମୁକ୍ତିପ୍ରଦ ଉତ୍କଳ ଦେଶର ସମଗ୍ର ଭୂଭାଗକୁ ହିଁ ଭାରତର ସ୍ୱର୍ଗ ବୋଲି ପ୍ରମାଣ କରାଯାଇଛି । କଥିତ ଅଞ୍ଚଳର ସୀମାକୁ ଜୈମିନୀଙ୍କ ଉକ୍ତିରେ ଆହୁରି ସ୍ପଷ୍ଟ ଭାବରେ ଚିହ୍ନିତ କରି ଦେଇଛନ୍ତି ପଦ୍ମ ପୁରାଣ, ଯଥା—

"ଋଷିକୁଲ୍ୟାଂ ସମାସାଦ୍ୟ
ଦକ୍ଷିଣୋଦଧି ଗାମିନୀମ୍,
ସ୍ୱର୍ଣ୍ଣରେଖା ମହାନଦ୍ୟୋର୍ମଧ୍ୟେ
ଦେଶଃ ପ୍ରତିଷ୍ଠିତଃ ।" (ଅ-୬-୨୭)

ଏବଂ ସେ ଭୂମିଭାଗ—"ଭୂସ୍ୱର୍ଗଂ ସାଂପ୍ରୀତଂହ୍ୟେଷଂ କଥିତଃ ପୁରୁଷୋତ୍ତମଃ" । ଦକ୍ଷିଣ ସମୁଦ୍ର ଗାମିନୀ ଋଷିକୁଲ୍ୟା ନଦୀଠାରୁ ଆରମ୍ଭ କରି ଉତ୍ତରବର୍ତ୍ତିନୀ ସୁବର୍ଣ୍ଣରେଖା ଓ ମହାନଦୀ ମଧ୍ୟସ୍ଥ ଅଞ୍ଚଳକୁ ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ଏବଂ ବର୍ତ୍ତମାନ ଏହା ପୃଥିବୀରେ ଭୂସ୍ୱର୍ଗ ବୋଲି ବର୍ଣ୍ଣିତ ହୋଇଅଛି । ଏ କ୍ଷେତ୍ରର ଅଧିପତି ସ୍ୱୟଂ ଶ୍ରୀ ଜଗନ୍ନାଥ । ତନ୍ତ୍ର ଯାମଳାରେ ଉଲ୍ଲେଖ ଅଛି,

"ଭାରତେ ଶ୍ୱେତ୍‌କକେ ଦେଶେ
ଭୂସ୍ୱର୍ଗ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ
ଭକ୍ତନାମଭୟ ପ୍ରଦଃ ।"

ପୁରୁଷୋତ୍ତମ କ୍ଷେତ୍ରର ମହିମା ଅବର୍ଣ୍ଣନୀୟ । ଭୂସ୍ୱର୍ଗ କଥିତ ଏହି ପରମପାବନ ଭୂଭାଗରେ ସ୍ୱୟଂ ନାରାୟଣ ଦାରୁବ୍ରହ୍ମ ରୂପରେ ପ୍ରକଟିତ ହୋଇଛନ୍ତି । ସେଠାରେ ବହୁ ପୁଣ୍ୟତୀର୍ଥ ଓ ପୁଣ୍ୟାୟତନର ସମାବେଶ ଘଟିଛି । ଏହି ପରମ ଦୁର୍ଲ୍ଲଭ କ୍ଷେତ୍ର ଅଜ୍ଞାନ ଜୀବମାନଙ୍କୁ ମଧ୍ୟ ମୁକ୍ତିଦାନ କରେ । ବ୍ରହ୍ମା ପ୍ରଭୃତି ପ୍ରଭୁମାନଙ୍କର ଏ କ୍ଷେତ୍ରରେ ପ୍ରଭୁତ୍ୱ ଅଧିକାର ନାହିଁ ଏବଂ ଶୁଭାଶୁଭ କର୍ମଫଳ ନିଷ୍ପତ୍ତି ଏ କ୍ଷେତ୍ରରେ କଦାପି ପ୍ରଭାବଶାଳୀ ନୁହେଁ । ପାପିଷ୍ଠ ମଧ୍ୟ କ୍ଷେତ୍ର ଭୂମିରେ ପ୍ରବେଶ କଲେ ତାର ସକଳ ଦୁଷ୍କୃତି ଅଗ୍ନିରେ ତୁଳାରାଶି ପରି ସମୂଳେ ଦଗ୍ଧୀଭୂତ ହୁଏ । ଏ କ୍ଷେତ୍ରବାସୀ କଦ୍‌ମିନ କାଳେ ମୃତ୍ୟୁଦେବ ଯମଙ୍କର ଅଧୀନ ନୁହଁନ୍ତି । ସାମାନ୍ୟ କାକପକ୍ଷୀଟିଏ ଚତୁର୍ଭୁଜ ହୋଇ ଏଠାରେ ସାରୂପ୍ୟ ମୁକ୍ତିଲାଭ କରିଥିବାର ପ୍ରମାଣ ଶାସ୍ତ୍ରରେ ଉଲ୍ଲେଖ ଅଛି । ତେଣୁ କୁହାଯାଇଛି —

"ସାକ୍ଷାତ୍ ବୈକୁଣ୍ଠରୂପଂ ତତ୍,
କ୍ଷେତ୍ରଂ ଶ୍ରୀ ପୁରୁଷୋତ୍ତମଂ,
କ୍ଷେତ୍ରାଣାମପି କ୍ଷେତ୍ରଂ ଚ,
ତୀର୍ଥାନାମପି ଯଦ୍‌ବରଂ "
( କପିଳ ସଂହିତା )

ପ୍ରୋକ୍ତ ଗ୍ରନ୍ଥଙ୍କ ମତରେ — ରହସ୍ୟଂ ପରମଂ ସ୍ଥାନଂ ବ୍ରହ୍ମାଦୀନାଂ ଚ ଦୁର୍ଲ୍ଲଭମ୍ " । ଏହି ଗୋପନୀୟ ପୁଣ୍ୟପ୍ରଦ ସ୍ଥାନର ଅଦଭୁତ ରହସ୍ୟକୁ ବ୍ରହ୍ମାଦି ଦେବଗଣ ମଧ୍ୟ ଭେଦ କରିପାରି ନାହାନ୍ତି । ଭଗବାନଙ୍କର ଏହା ନିତ୍ୟ ବାସସ୍ଥଳ । ପ୍ରଳୟ କାଳରେ ଯେତେବେଳେ ସମଗ୍ର ସ୍ଥାବର ଜଙ୍ଗମାତ୍ମକ ସୃଷ୍ଟି ନଷ୍ଟହୁଏ, କାରଣାର୍ଣ୍ଣବ ଜଳ ପ୍ରବାହରେ ଜୀବ ଜଡ଼ ସୃଷ୍ଟି ଉଚ୍ଛନ୍ନ ହୋଇଯାଏ, ପରମ ପୁରୁଷ ଶ୍ରୀ ଭଗବାନ ଶ୍ରୀ ପୁରୁଷୋତ୍ତମଙ୍କ ବଟପତ୍ରକୁ ଆଶ୍ରୟ କରି ରହନ୍ତି । ଏହା ଦ୍ୱାରା ଦାରବଲୀଳାସ୍ଥଳୀ ନୀଳାଚଳର ନିତ୍ୟତ୍ୱ ପ୍ରମାଣିତ ହୁଏ ।

ପୁରାଣ ପ୍ରସଙ୍ଗରେ ଉତ୍କଳ ଦେଶର ଜନଜୀବନକୁ ଦିବ୍ୟ ଭାବରେ ଉପସ୍ଥାପିତ କରାଯାଇଛି ।

ଭୂସ୍ୱର୍ଗ ନାମର ସାର୍ଥକତା ପ୍ରମାଣିତ କରିବା ପାଇଁ ତତ୍ରତ୍ୟ ଅଧିବାସୀଙ୍କର ଚରିତ୍ର ଚିତ୍ରଣ ଅତି ଉଚ୍ଚକୋଟିରେ କରାଯାଇଛି । ଲୋକମାନେ ସତ୍ୟବାଦୀ ଓ ସଦାଚାରୀ, ମାତୃ ପିତୃଭକ୍ତ, ଲଜ୍ଜାଶୀଳ ଓ ବିନୟୀ ଅଟନ୍ତି । ବୈଷ୍ଣବ ଧର୍ମ ଓ ଦେବ-ବ୍ରାହ୍ମଣ ପରାୟଣ । ବ୍ରାହ୍ମଣଗଣ ବେଦଜ୍ଞ ଓ ଅଧ୍ୟୟନ ତତ୍ପର । ସୃଷ୍ଟିର ଆଦିକାଳରୁ ସେଠାରେ ବେଦ ବିହିତ ଯଜ୍ଞାନୁଷ୍ଠାନ ହୋଇଥାଏ । କ୍ଷତ୍ରିୟଗଣ ସ୍ୱଧର୍ମନିଷ୍ଠ, ପ୍ରଜାପାଳନ ତତ୍ପର, ଦାତା ଏବଂ ଅସ୍ତ୍ରବିଦ୍ୟା ପ୍ରବୀଣ, ସର୍ବଶାସ୍ତ୍ର ବିଶାରଦ । ବୈଶ୍ୟଗଣ କୃଷି, ବାଣିଜ୍ୟ ଓ ଗୋରକ୍ଷଣାଦି କାର୍ଯ୍ୟରେ ନିଯୁକ୍ତି ରହି ଅର୍ଜିତ ଅର୍ଥ ଦ୍ୱାରା ଦେବତା ଓ ଗୋ-ବ୍ରାହ୍ମଣଙ୍କର ପ୍ରୀତି ଉତ୍ପାଦନ କରିଥା'ନ୍ତି । ଶୂଦ୍ରଗଣ ସତତ ସ୍ୱ ସ୍ୱ ସେବା ପରାୟଣ । ରମଣୀଗଣ ପତି ପରାୟଣା, ସୁଶୀଳା, ଧର୍ମ ଚାରିଣୀ, ଲଜ୍ଜାଶୀଳା ଓ ସୁଚରିତ୍ରା । ଅତିଥି ପରାୟଣତା ଏ ଦେଶର ଏକ ମହତ୍ତମ ଆଦର୍ଶ । କାୟ ମନବାକ୍ୟରେ ସମସ୍ତେ ଅତିଥି ସେବା କରନ୍ତି । ମହାଲକ୍ଷ୍ମୀ ସେଠାରେ ଘରେ ଘରେ ସଦା ବିରାଜମାନ । ଧନ ଧାନ୍ୟରେ ଭରା ଉତ୍କଳ ଦେଶ । ଲୋଭୀ, ଶଠ ବା ଖଳ ପ୍ରକୃତିର ଲୋକ ସେଠାରେ ନ ଥା'ନ୍ତି । ଆଧି-ବ୍ୟାଧି, କ୍ଳେଶ-ଯନ୍ତ୍ରଣା, ଅଭାବ-ଅନାଟନ ବିରଳ । ଏହିପରି ଭାବରେ ଲୋକ ଚରିତ୍ରର ମହନୀୟତା ପୁରାଣ ମୁଖରେ ଉଚ୍ଚ ପ୍ରଶଂସିତ ।

ଭୂସ୍ୱର୍ଗ ଉତ୍କଳର ପରିବେଶ ଓ ପାରିପାର୍ଶ୍ୱିକ ପରିସ୍ଥିତିର ତୁଳନା ନାହିଁ । ଜଳବାୟୁ ଜନିତ ପାଗ ଯୋଗ ସଦା ଅନୁକୂଳ । ଭୂମି ସୁଜଳା ସୁଫଳା । ଋତୁଚକ୍ର ପ୍ରବର୍ତ୍ତନରେ କୌଣସି ବ୍ୟତିକ୍ରମ ନ ଥାଏ । ଅକାଳ ବୃଷ୍ଟି, ଅତିବୃଷ୍ଟି ବା ବିରଳ ବୃଷ୍ଟିଦ୍ୱାରା କସ୍ମିନକାଳେ ଶସ୍ୟହାନି ଘଟେନାହିଁ । ଦୁର୍ଭିକ୍ଷ, ମଡ଼କ, ରାଷ୍ଟ୍ରବିପ୍ଳବାଦି ବିପର୍ଯ୍ୟୟ କେବେ ଦେଖା ନ ଥାଏ । ଚିରପ୍ରସନ୍ନ ଏବଂ ନିରୁଦ୍‌ବିଗ୍ନ ପ୍ରଜାକୁଳ କାବ୍ୟ ଶାସ୍ତ୍ର ଚର୍ଚ୍ଚା, ବାଦ୍ୟ ସଙ୍ଗୀତ ନୃତ୍ୟାଦି କଳାବିଦ୍ୟା ସାଧନ ସମେତ ବିବିଧ ଆନନ୍ଦ ପ୍ରମୋଦରେ ଲିପ୍ତ ରହି ସୁଖ ଶାନ୍ତିରେ କାଳାତିପାତ କରନ୍ତି ।

ବ୍ୟକ୍ତି ଚରିତ୍ରର ମହନୀୟତା ସାମାଜିକ ଜୀବନକୁ ପରିପୁଷ୍ଟ କରେ । ଯାହାଫଳରେ ହିଂସା, ଦ୍ୱେଷ, ପରଶ୍ରୀକାତରତାଦି ମାନବ ଧର୍ମ ବିରୋଧୀ ଅବଗୁଣାବଳୀ ପରିଦୃଷ୍ଟ ହୁଏନାହିଁ । ପରସ୍ପର ସମ୍ପର୍କକୁ ମଧୁମୟ କରେ ସ୍ନେହ, ଶ୍ରଦ୍ଧା, ସମବେଦନା ଓ ସହାନୁଭୂତି । ସର୍ବଶାନ୍ତି ବିରାଜିତ ରାଜ୍ୟକୁ ସ୍ୱର୍ଗରାଜ୍ୟ ନ କହି ଆଉ କ'ଣ କୁହାଯିବ ?

ଉତ୍କଳ ପ୍ରକୃତିର ଚମତ୍କାରିତା ପୁରାଣକାରଙ୍କୁ କମ ବିମୁଗ୍ଧ କରିନାହିଁ । ସ୍ୱର୍ଗର ପ୍ରାକୃତିକ ଶୋଭାଧାମ ଦେବୋଦ୍ୟାନ ନନ୍ଦନକାନନ । ଭୂସ୍ୱର୍ଗ ଉତ୍କଳର ଦିଗ୍ ଦିଗନ୍ତରେ ପ୍ରକୃତିରାଣୀ ମେଲି ଦେଇଛି ତାର ବୃକ୍ଷଲତା-ଫଳ ପୁଷ୍ପଭରା ଶୋଭାର ପସରା । ଚତୁର୍ଦ୍ଦିଗରେ ଭରି ରହିଛି ଅର୍ଜ୍ଜୁନ ଅଶୋକ, ତାଳ, ତମାଳ, ହିନ୍ତାଳ, ନାରିକେଳ, ଶାଳ, ପିଆଶାଳ, ବକୁଳ, ନିମ୍ବୁକ, ପନସ, କପିତ୍ଥ, ଆମ୍ର, ନାରଙ୍ଗ ପ୍ରଭୃତି ଲକ୍ଷ ଲକ୍ଷ ମହାକାୟ ବୃକ୍ଷରାଜି । ପୁଷ୍ପ ମଧ୍ୟରେ ମାଳତୀ, କୁନ୍ଦ, କଦମ୍ବ, କରବୀର, କେତକୀ, ନାଗେଶ୍ୱର, କିଂଶୁକ, ଲବଙ୍ଗ, ଦାଡ଼ିମ୍ବ, ମୁଚୁକୁନ୍ଦ ପ୍ରଭୃତିର ନାମ ଉଲ୍ଲେଖ ଯୋଗ୍ୟ । ଏପରି କି ପାରିଜାତ, ଅଗୁରୁଚନ୍ଦନାଦି ମର୍ତ୍ତ୍ୟ ଦୁର୍ଲ୍ଲଭ ବୃକ୍ଷରାଜି ଭୂ-ସ୍ୱର୍ଗ ଉଦ୍ୟାନରେ ସୁଲଭ ଥିବାର ଶାସ୍ତ୍ରୀୟ ପ୍ରମାଣ ମିଳେ, ଯଥା —

" ମନ୍ଦାରୈଃ ପାରିଜାତୈଶ୍ଚ,
ନ୍ୟଗ୍ରୋଧାଗୁରୁ ଚନ୍ଦନୈଃ ।"

( ସ୍କନ୍ଦ ପୁରାଣ ୬ । ୨୨ )

ଜିଜ୍ଞାସୁ ମୁନି ପ୍ରବରମାନଙ୍କୁ ମହର୍ଷି ଜୈମିନି ଉତ୍କଳ ପ୍ରକୃତିର ଉପସଂହାର କରି ବୁଝାଇ ଦେଇଛନ୍ତି —

" ନାନାଦ୍ରୁମ - ଲତାକୀର୍ଣ୍ଣଃ
ପର୍ବତୈଃ ସିନ୍ଧୁଭିର୍ବୃତଃ,
ସ ଏଷ ଦେଶ ପ୍ରବର,
ଉତ୍କଳାଖ୍ୟୋ ଦ୍ୱିଜୋତ୍ତମାଃ ।"

ଅର୍ଥାତ ନାନା ବୃକ୍ଷଲତା, ବିବିଧ ପର୍ବତ ଓ ନଦୀ ପରିବେଷ୍ଟିତ ଏହି ପୁରୁଷୋତ୍ତମାଖ୍ୟ ଉତ୍କଳ ଭୂଭାଗ ନିଖିଳ ଦେଶ ମଧ୍ୟରେ ଅତ୍ୟନ୍ତ ଉତ୍ତମ ଓ ମନୋମୁଗ୍ଧକର ଅଟେ । ଅତଏବ ସର୍ବଗୁଣରେ କ୍ଷେତ୍ରବର ପୁରୁଷୋତ୍ତମ ସମେତ ସମଗ୍ର ଉତ୍କଳ ମଣ୍ଡଳ ଭୂ-ସ୍ୱର୍ଗ ନାମକୁ ପୂର୍ଣ୍ଣତଃ ସାର୍ଥକ କରେ ।

କ୍ଷେତ୍ରର ରମଣୀୟତା ବିଷୟରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଉକ୍ତି ଅନୁଧ୍ୟେୟ । " ବିବିଧ ମନୋଜ୍ଞ କୁସୁମ ସମୁଦ୍ଭାସିତ ତରୁ ଓ ଗୁଳ୍ମଲତାଦି ବିରାଜମାନ ଥିଲ । ପଦ୍ମିନୀ ଖଣ୍ଡ ମଣ୍ଡିତ କେତେ ଜଳାଶୟ, କେତେ ପୁଷ୍କରିଣୀ କେତେ ଦୀର୍ଘିକା, କେତେ ତଡ଼ାଗାଦି ବିଦ୍ୟମାନ । ଅନ୍ୟାନ୍ୟ କୂଜନ ପରାୟଣ ଜଳଚର ବିହଙ୍ଗମ ଓ ଅନ୍ୟାନ୍ୟ ଜଳଜାତ କୁସୁମରାଶି ଏହି ଜଳାଶୟମାନଙ୍କରେ ଶୋଭା ପାଉଛି ।" (ବ୍ରହ୍ମ ପୁରାଣ ଅଃ ୪୨) । ଯେଉଁଠାରେ ବିଶ୍ୱାତ୍ମା ପୁରୁଷୋତ୍ତମ ଜଗନ୍ନାଥ ବିରାଜମାନ, ରୁଦ୍ର, ଇନ୍ଦ୍ର, ଅଗ୍ନି ପ୍ରମୁଖ ଦେବତାମାନେ ସର୍ବଦା ସେଠାରେ ବିଦ୍ୟମାନ ଥାଆନ୍ତି । ଗନ୍ଧର୍ବ, ଅପସରା, ପିତୃ, ଦେବ, ମନୁଷ୍ୟ, ଯକ୍ଷ, ବିଦ୍ୟାଧର, ସିଦ୍ଧ, ଋଷି, ପ୍ରଜାପତି, କିନ୍ନର, ନାଗ, ଚତୁର୍ବେଦ, ଶାସ୍ତ୍ର ସମୁଚ୍ଚୟ, ଇତିହାସ, ପୁରାଣ, ପୁଣ୍ୟନଦୀ, ନାନାତୀର୍ଥ, ସାଗର, ଶୈଳାଦି ସମସ୍ତେ ପୁରୁଷୋତ୍ତମ ଧାମରେ ବିଦ୍ୟମାନ ରହି ତା'ର ଭୂ-ସ୍ୱର୍ଗ ନାମର ସାର୍ଥକତା ପ୍ରତିପାଦନ କରୁଛନ୍ତି ।

ଆମେ ଯଦି ଆଜି ଏ ଦେଶର ବାଳଠାରୁ ବୃଦ୍ଧଯାଏ ଉଚ୍ଚ ଶିକ୍ଷିତ ବୋଲାଉଥିବା ଲୋକଙ୍କୁ ପ୍ରଶ୍ନକରୁ, ଭାରତର ଭୂ-ସ୍ୱର୍ଗ କିଏ ? ଶହେରୁ ଶହେ ଉତ୍ତର ଦେବେ କାଶ୍ମୀର । ଏ ଭଳି ଉତ୍ତରରେ ଏ ଦେଶର ଯେ କୌଣସି ପରମ୍ପରା ସ୍ୱାଭିମାନୀର ମୁଣ୍ଡ ଲଜ୍ଜ୍ୟା ଓ ଦୁଃଖରେ ନଇଁଥିବ ସିନା, ଗୌରବ ବୋଧ ଆସିବ ନାହିଁ । ହାତୀର କାନଟା ହାତରେ ପଡ଼ିଥିବା ଅନ୍ଧ ଲୋକକୁ ଯଦି ପଚରା ଯାଏ, "ହାତୀ କିପରି ?" ହାତୀଟା କୁଲପରି ନ କହି ସେ ଆଉ କ'ଣ କହନ୍ତା ? ଆମର ଆଧୁନିକ ଶିକ୍ଷା ଆମକୁ ଆଣି ଦେଇଛି ବୈଷୟିକ ସମୃଦ୍ଧି କିନ୍ତୁ କରି ଦେଇଛି ଜ୍ଞାନାନ୍ଧ ; ଆମ ମୁଣ୍ଡରେ ଭରି ଦେଇଛି ସମ୍ମାନର ଚେତନା, ମାତ୍ର ହରି ନେଇଛି ଆମର ସ୍ୱାଭିମାନ । ଆମେ ଆମର ସ୍ୱକୀୟ ଆଭିଜାତ୍ୟକୁ ଅପର ବେଦୀରେ ବଳି ପକାଇ ପରମୁଖାପେକ୍ଷୀ ହୋଇ ଯାଉଛୁ । ବର୍ତ୍ତମାନ ପୂର୍ବୋକ୍ତ । ପ୍ରଶ୍ନୋତ୍ତରର ବିଚାର କରାଯାଉ ।

ଉତ୍ତର ଭାରତର ହିମାଳୟ ପାଦଦେଶରେ ଅବସ୍ଥିତ କାଶ୍ମୀର ରାଜ୍ୟ । ବିଶ୍ୱବିଖ୍ୟାତ ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟର ଭୌଗଳିକ ପ୍ରଶସ୍ତି । ବିବିଧ ଫଳଫୁଲଭରା ଉଦ୍ୟାନ ଓ ରାଜମାର୍ଗର କେଡ଼େ କେଡ଼େ ସୁବିନ୍ୟସ୍ତ ପାଦପାବଳୀର ଶୋଭା, ପ୍ରାକୃତିକ ହ୍ରଦାବଳୀର ଅପରୂପ ସୌନ୍ଦର୍ଯ୍ୟ, ଚତୁର୍ଦ୍ଦିଗରେ ଶୋଭାମାନ ଉତ୍ତୁଙ୍ଗ ଉଜ୍ଜ୍ୱଳ ପର୍ବତଶ୍ରେଣୀ ମନୋରମ ପାର୍ବତ୍ୟ ଉପତ୍ୟକାର ଛବିଳ ଦୃଶ୍ୟାବଳୀ ଏବଂ ତତ୍ରତ୍ୟ ପୁରପଲ୍ଲୀରେ ନିପୁଣ ଶିଳ୍ପୀ ହସ୍ତପ୍ରସୂତ ବିପୁଳ କଳାକୃତିର ସୁସଜ୍ଜିତ ସମାବେଶ ଜନମନ ଆକର୍ଷଣର ଏକ ଏକ ପ୍ରକୃଷ୍ଟ ଚୁମ୍ବକୀୟ ଉପାଦାନ । ସ୍ୱର୍ଗପୁରୀର ନନ୍ଦନବନର ଶୋଭାରାଶି ବର୍ଣ୍ଣନାର ଚମତ୍କାରିତା ଦୃଷ୍ଟିରୁ ପ୍ରାକୃତିକ ସୌନ୍ଦର୍ଯ୍ୟଭରା କାଶ୍ମୀର ଉପତ୍ୟକାକୁ ଭୂସ୍ୱର୍ଗ କହିବାରେ ଅସଙ୍ଗତି ଥାଇ ନପାରେ । ଅପରନ୍ତୁ ଆମକୁ ବୁଝିବାକୁ ହେବ, ସ୍ୱର୍ଗର ମହତ୍ତ୍ୱ କେବଳ କ'ଣ ନନ୍ଦନର ସୌନ୍ଦର୍ଯ୍ୟରେ ନିହିତ ?

ଦିବ୍ୟ ସୌନ୍ଦର୍ଯ୍ୟଭରା ନନ୍ଦନ ଓ ଭବ୍ୟସୌନ୍ଦର୍ଯ୍ୟଭରା କାଶ୍ମୀର ଉପତ୍ୟକାକୁ ଉପମା ଉପମେୟ କରି ଉପସ୍ଥାପନ କରିବା ଭୌଗଳିକ ପରିଭାଷାର ଅଭିବ୍ୟକ୍ତି ; ପ୍ରକୃତି ଚିତ୍ରଣକାରୀ କବି ଲେଖକଙ୍କର ସାରସ୍ୱତ ସୃଷ୍ଟି ପାଇଁ ଆବଶ୍ୟକ ଉପାଦାନର ମୂଳ ଭଣ୍ଡାର । ମାତ୍ର ଏତିକି ବୁଝିବା ଦରକାର, ଭାରତର ଶିକ୍ଷା ସଭ୍ୟତା' ସଂସ୍କୃତି ଐତିହ୍ୟ ପରଂପରାର ଦାୟାଦ ବାହ୍ୟ ସୌନ୍ଦର୍ଯ୍ୟର ଉପାସକ ନୁହେଁ, ଅନ୍ତଃ ସୌନ୍ଦର୍ଯ୍ୟର ଦ୍ରଷ୍ଟା ; ସେ କେବେଳ ଅର୍ଥାନ୍ୱେଷୀ ନୁହେଁ, ପରମାର୍ଥ ତତ୍ତ୍ୱାନ୍ୱେଷୀ । ତେଣୁ ତାକୁ ନେଇ ପ୍ରାକୃତିକ ଶୋଭା ପରିପୂର୍ଣ୍ଣ କାଶ୍ମୀର ଉପତ୍ୟକାରେ ବୁଲାଇଲେ ତା'ର ଆତ୍ମା ପରିତୃପ୍ତି ଲାଭ କରି ପାରିବ ନାହିଁ । ତାକୁ ତା'ର କାଂକ୍ଷିତ ଭୂସ୍ୱର୍ଗରେ ପହଞ୍ଚାଇବାକୁ ହେବ, ଯେଉଁଠି ସେ ଲଭିବ ଦିବ୍ୟତ୍ୱର ଅନୁଭୂତି; ପାଇବ ମୁକ୍ତି ପଥର ସନ୍ଧାନ ।

ନୀଳାଚଳ ସଂସ୍କୃତି ହିଁ ଉତ୍କଳର ସଂସ୍କୃତି । କେଉଁ ଆବହମାନକାଳରୁ ଏହା ଚଳି ଆସିଛି, ତା'ର ମୂଳ ନିରୂପଣ କରିବା ସହଜ ନୁହେଁ । ନୀଳାଚଳ ସଂସ୍କୃତିରେ ଦାରୁଦେହରେ ବ୍ରହ୍ମର, ଧରାତଳରେ ସ୍ୱର୍ଗର ଅବତରଣ କରାଯାଇଛି । ଏହି ସଂସ୍କୃତି ପରିପୁଷ୍ଟ ଓଡ଼ିଆ ପୁରାଣ କବି ସ୍ୱର୍ଗରେ ବି ଦେଖେ ପ୍ରାକୃତିକ ଶୋଭା ପରିପୂର୍ଣ୍ଣ ଓଡ଼ିଶା ଦେଶର ଚିତ୍ର ଏବଂ ଓଡ଼ିଶା ଭୂମିରେ ଦେଖେ ଦେବକାନନ ନନ୍ଦନର ପୂର୍ଣ୍ଣତମ ପରିପ୍ରକାଶ । ଉଦାହରଣ ସ୍ୱରୂପ, ଓଡ଼ିଆ ନୃସିଂହ ପୁରାଣର କବି ପୀତାମ୍ବର ଦାସଙ୍କର ନନ୍ଦନ ବନର ଫଳପୁଷ୍ପବିମଣ୍ଡିତ ବୃକ୍ଷଲତାଦିର ବର୍ଣ୍ଣନାରେ ଫୁଟି ଉଠିଥିବା ଉତ୍କଳୀୟ ପ୍ରାକୃତିକ ଶୋଭାର ବର୍ଣ୍ଣବୈଭବ ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇପାରେ ନୃ : ପୁ : ପୃ : (୮୩୧) । ସର୍ବତ୍ର ସେ ଦେଖେ ନୀଳାଚଳ ସଂସ୍କୃତିର ଛାୟା । କେବଳ କବି କାହିଁକି, ପ୍ରତ୍ୟେକ ଉତ୍କଳୀୟ ଦେଖେ ମର୍ତ୍ତ୍ୟ ଭୁବନରେ ଅମର୍ତ୍ତ୍ୟ ବୈକୁଣ୍ଠର ସ୍ଥିତି ଏବଂ ଇହ ପରକାଳ ସଚେତନ ସମଗ୍ର ସନାତନ ଧର୍ମଜଗତକୁ ଦିଏ ଉଦ୍ଧାରୁ ଦିବ୍ୟ ମାର୍ଗର ସନ୍ଧାନ । ଶାସ୍ତ୍ରଘୋଷିତ, "ପୃଥିବ୍ୟାଂ ଗୋପିତଂ ସ୍ଥାନଂ" ଶ୍ରୀ ପୁରୁଷୋତ୍ତମ ଧାମ ହିଁ ସେହି ନିତ୍ୟ ବୈକୁଣ୍ଠ ଏବଂ ତାକୁ ପରିବେଷ୍ଟନ କରି ରହିଥିବା ଭୁକ୍ତିମୁକ୍ତି ଫଳପ୍ରଦ ପରମପାବନ ଭୂମିଭାଗହିଁ ଶାସ୍ତ୍ର ସମ୍ମତ ଭୂସ୍ୱର୍ଗ ।

କିନ୍ତୁ ଆମର ଦୁର୍ଭାଗ୍ୟ, ଆମେ ସୁବର୍ଣ୍ଣକୁ ଫିଙ୍ଗି ଦେଇ ବେଙ୍ଗି ପିତଳକୁ ଆଦରିଛୁ । କେବେ ଜଣେ ରାଜା, ଜଣା ଅବା ଅଜଣାରେ ରହସ୍ୟାବୃତ ବିଶ୍ୱପ୍ରତିମାଟିକୁ ତଳେ ଥୋଇ ଦେବାରୁ କବି ସଦ୍ମଣିଙ୍କର କ୍ଷୋଭଜାତ ହୋଇଥିଲା । ଆଲୋଚନାର ପରିପ୍ରେକ୍ଷଣରେ ପ୍ରଥମରୁ ଦର୍ଶାଇ ଦିଆଯାଇଥିବା କବିବରଙ୍କ କ୍ଷୋଭଜନିତ ଉକ୍ତିଚୟର ପ୍ରାସଙ୍ଗିକତା ମଧ୍ୟ ସ୍ମୃତିକୁ ଆସେ । ଉପସ୍ଥିତ କ୍ଷେତ୍ରରେ ଜନଚେତନାକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଆମର ସଂସ୍କୃତିକ ତଥା ଜାତୀୟ ଗୌରବର ମହନୀୟତା ପ୍ରଦର୍ଶନ ନିମିତ୍ତ କବି ଉକ୍ତିର ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିବା ଓ କରାଇବାର ଆବଶ୍ୟକତା ଅନୁଭବ କରାଯାଏ । ଆଧୁନିକତା ଓ ପ୍ରଗତି ଭଳି କେତୋଟି ଶବ୍ଦ ଆମ ଆଖିରେ ଏପରି ଏକ ନୂଆ ରଙ୍ଗ ଲଗାଇ ଦେଇଛି ଦେଖି ଆମେ ଦେଖି ପାରୁନାହୁଁ ଜାଣି ବି ଜାଣି ପାରୁ ନାହୁଁ ଆମ ହାତ ପାହାନ୍ତିରେ ଥିବା ଭୂସ୍ୱର୍ଗର ବାସ୍ତବ ସ୍ୱରୂପ । ତା' ସାଙ୍ଗକୁ ଯୋଗ ହୋଇଛି ଅନ୍ଧ ବିଶ୍ୱାସର ଦୁହାଇ । ଫଳତଃ ବାସ୍ତବତାକୁ ଆଢ଼େଇ ଦେଇ ବିଦେଶୀ ଭାବରଙ୍ଗ ରଞ୍ଜିତ ଓ କବି କଳ୍ପିତ ଭୌମ ନନ୍ଦନର ଶୋଭାରାଶି ମନନ ଚିନ୍ତନରେ ଆମେ ବିମୋହିତ । ସତ୍ୟ ଚିନ୍ତନ ପାଇଁ ଭୂସ୍ୱର୍ଗାଧିପତି ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥେ ଏ ଜାତିକୁ ପ୍ରେରଣା ଦିଅନ୍ତୁ ।

୪୨୪ ଶହୀଦ୍ ନଗର, ଭୁବନେଶ୍ୱର -୭



# ଗୋବିନ୍ଦ ବଲ୍ଲଭ ପନ୍ଥ

## ଏକ ବହୁମୁଖୀ ପ୍ରତିଭା

ଶ୍ରୀ ସୁଶୀଳ କୁମାର ମ

ବ୍ରିଟିଶ ଶାସନର ବାହୁଛାୟା ଯେତେବେଳେ ଆମ ଦେଶକୁ ଗ୍ରାସ କରିଥିଲା ଶିକ୍ଷା ଏବଂ ଚାକିରୀ କ୍ଷେତ୍ରରେ ଯେତେବେଳେ ଭାରତୀୟମାନେ ଅବହେଳିତ ହେଉଥିଲେ; ଶିଳ୍ପ ପରିବହନ ଓ ବ୍ୟବସାୟ କ୍ଷେତ୍ରରେ ବିଦେଶୀ ସ୍ୱାର୍ଥରକ୍ଷା ନିମନ୍ତେ ନିରବଛିନ୍ନ ଉଦ୍ୟମ ହେଉଥିଲା ଦେଶର ପୁର ପଲ୍ଲୀରେ ହୁହୁ ଥିଲା ଅଶାନ୍ତିର ଅଗ୍ନିଶିଖା ହିଂସାତ୍ମକ ବିପ୍ଳବ ପାଇଁ ସଙ୍ଗଠିତ ହେଉଥିଲା ଗୁପ୍ତ ସୈନ୍ୟଦଳ ସେତିକିବେଳେ ଜାତୀୟ କଂଗ୍ରେସର ପ୍ରତିଷ୍ଠା ନିମନ୍ତେ କ୍ରାନ୍ତିକାରୀ ପଦକ୍ଷେପମାନ ନିଆ ଯାଉଥିଲା । ଏଇ କଂଗ୍ରେସ ପ୍ରତିଷ୍ଠାର ମାତ୍ର ଦୁଇବର୍ଷ ପରେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଜନ୍ମ ଗ୍ରହଣ କରିଥିଲେ ।

ମହାତ୍ମାଗାନ୍ଧୀଙ୍କର ମହାନ ଆଦର୍ଶ ଦେଶର କୋଣେ କୋଣେ ଜାଗ୍ରତ କରିଥିଲା ମୁକ୍ତିର ମଶାଲ । ଛଳ, କପଟ ମିଥ୍ୟା, ବ୍ୟାଭିଚାରୀକୁ ଜଳାଞ୍ଜଳି ଦେଇ ନୀତି ଓ ଆଦର୍ଶର କ୍ଷୁର ଧାରରେ ଆଗେଇ ଚାଲିଥିଲେ ସଂଗ୍ରାମୀଗଣ ଅଳସ ବିଳାସ ଆଭିଜାତ୍ୟକୁ ତ୍ୟାଗକରି କଠୋର ସାଧନା ପଥରେ ସେମାନେ ଅଗ୍ରସର ହେଉଥିଲେ । ପଣ୍ଡିତ ପନ୍ଥଜୀ ସେହି ଆଦର୍ଶର ସ୍ରୋତରେ ନିଜକୁ ସାମିଲ କରିଥିଲେ । ଆଇନ ଓ ସମ୍ବିଧାନର ନିର୍ଦ୍ଦେଶମାନ ଦେଶରେ ସଂସ୍କାର ଆଣିବା ପାଇଁ ସେ ବ୍ରତୀଥିଲେ । ତେଣୁ ସଂବିଧାନ ପ୍ରଣୟନରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ରାଜ୍ୟ ପୁନର୍ଗଠନ ପାଇଁ ସମ୍ବିଧାନ ସଂଶୋଧନ ବିଲ ମଧ୍ୟ ସେ ଆଗତ କରିଥିଲେ ।

ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ଜନସାଧାରଣଙ୍କ ସ୍ୱାର୍ଥ ନିମନ୍ତେ ପନ୍ଥଜୀ ସର୍ବଦା ଆଇନ ବା କ୍ଷମତାର ପ୍ରୟୋଗ କରୁଥିଲେ । ସ୍ୱରାଷ୍ଟ୍ରମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ଥିବା ସମୟରେ ଅତ୍ୟନ୍ତ ଦୃଢ଼ ପଦକ୍ଷେପ ଗ୍ରହଣ କରି ସେ ପ୍ରଶଂସିତ ହୋଇଥିଲେ । ୧୯୫୧ ମସିହାରେ ଉତ୍ତର ପ୍ରଦେଶ ବିଧାନସଭାକୁ ତୃତୀୟ ଥର ପାଇଁ ନିର୍ବାଚିତ ହୋଇ ୧୯୫୫ ମସିହା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଭାବେ ସେ ଦାୟିତ୍ୱ ତୁଲାଉଥିଲେ । ଜମିଦାରୀ ଉଚ୍ଛେଦ ପାଇଁ [illegible] ଆଇନ ପ୍ରଣୟନ କରିଥିଲେ । ଶିକ୍ଷା [illegible] ଗୁରୁତ୍ୱପୂର୍ଣ୍ଣ ସଂସ୍କାର ଆଣିଥିଲେ । ସର୍ଦ୍ଦାର [illegible] ପଟେଲଙ୍କ ପରି ସ୍ୱରାଷ୍ଟ୍ରମନ୍ତ୍ରୀ ରୂପେ ଦାୟିତ୍ୱ ସମ୍ପାଦନ କରି ସେକ୍ଷେତ୍ରେ ଐତିହ୍ୟ ସୃଷ୍ଟି କରିଥିଲେ ତାଙ୍କ ଉତ୍ତରାଧିକାରୀ ହେଲେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ · ନେହେରୁ ବିଦେଶ ଗସ୍ତରେ ଗଲେ ଅନେକ ସମୟରେ ପ୍ରଧାନମନ୍ତ୍ରୀଙ୍କ ଦାୟିତ୍ୱ ସମ୍ପାଦନ କରୁଥିଲେ । ତା ଅସାଧାରଣ ପ୍ରତିଭା ଓ ସ୍ୱଦେଶନିଷ୍ଠା ନିମନ୍ତେ ସେ ଭାର ସର୍ବୋଚ୍ଚ ଉପାଧି "ଭାରତ ରତ୍ନ"ରେ ସମ୍ମାନିତ ହୋଇଥି

ଏଇ ଭାସ୍ୱର ନକ୍ଷତ୍ର ଅସ୍ତମିତ ହେଲା ୧୯୬୧ ମସିହା ୭ ତାରିଖ ସକାଳ ୮ଟା ୪୫ ମିନିଟରେ । ଜାତୀୟ ପ ହେଲା ଅର୍ଦ୍ଧନମିତ । ସେରିବ୍ରାଲ ଥ୍ରମ୍ବୋସିସ୍ ରୋ ପୀଡ଼ିତ ହୋଇ ସେ ଶରୀର ଯନ୍ତ୍ରଣାରେ ଶେଷ ନିଃଶ୍ୱାସ କଲେ ।

ପଣ୍ଡିତ ପନ୍ଥ ପ୍ରଦେଶ ଓ ଦେଶର ଶାସନ ଦାୟି ଥିବା ସମୟରେ ଦରିଦ୍ର ଓ ଅବହେଳିତ ଲୋକଙ୍କର ଅଭ୍ୟ ନିମନ୍ତେ ସଂଗ୍ରାମ କରିଥିଲେ । ୧୯୨୦ ମସିହାରେ ନା କଂଗ୍ରେସ ଅଧିବେଶନ ପରେ ଗାନ୍ଧିଜୀଙ୍କ ଆହ୍ୱାନରେ ପନ୍ଥ ଆଇନ ବ୍ୟବସାୟ ପରିତ୍ୟାଗ କରି ଆଇନ ଭଙ୍ଗ ନି ବ୍ୟାପକ ଅସହଯୋଗ ଆନ୍ଦୋଳନ ସଙ୍ଗଠିତ କରିଥି ଜନ କଲ୍ୟାଣ ନିମନ୍ତେ ୧୯୨୫ ମସିହାରେ ସେ ବିବିଧ ମୂଳକ କାର୍ଯ୍ୟର ନେତୃତ୍ୱ ନେଇ ଥିଲେ । ସେ ଥିଲେ ଓଜସ୍ୱୀ ବକ୍ତା, ବିଶିଷ୍ଟ ଆଇନଜୀବୀ ଓ ନିଃସ୍ୱାର୍ଥ ଦେଶ ସେ ବିବେକର ନିର୍ଦ୍ଦେଶାନୁଯାୟୀ ବ୍ରିଟିଶ ସରକାରଙ୍କ ବି ଭାରତୀୟମାନଙ୍କୁ ସୁସଙ୍ଗଠିତ କରି ଜାତୀୟ ଜୀବନ କ୍ଷେ ଏକ ଅଭ୍ୟୁଥାନ ଆଣିଥିଲେ ।

ସାଇମନ କମିଶନଙ୍କୁ ଯେତେବେଳେ ବିକ୍ଷୋଭ ପ୍ର ଜଣାଯାଉଥିଲା ଦୁଃସାହାସିକ ଭାବେ ପଣ୍ଡିତ ପନ୍ଥ ନେ ଏକ ଆସନ୍ନ ବିପଦରୁ ରକ୍ଷା କରିଥିଲେ । ଜବା ଭାଷାରେ "ପନ୍ଥଜୀଙ୍କ ଭଳି ଜଣେ ଛଅ ଫୁଟିଆ ମଣିଷ ପାଖରେ ଠିଆ ହୋଇ ନ ଥିଲେ ପୁଲିସ ଲାଠିରେ ମୋର ସେ କ'ଣ ହୋଇଥାଆନ୍ତା ତାହା କହିବା କଷ୍ଟସାଧ୍ୟ ।

ପନ୍ଥଜୀ ଲବଣ ଆନ୍ଦୋଳନରେ କାରାବରଣ କରିଥି ଅଳ୍ପ ସମୟ ପାଇଁ କାରାମୁକ୍ତ ହୋଇ ୧୯୩୨ ମସିହା ଆଉଥରେ କାରାରୁଦ୍ଧ ହେଲେ । କୃଷକ, ଶ୍ରମି ଆଦିବାସୀମାନଙ୍କର ନେତା ରୂପେ ସେ ବିଶେଷ ସୁନାମ

କରିଥିଲେ । ଜମିଜମା ସଂସାର ଦିଗରେ ମଧ୍ୟ ତାଙ୍କର ବିଶେଷ ଭୂମିକା ଥିଲା । ମନ୍ତ୍ରୀମଣ୍ଡଳର ନିର୍ଦ୍ଦେଶ କାର୍ଯ୍ୟକାରୀ କରିବା ନିମନ୍ତେ ସନ୍ତଜୀ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ଶାସନଗତ ଶୃଂଖଳା ରକ୍ଷିବା ନିମନ୍ତେ ପ୍ରଶାସକମାନଙ୍କୁ ସେ ଦୃଢ଼ଭାବେ ସତର୍କ କରାଉଥିଲେ । ସେ ପ୍ରଥମେ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କୁ ପ୍ରଥମ ମହିଳାମନ୍ତ୍ରୀ ଭାବରେ ଉତ୍ତର ପ୍ରଦେଶରେ ନିଯୁକ୍ତ କରି ନାରୀ ଜାଗରଣର ଶୁଭ ଉଦ୍ୟମ କରିଥିଲେ ।

ଏତଦ୍‌ବ୍ୟତୀତ ଅସ୍ପୃଶ୍ୟତା ନିବାରଣ ହରିଜନମାନଙ୍କ ମନ୍ଦିର ପ୍ରବେଶ ତଥା ଚରଖା ଓ ଖଦୀର ପ୍ରସାର ନିମନ୍ତେ ସେ ସକ୍ରିୟ ଉଦ୍ୟମ କରିଥିଲେ । ବିଭିନ୍ନ ରାଜ୍ୟରେ ଏହିସବୁ କାର୍ଯ୍ୟକ୍ରମର ଅଗ୍ରଗତି କିପରି ହେବ ସେଥି ନିମନ୍ତେ ବନ୍ଧୁ ଓ ସହକର୍ମୀମାନଙ୍କୁ ବାରମ୍ବାର ତାଗିଦା କରୁଥିଲେ ।

ପଟେଲଙ୍କ ପରି ସେ ଯେ ଥିଲେ ଜଣେ ଲୁହାର ମଣିଷ ଏକଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱାଧୀନତା ପ୍ରାପ୍ତି ପରେ ସାମ୍ବିଧାନିକ ସଭାର ଅନ୍ୟତମ ସଭ୍ୟରୂପେ ନିର୍ବାଚିତ ହୋଇ ଆଇନ ପ୍ରଣୟନ କ୍ଷେତ୍ରରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସମ୍ବିଧାନର ହିନ୍ଦିକୁ ରାଷ୍ଟ୍ରଭାଷାରେ ପ୍ରଚଳିତ କରିବା ପାଇଁ ଯେଉଁ ସୁପାରିଶ ରହିଥିଲା ତାହା ଦକ୍ଷିଣ ଭାରତରେ ଅଶାନ୍ତି ସୃଷ୍ଟି କରିଥିଲା । ଦୂରଦୃଷ୍ଟି ସମ୍ପନ୍ନ ପଣ୍ଡିତ ପନ୍ତ ଏହି ଜଟିଳ ସମସ୍ୟାର ସମାଧାନ ନିମନ୍ତେ ସରକାରୀ ଭାଷାଭାବେ ଇଂରାଜୀ ଭାଷାକୁ ଅନିର୍ଦ୍ଦିଷ୍ଟ କାଳପାଇଁ ପ୍ରଚଳିତ କରିବା ନିମନ୍ତେ ନିର୍ଦ୍ଦେଶ ଦେଇଥିଲେ । ଭାରତ ପାକିସ୍ଥାନ ମଧ୍ୟରେ ଥିବା ଅନେକଗୁଡ଼ିଏ ସମସ୍ୟାର ସମାଧାନ ପାଇଁ ରାଜିନାମା ସ୍ୱାକ୍ଷର କରିବାରେ ସେ ସହାୟକ ହୋଇଥିଲେ ।

ଏହି ମହାନ୍ ଜନନାୟକଙ୍କର ଜନ୍ମଶତବାର୍ଷିକୀ ପୁଣ୍ୟ ଅବସରରେ ପ୍ରତ୍ୟେକ ଭାରତବାସୀ ଦେଶବ୍ରତୀ, ନିର୍ଭୀକ ଓ ନୀତିପରାୟଣ ଜୀବନ ଯାପନପାଇଁ ସଙ୍କଳ୍ପବଦ୍ଧ ହେବା ବାଞ୍ଛନୀୟ ।

ବୁର୍ଲା, ସମ୍ବଲପୁର





# ଏକ ଅନାବିଷ୍କୃତ ପ୍ରତିଭା ସହଦେବ ଦାଶ

ଶ୍ରୀ ବ୍ରଜକିଶୋର ଦାଶ

ଓଡ଼ିଶାର ଏକ ନିଭୃତ କୋଣରେ ଦିନେ ଏପରି ଏକ ପ୍ରତିଭାଦୀପ୍ତ ଗୌରବମୟ ଇତିହାସ ବିକଶି ଉଠିଥିଲା ସେ କଥା ଭାବିଲେ ଆଜି ହୁଏତ ଓଡ଼ିଶାବାସୀ ବିସ୍ମିତ ହୋଇଯିବେ । ଓଡ଼ିଶାର କଟକ ଜିଲ୍ଲାର ଆଜି ଅଜଣା ଏବଂ ସେଥିରେ ନୂଆଁଗାଁ ଏକ ଅନାମଧେୟ ପଲ୍ଲୀ । ସେହି ଅପାଂକ୍ତେୟ ମାଟିର ଜରାଜୀର୍ଣ୍ଣ ଗର୍ଭରେ ଦିନେ ଅବତାର ପୁରୁଷ ପ୍ରଭୁ ଯୀଶୁଙ୍କ ପରି ଏପରି ଏକ ଅଭୂତପୂର୍ବ ପ୍ରତିଭାର ସୃଜନୀବେଣୁ ବାଜି ଉଠିଥିଲା ଯାହା ଆଜି ବିଶ୍ୱାସ କରିହୁଏ ନାହିଁ । ୧୮୯୯ ମସିହା କାର୍ତ୍ତିକ ଶୁକ୍ଳ ୭ମୀ ରବିବାର ବାସ୍ତବିକ ଥିଲା ଏକ ପବିତ୍ର ମୁହୂର୍ତ୍ତ, ଯାହା ଆସିଥିଲା, ଭାଗ୍ୟାକାଶକୁ ଦୀପ୍ତିମନ୍ତ କରି, ପିତା ଚିନ୍ତାମଣି ଦାସ ଓ ମାତା ଅହଲ୍ୟା ଦେବୀଙ୍କୁ ମହିମାନ୍ୱିତ କରି ଏବଂ ସର୍ବୋପରି ଓଡ଼ିଶା ତଥା ଜନ୍ମଭୂମି ଭାରତବର୍ଷକୁ ଗୌରବାନ୍ୱିତ କରି ସହଦେବ ଦାସଙ୍କ ପରି ଜଣେ ମହାନ୍ ବ୍ୟକ୍ତିତ୍ୱର ଆଗମନ ପାଇଁ ଶୁଭ ଶଙ୍ଖ ବଜାଇଥିଲା । ସେ ବିଗତ ଇତିହାସର ସ୍ମୃତି ରୋମନ୍ଥନ ଆଜି କେବଳ ଜଣେ ସଂବେଦନଶୀଳ ଲେଖକ ଭାବରେ ମୋ ପାଇଁ ଅପରିହାର୍ଯ୍ୟ ନୁହେଁ, ଅପର ପକ୍ଷରେ ସମଗ୍ର ଓଡ଼ିଶାବାସୀଙ୍କ ପାଇଁ ଏହା ଏକ ନିରପେକ୍ଷ ନିର୍ବାଚନ ପାଇଁ ନିର୍ଦ୍ଦିଷ୍ଟ ଆହ୍ୱାନ । ସ୍ୱର୍ଗତଃ ଦାସ ଆଜିର ନୂଆଁଗାଁ ପରି ଏକ ସଂକୀର୍ଣ୍ଣ ପରିବେଶରେ ନୂଆଁ ଶିଆ ଖଲଗରେ ଜନ୍ମନେଇଥିଲେ ମଧ୍ୟ ତାଙ୍କର ଜୀବନ ସଂଗ୍ରାମ ସମଗ୍ର ଓଡ଼ିଶା, ଅଧିକ ତଥା ଭାରତବର୍ଷର ତଥାକଥିତ ଅଜ୍ଞାରୀ ଶାସକ ଓ ଅବାଞ୍ଛିତ ଅନୁଶାସନକୁ ଦୂରକରିବା ପାଇଁ ଏକ ଅଶ୍ରେୟ ଶପଥରେ ଅନୁଷ୍ଠାନ୍ ହୋଇପାରିଥିଲା ।

ଶ୍ରୀ ସହଦେବ ଦାସଙ୍କର ଜୀବନୀ ଅନୁଧ୍ୟାନ କଲେ ଜଣାପଡ଼େ ଯଥାର୍ଥରେ ସେ ଥିଲେ ଉଦାର ଶାସକ, ବିପ୍ଳବ, ସାମ୍ୟବାଦ, ସତ୍ୟନିଷ୍ଠା, ମାନବବାଦିତା, ନିର୍ଭୀକତା, ଏବଂ ସେବାପରାୟଣତାର ଏକ ମହାନୁଭବ ସମନ୍ୱୟ । ବିଶେଷକରି ଜଣେ ତ୍ୟାଗପୂତ ଜୀବନାଦର୍ଶର ଏକ ବିସ୍ମୟକର ଦୃଷ୍ଟାନ୍ତ ଭାବରେ ଶ୍ରୀ ଦାସ ଇତିହାସରେ ଅନନ୍ୟ ହୋଇ ରହିବେ । କ୍ଷୀଣକାୟ, ଦୁର୍ବଳ ଶାରୀରିକ ସାମର୍ଥ୍ୟ, ସୀମିତ ଆର୍ଥିକ ସ୍ଫୁର୍ତ୍ତି, କ୍ଷୁଦ୍ର ପାରିବାରିକ ପୃଷ୍ଠପୋଷକତା, ସ୍ୱଳ୍ପ ସାମାଜିକ ସ୍ୱୀକୃତିର ଭିତ୍ତିଭୂମି ମଧ୍ୟରେ ବି ଶ୍ରୀ ଦାସ ଥିଲେ ଅସୀମ ମାନସିକ ଶକ୍ତି, ଅତୁଳ ମାନବିକତା, ତେଜସ୍ୱୀ ଶପଥର ଏକ ସାମଗ୍ରୀ ଗର୍ବର ଅବଶ୍ୟ ମୁଦ୍ରା । ଅତି ଅପରିପକ୍ୱ ବୟସରୁ ତାଙ୍କ ଜୀବନରେ ଦେଖାଦେଇଥିଲା ଜାତି ପ୍ରୀତି ଏବଂ ତ୍ୟାଗନିଷ୍ଠା । "ତୁଳସୀ ଦୁଇପତ୍ରରୁ ବାସେ" ପରି ରାଜକନିକା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ୧୦ମ ଶ୍ରେଣୀରେ ପଢୁଥିବାବେଳେ ସ୍ୱର୍ଗତ ଦାସ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଉଦାର ବ୍ୟକ୍ତିତ୍ୱ, ଅମାୟିକ ଆଦର୍ଶରେ ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ ।

ଯେତେବେଳେ ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନକୁ ଅଙ୍ଗୀକାରକରି ଓଡ଼ିଶା ତଥା ସାରା ଭାରତରେ ବ୍ରିଟିଶ୍ ରାଜତ୍ୱ ପ୍ରତି ଯେଉଁ ବିରୋଧର ବନ୍ୟା ଛୁଟୁଥିଲା ଓଡ଼ିଶାରେ ତାର ନେତୃତ୍ୱ ନେଇଥିଲେ ଉତ୍କଳମଣି ଗୋପବନ୍ଧୁ ଦାସ । ମହାତ୍ମାଗାନ୍ଧୀଙ୍କର ଦେଶବ୍ୟାପୀ ଆନ୍ଦୋଳନକୁ ସଫଳରୂପ ଦେବା ପାଇଁ ଗୋପବନ୍ଧୁ ଦାସ ଯେପରି ନିର୍ବିକାର ନେତୃତ୍ୱ ନେଇ ଓଡ଼ିଶାକୁ ସେହି ଗଣଆନ୍ଦୋଳନର ମହାସ୍ରୋତ ମଧ୍ୟରେ ସ୍ୱତନ୍ତ୍ର ଭୂମିକା ଅର୍ପଣ କରିଥିଲେ, ଶ୍ରୀ ଦାସ ଏହି ଅଭିମୁଖ୍ୟକୁ ସଫଳ ରୂପ ଦେବା ପାଇଁ ତରୁଣ ମୁହୂର୍ତ୍ତରୁ ଶପଥ ନେଇଥିଲେ । ଶ୍ରୀ ଦାସ ଥିଲେ ହୃଦୟବତାରେ ଗୋପବନ୍ଧୁ, କଳ୍ପନାରେ ମହାତ୍ମାଗାନ୍ଧୀ ଓ ବୁଦ୍ଧିରେ ମଧୁସୂଦନ ଦାସଙ୍କର ଏକ ସଫଳ ଅଭିଷେକ । ତରୁଣବୟସରୁ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ସମସ୍ତ ବିଳାସବ୍ୟସନ, ଯୌନ ସୁଲଭ ଚପଳତା ପରିତ୍ୟାଗ କରି ଜାତିରେ ଜଣେ ଫୁଲ ପଳାଶ ବୃକ୍ଷ, ଛିନ୍ନପୁଷ୍ପ ଭଣୀ ପରି ଶ୍ରୀ ଦାସ ଯେପରି ଗାଁ ଗାଁ ବୁଲି ପ୍ରଚାରମେଳା ସୃଷ୍ଟି କରିଯାଇଛନ୍ତି ଏବଂ ଅତି ଅଭେଦ୍ୟ ଭୂମିରେ ମଧ୍ୟ ତାଙ୍କର ପ୍ରବେଶ ଅନ୍ୟମାନଙ୍କୁ ଦ୍ରବୀଭୂତ କରି ପାରିଥିଲା ତାହା ବିସ୍ମୟକର । ୧୯୨୧ ମସିହା ପର୍ଯ୍ୟନ୍ତ ତରୁଣ ଜୀବନର ସମସ୍ତ ଅଧ୍ୟାୟ ସମାପ୍ତପରେ ସେହିଦିନର ଆନ୍ଦୋଳନ ପରେ ମୃତ୍ୟୁପର୍ଯ୍ୟନ୍ତ ଜଣେ ନିଷ୍ଠାପର କଂଗ୍ରେସକର୍ମୀ ଭାବରେ ସେ ତାଙ୍କର ଅଭିଯାନ ଅବ୍ୟାହତ ରଖିଥିଲେ । କଂଗ୍ରେସକର୍ମୀ ଥିବାବେଳେ ସେ ଯେପରି ନିରହଂକାର ସଂଗଠକ ଭାବରେ ପାଦରେ ବୁଲି ବୁଲି ବିନୋବା ଭାବେଙ୍କପରି ଅସହଯୋଗ ଆନ୍ଦୋଳନର ନେତୃତ୍ୱ ଦେଇଥିଲେ ତାହା ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନଙ୍କ ଠାରୁ କୌଣସି ଗୁଣରେ ନ୍ୟୁନ ନ ଥିଲା ! ତାଙ୍କର ଅଭିଯାନ ପଛରେ କୌଣସି ସ୍ୱାର୍ଥପରତା, ଯଶଲିପ୍ସା, ଅଥବା ପଦଲୋଲୁପତା ରୂପି ହୀନମନ୍ୟତା ନ ଥିଲା ।

ସ୍ୱାଧୀନତା ଆନ୍ଦୋଳନ ସମୟରେ ନିରବଚ୍ଛିନ୍ନ କାରାବରଣ ତାଙ୍କ ପାଇଁ ସ୍ୱର୍ଗଥିଲା । ବହୁ ନିର୍ଯାତନା, ପ୍ରତାରଣା, ଆଭ୍ୟନ୍ତରୀଣ ବିରୋଧ, ଶାସକମାନଙ୍କର ରକ୍ତଚକ୍ଷୁର ଧମକ ସତ୍ତ୍ୱେ ଶ୍ରୀ ଦାସ ପଳାୟନପନ୍ଥୀ ଶୃଗାଳ ଶାବକପରି ସଂଗ୍ରାମ ଭୂମିରୁ ପଶ୍ଚାତ୍ପଦ ହୋଇ ନ ଥିଲେ । ବାସ୍ତବିକ ମଣିଷ ଧ୍ୱଂସ ହୋଇ ଯାଇପାରେ, ମାତ୍ର ପରାସ୍ତ ହୋଇ ନ ପାରେ । ଯଥାର୍ଥରେ Earnest Hemingway ତାଙ୍କର ଇଂରାଜୀ ଉପନ୍ୟାସ "Oldman and the Sea" ଉପନ୍ୟାସରେ କହନ୍ତି, "Man may be destroyed, but not defeated" ଏ ମାଟିର ଅମର ସହିଦ୍‌ମାନେ ଏହାର ଜ୍ୱଳନ୍ତ ଉଦାହରଣ ଏବଂ ଶ୍ରୀ ଦାସ ଏହାର ଏକ ଅବିସ୍ମରଣୀୟ ଦୃଷ୍ଟାନ୍ତ । ସେଥିପାଇଁ ସେ ମଧ୍ୟ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପରି ନିର୍ଭୀକ ସ୍ୱରରେ କହୁଥିଲେ, "ଯଦି ଦେଶ ପାଇଁ ମିଳେ କାରାବାସ – କାରା ନୁହଁଇ ସେ ପବିତ୍ର ପ୍ରବାସ" । ୧୯୪୨ର ଅଗଷ୍ଟ ବିପ୍ଳବ ସମୟରେ ଶ୍ରୀ ଦାସ, କେନ୍ଦ୍ରାପଡା ଲୋକାଲ୍‌ବୋର୍ଡର ଭାଇସ ଚେୟାରମ୍ୟାନ ଭାବରେ ଯେପରି ଗୋଟିଏ ଗଣ ଆନ୍ଦୋଳନକୁ ବଳିଷ୍ଠ ନେତୃତ୍ୱ ଦେଇଥିଲେ ତାହା ଆଜିର ଇତିହାସରେ ଜୀବନ୍ତ । ରୋଗ, ଉପାସ ଏବଂ ଦୁଃଖ, ଦାରିଦ୍ର୍ୟର ବୃଶ୍ଚିକ ଦଂଶନସହ ବ୍ରିଟିଶ୍ ଶାସକଙ୍କର ଘନ ଘନ ନିଷ୍ପେଷଣ ଏବଂ ଅମାନୁଷିକ ନିର୍ଯାତନାର ଚକ୍ରବ୍ୟୁହ ତାଙ୍କର ଅଭିମନ୍ୟୁ ତପସ୍ୟାକୁ ଉପହାସ କରି ପାରି ନ ଥିଲା । ନିଜ ଭିତରେ ସହସ୍ର ସୂର୍ଯ୍ୟର ଶପଥନେଇ ଗୋଟିଏ ନିର୍ଯାତିତ ଜାତିର ମୁକ୍ତି ପାଇଁ ଶ୍ରୀ ଦାସ ନିଜକୁ ଅତୁଳ ସାଧକ ଭଗୀରଥ ଭାବରେ ରୂପାନ୍ତରିତ କରିଥିଲେ । ଧୈର୍ଯ୍ୟ, ସାହସ ଓ ନିରବଚ୍ଛିନ୍ନ ସଂଗ୍ରାମ ତାଙ୍କ ଅକୁଣ୍ଠ ସାଧନାର ପରିଚୟ ଦେଇଥାଏ । ଦୀର୍ଘ ୩ ବର୍ଷର କାରାବରଣ ମଧ୍ୟରେ ଥିବାବେଳେ ମଧ୍ୟ ହସ ହସ ମୁହଁରେ ସେ ସମଗ୍ର ଜାତିର ମୁକ୍ତିପାଇଁ ବିନିଦ୍ର ସ୍ୱପ୍ନ ଦେଖୁଥିଲେ । ଅସୀମ ଆଶାବାଦୀ ଭାବରେ କୌଣସି ପ୍ରତିକୂଳ ପରିସ୍ଥିତିରେ ସେ ଭାଙ୍ଗି ପଡୁ ନ ଥିଲେ । ସେହି ଆଶାବାଦର ଅଗ୍ରଦୂତ ଭାବରେ ସେ ମୃତ୍ୟୁ ପର୍ଯ୍ୟନ୍ତ ସଂଗ୍ରାମ କରିଥିଲେ । ଜିଲ୍ଲାର କଟକ ଜେଲରେ ଥିବାବେଳେ ସେଠାରେ ଛୋଟ ଛୋଟ ଶିଶୁଙ୍କୁ ନେଇ ସେ ଏକ ବାନର ସେନା ଗଠନ କରିଥିଲେ ଏବଂ ସେମାନଙ୍କର ଶିକ୍ଷାର ଭାର ନିଜେ ଗ୍ରହଣ କରିଥିଲେ ।

ଶ୍ରୀ ଦାସ ଜଣେ ସଫଳ ବିପ୍ଳବୀ ଭାବରେ ସମଗ୍ର ଭାରତବର୍ଷର ତଥାକଥିତ ବିପ୍ଳବୀମାନଙ୍କର ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରି ପାରିଥିଲେ । ତାଙ୍କ ବିପ୍ଳବର ଜନ୍ମେଜୟ ଆହ୍ୱାନରେ ବ୍ରିଟିଶ ଶାସକଗଣ ମଧ୍ୟ ଆହତ ସର୍ପପରି ଶଙ୍କିତ ହୋଇ ଉଠୁଥିଲେ ।

ସେତେବେଳେ ସମଗ୍ର ଭାରତ ବର୍ଷ ଜମିଦାରୀ ଶାସନର ଲୌହ ଯନ୍ତ୍ରଚକ୍ରରେ ନିଷ୍ପେଷିତ ହୋଇ ଉଠୁଥିଲା । ବେଠି ବେଗାରୀ, ଶୋଷଣ, ନିଷ୍ପେଷଣ ଅନ୍ୟାୟ, ଅତ୍ୟାଚାର, ଲୁଣ୍ଠନ, ନାରୀଧର୍ଷଣର ନିର୍ବୋଧ ଶୀକାର ହୋଇ ଭାରତୀୟମାନେ ଭୁଲିଯାଇଥିଲେ ଜୀବନର ଶାଶ୍ୱତ ସ୍ୱାଧୀନତା ବାରମ୍ବାର ବେଇମାନୀ, ବିଶ୍ୱାସଘାତକ ଶାସକମାନଙ୍କର ହୀନମନ୍ୟ ଅନ୍ଧ କୁହୁଡ଼ିଆମାନଙ୍କର ଶୀକାର ହୋଇ ନିରୀହ ଜନତା ଜୀତଦାସର ଯନ୍ତ୍ରଣା ଭୋଗ କରୁଥିଲେ । ସେତେବେଳେ ତାଙ୍କ ମୌନ ବିପ୍ଳବର ଆହ୍ୱାନ ଏପରି ଜଣେ ଆଜିର ଉଦ୍ଧତ ଶାସକ ବ୍ରଜସୁନ୍ଦର ଦେବଙ୍କର ଅଜଗର ନିଦ୍ରା ଭାଙ୍ଗି ଦେଇଥିଲା । ବ୍ରଜସୁନ୍ଦର ଦେବ ଜଣେ ଉଚ୍ଚାଭିଳାଷୀ ଶାସକ ଥିଲେ ମଧ୍ୟ ତାଙ୍କର ଅନ୍ଧବିଶ୍ୱାସମାନ, ରାଜକୀୟ ଔଦ୍ଧତ୍ୟ, ପ୍ରଜାପୀଡ଼ନ, ଧୃଷ୍ଟତା, ଅମାନୁଷିକ ଅତ୍ୟାଚାର, ବେଠି, ବେଗାରୀ ଖଟାଇବାର ଅହଂକାରୀ ଅଭିଳାଷ, ନାରୀ ନିର୍ଯାତନା, ବ୍ରିଟିଶ୍ ସରକାରଙ୍କ ପ୍ରତି ଅହେତୁକ ଆନୁଗତ୍ୟ ସମଗ୍ର ଆଳିର ସାମାଜିକ ଜୀବନକୁ ଉଚ୍ଛନ୍ନ କରି ରଖିଥିଲା । ସେ ବିଡ଼ମ୍ବିତ ମୁହୂର୍ତ୍ତର ବିଗତ ଇତିହାସ ଆଜି ମନେପଡ଼ିଲେ ଛାତି ଫାଟି ଯାଏ, ବିଦ୍ରୋହର ଅଗ୍ନିବୀଣା ବାଜିଉଠେ । ପୂର୍ବପୁରୁଷମାନଙ୍କର ଅତ୍ୟାଚାରିତ ପ୍ରେତାତ୍ମା ଯେପରି ପ୍ରତିଶୋଧ ପାଇଁ ଆଜିର ବଂଶଧରମାନଙ୍କୁ କଣ୍ଠରୁଦ୍ଧ ସ୍ୱରରେ ବ୍ୟାକୁଳ ଆବେଦନ କରେ । ମଣିଷକୁ ମାଛି, ପୋକପରି ପାଦରେ ଦଳିଦେଇଥିବା, ସୁନାଭଣ୍ଡ ହାଣ୍ଡି କରୁଥିବା ଏବଂ ବାଘପାଟିରେ ହାତପୂରାଇ ବାହୁବଳେନ୍ଦ୍ରର ଡିଣ୍ଡିମ ପିଟୁଥିବା ଉଦ୍ଧତ ଶାସକ, ବ୍ରଜସୁନ୍ଦର ଦେବଙ୍କ ବିରୁଦ୍ଧରେ ପ୍ରଜାମେଳି କରି ସ୍ୱର୍ଗତଃ ଦାସ ନିଜକୁ ଜଣେ ସଫଳ ସଂଗ୍ରାମୀ ଭାବରେ ପ୍ରମାଣିତ କରି ପାରିଥିଲେ । ସତ୍ୟ ମିଥ୍ୟାର ସଂଘର୍ଷ ମଧ୍ୟରେ ସତ୍ୟ ଜୟଯୁକ୍ତ ହୋଇଥିଲା । ଆଲୋକର କ୍ଷୀଣ ଦିପାଳୀ ସମ୍ମୁଖରେ ଦୀର୍ଘ ଦିନର ପୁଞ୍ଜୀଭୂତ ରାଜତନ୍ତ୍ରର ଅନ୍ଧକାର ଦୂର ହୋଇଥିଲା । କ୍ଷୁଦ୍ରଶାସକ ହୋଇ ମଧ୍ୟ ଶ୍ରୀ ଦାସ ଉଗ୍ର ସିଂହ ସମ୍ରାଟକୁ ଉଚିତ୍ ଜବାବ୍ ଦେଇ ପାରିଥିଲେ । କୁଆଖାଇର କୁଆଁଣିଆ ଗ୍ରାମରେ ମାଟି ଦ୍ରୋଣକୁ ଆଶ୍ରୟ କରି ଗଢ଼ି ଉଠିଥିବା ତାଙ୍କର ଏକଲବ୍ୟ ସାଧନା ନିକଟରେ ରାଜବଂଶର 'ଅର୍ଜୁନ' ପରାସ୍ତ ହୋଇଥିଲା ଆଦର୍ଶବୀର କର୍ମବୀର, ତ୍ୟାଗବୀର ହୋଇ ଏକ ନୀତିଭ୍ରଷ୍ଟ ଶାସକକୁ ସେ ଶିଖାଇ ଦେଇଥିଲେ ମାନବିକତାର ମୂଲ୍ୟବୋଧ ଉଦାତ୍ତତାର ମାହାତ୍ମ୍ୟ ଏବଂ ସାମ୍ୟବାଦର ଯଥାର୍ଥ ଦିଗ୍‌ଦର୍ଶନ ।

ସ୍ୱର୍ଗତ ଦାସଙ୍କର ରାଜନୀତି ଏପରି ଆଦର୍ଶଭିତ୍ତିକ ଥିଲା, ଏକଥା ବୋଧ ହୁଏ ଆଜିର ରାଜନୀତିଜ୍ଞମାନେ ବିଶ୍ୱାସ କରିପାରିବେ ନାହିଁ । ରକ୍ତମାଂସର ଦେହ ଧରି ଏପରି ଜଣେ ରାଜନୀତିଜ୍ଞ ଦିନେ ଓଡ଼ିଶାରେ ଜନ୍ମ ନେଇଥିଲେ ଏକଥା ହୁଏତ ଓଡ଼ିଶାର ଭବିଷ୍ୟତ ବଂଶଧରମାନେ ବିଶ୍ୱାସ କରିବେ ନାହିଁ । ଶ୍ରୀ ଦାସଙ୍କର ରାଜନୈତିକ ପଦକ୍ଷେପ ବାସ୍ତବିକ ଅତୁଳନୀୟ । ମଧୁସୂଦନ ଦାସ ଯେପରି ବୁଦ୍ଧି, ଜ୍ଞାନ, ଚତୁରତା, ପ୍ରଜ୍ଞା, ଆଇନଶାସ୍ତ୍ର ନିପୁଣତାରେ ଓଡ଼ିଶାର ପିତାପରି ଥିଲେ ଏବଂ ଉତ୍କଳମଣି ଗୋପବନ୍ଧୁଦାସ ଯେପରି ଦରଦୀ ପ୍ରାଣର ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ଉତ୍କଳର ଜନନୀ ପରି ପୂଜ୍ୟ ଥିଲେ ଶ୍ରୀ ଦାସଥିଲେ ଏପରି ଦୁଇଟି ମୂଲ୍ୟବୋଧର ମଣି କାଞ୍ଚନ ସମନ୍ୱୟ । ବିଧାନସଭାରେ ବିନମ୍ର ଏବଂ ନିର୍ଭୀକ ତପସ୍ୱୀ ଭାବରେ ଏବଂ ସମାଜସେବା କ୍ଷେତ୍ରରେ ଜଣେ ଅତ୍ୟନ୍ତ ମାନବବାଦୀ ଭାବରେ ସେ ଓଡ଼ିଶାର ତଥାକଥିତ ନେତୃବର୍ଗଙ୍କର ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ୧୯୪୯ ମସିହାରୁ ୧୯୫୧ ପର୍ଯ୍ୟନ୍ତ ବିଧାନସଭାରେ ୨ ବର୍ଷପାଇଁ ସଭ୍ୟଥାଇ ମଧ୍ୟ ସେ ଆଜିର ଯେଉଁ ଅଭୂତପୂର୍ବ କାର୍ଯ୍ୟ କରିଯାଇଛନ୍ତି ତାହା ଏବେବି ତାଙ୍କ ମହନୀୟତାର ସ୍ୱାକ୍ଷୀ ହୋଇ ରହିଛି । ଆଜି ରିଂବନ୍ଧ, ବହୁ ପ୍ରାଇମେରୀ ସ୍କୁଲ, ନିଜ ଜନ୍ମ ସ୍ଥାନ କୁଆଁଶରେ ଏକ ସିନିୟର ବେସିକ୍ ସ୍କୁଲ ଏବଂ ବହୁ ଜୁନିଅର ବେସିକ୍ ସ୍କୁଲ ତାଙ୍କ ପ୍ରଚେଷ୍ଟାରେ ସଫଳ

ସ୍ମାରକୀ ହୋଇ ରହିଛି । ଏହାବ୍ୟତୀତ ବହୁ ଅନାଥ ଦରିଦ୍ରଙ୍କର କର୍ମ ସଂସ୍ଥାନ ପାଇଁ ଶ୍ରୀ ଦାସଙ୍କର ତ୍ୟାଗ ଅବର୍ଣ୍ଣନୀୟ ରାଜନୀତି କ୍ଷେତ୍ରରେ ସେ ଥିଲେ ଜଣେ କର୍ମବୀର । ଅଣୁପରି କଥାରେ କହି ହିମାଳୟପରି ଆଚରଣରେ ପ୍ରଦର୍ଶନ କରିବା ତାଙ୍କର ଆଦର୍ଶ ଥିଲା । ବ୍ୟକ୍ତିଗତ ଜୀବନରେ ସେ ଥିଲେ ଜଣେ ନିରାଡ଼ମ୍ବର, ନିରଳସ ଏବଂ ବିନମ୍ର ବକ୍ତା । ବିଧାନସଭାରେ ବକ୍ତୃତାର ବାହାସ୍ଫୋଟ ମାରିବା ଅଥବା ନିଜ ଗୌରବର ଡିଣ୍ଡିମ ପିଟିବା ତାଙ୍କର ଅଭ୍ୟାସ ନଥିଲା । କାହାରି ପ୍ରତି ହିଂସା, ଦ୍ୱେଷ, ପରଶ୍ରୀକାତରତା ପ୍ରଦର୍ଶନ ନକରି ବିନମ୍ର ଏବଂ ନିର୍ଭୀକ ଭାବରେ ସମସ୍ତ ସମସ୍ୟା ଉପରେ ପର୍ଯ୍ୟାଲୋଚନା କରିବା ତାଙ୍କର ଆଚରଣ ଥିଲା । ସେ ନିର୍ଦ୍ଦିଷ୍ଟ ଭାବରେ ରାଜତନ୍ତ୍ର ବିଲୋପ, ଜମିଦାରୀ ଉଚ୍ଛେଦ, ବିଲ୍ ପାଶ୍ କରାଇବା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦେଉଥିଲେ ।

ସମାଜ ସେବକ ଭାବରେ ଶ୍ରୀ ଦାସ ମଧ୍ୟ ଅନ୍ୟତମ ଥିଲେ । ବିଧାନସଭାରୁ ଦିନେ ଘରକୁ ଫେରିବା ବାଟରେ ଗୋଟିଏ ଗାଈ ଜଗୁଆଳ ପିଲା କାନ୍ଦୁଥିବାର ଦେଖି ସେ ତାକୁ କାନ୍ଦୁଥିବାର କାରଣ ପଚାରିଲେ । ପିଲାଟି ସେଦିନ ତା ପାଇଁ କେଉଁ ଲୋକଟିଏ ମଧ୍ୟାହ୍ନ ସମୟରେ ଖାଇବାକୁ ଆଣିନଥିଲା ବୋଲି କହିଥିଲା । ଏହାଶୁଣି ସେ ଗାଈ ପଲକୁ ନିଜେ ଜଗିଲେ ଏବଂ ପିଲାଟିକୁ ଘରକୁ ଖାଇକରି ଆସି ତାଭ ଫେରିବାଯାଏ ରହିବା ପାଇଁ ପ୍ରତିଶ୍ରୁତି ଦେଲେ । ଏପରି ମାନବିକତା ଆଜିର ନେତା ମାନଙ୍କ ଠାରେ କ୍ୱଚିତ୍ ଦେଖାଯାଏ । ଶ୍ରୀ ଦାସ ହିନ୍ଦୁ, ମୁସଲମାନ, ଉଚ୍ଚ ନୀଚ୍ଚ ନିର୍ବିଶେଷରେ ସମସ୍ତଙ୍କୁ ଯେପରି ସ୍ନେହ, ମମତାର ମାତୃତ୍ୱ ଅଜାଡ଼ି ଦେଉଥିଲେ ସେ କଥା ବହୁ ମୁସଲମାନ ବୃଦ୍ଧ ମଧ୍ୟ ଏବେ କହିଥାନ୍ତି । ହିନ୍ଦୁ ବେଶଧରି, ଖଦଡ଼ ଲୁଗା ଆଉ ଖଦର ପଞ୍ଜାଇ ମୁସଲମାନ ବସ୍ତି ମଧ୍ୟରେ ସେ ନିର୍ବିବାଦ ଅତିଥି ହୋଇ ପାରୁଥିଲେ । ତେଣୁ ତାଙ୍କର ମୃତ୍ୟୁପରେ ମୁସଲମାନ ବସ୍ତି ମଧ୍ୟରେ ତାଙ୍କ ମରଦେହକୁ ସମ୍ମାନର ସହ ବୁଲାଯାଇଥିଲା । ଜଣେ ହିନ୍ଦୁ ହୋଇ ମଧ୍ୟ ସେ ମୁସଲମାନ ମାନଙ୍କର ଆଖି ଲୁହରେ ଏବେବି ଜୀବନ୍ତ । ବିଧାନସଭାରୁ ଫେରିବା ପରେ ସେ ପକେଟ୍‌ରେ ଆଣିଥିବା ଟଙ୍କାପଇସା ଦରିଦ୍ର ମାନଙ୍କୁ ବାଣ୍ଟିଦେଇ ଅନେକଥର ରିକ୍ତ ହସ୍ତରେ ଘରକୁ ଫେରୁଥିଲେ । ବଜାରରୁ ଗୁଡ଼ଭଜା କିଣି ଘରକୁ ଖାଇ ଖାଇ ବାଟରେ ଫେରିବା ତାଙ୍କର ବହୁ ଦିନର ଅଭ୍ୟାସ ଥିଲା । ନୂଆଗାଁ ସିନିଅର ବେସିକ୍ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ର ଛାତ୍ରୀ ମାନଙ୍କୁ ସେ ଯେପରି ଜନ୍ମଦାତ୍ରୀ ଜନନୀ ପରି ସ୍ନେହ, ମମତା ଅଜାଡ଼ି ଦେଉଥିଲେ ତାହା ଆଜି ମଧ୍ୟ ଅନେକ ବୃଦ୍ଧ ମାନଙ୍କ କଣ୍ଠରେ ଉଚ୍ଚାରିତ ହୋଇଥାଏ । ଧୀର ଧୀର ବାକ୍ୟାଳାପ, ମଧୁରହସ, ବିନମ୍ର ସୁଲଭ ବ୍ୟବହାର, ଅସୀମ ଧୈର୍ଯ୍ୟ, ନିରାଡ଼ମ୍ବର ରୁଚି, ଧର୍ମ୍ମସାଧନୀ ତାଙ୍କ ଚରିତ୍ରର ଭୂଷଣ ଥିଲା । କୌଣସି ଦରିଦ୍ର କେବେ ତାଙ୍କ ଦରିଦ୍ର ଦୁଆରରୁ ରିକ୍ତ ହସ୍ତରେ ଫେରିଯିବାର ଉଦାହରଣ ନାହିଁ । ୧୯୬୧ ମସିହା ଜୁନ୍‌ମାସ୍ ୧୫ ତାରିଖ ଦିନ ଏକମାତ୍ର କନ୍ୟା, ବିଧବାପତ୍ନୀ ଓ ତାଙ୍କର ପ୍ରିୟ ଜନ୍ମ ଭୂମିର ଆଖିରେ କଣ୍ଟା ପିଟି ଦେଇ ସେ ଗ୍ଳଲିଗଲେ କେଉଁ ଅଜଣା ଭଆସକୁ । ତାଙ୍କ ବିୟୋଗରେ ଓଡ଼ିଶାର ଭାଗ୍ୟାକାଶରୁ ଏକ ଉଜ୍ଜ୍ୱଳ ଆଦର୍ଶର ଜ୍ୟୋତିଷ୍କ ସବୁଦିନ ପାଇଁ ଅସ୍ତମିତ ହୋଇଗଲା । ଗୋଟିଏ ବିଡ଼ମ୍ବିତ ମୁହୂର୍ତ୍ତରେ ଆଜି, ଓଡ଼ିଶା, ଏବଂ ଭାରତବର୍ଷ ଯେପରି ରାଜନୈତିକ ନିଷ୍ପେଷଣ ସାମାଜିକ ଅସଙ୍ଗତି, ସାଂସ୍କୃତିକ ଅଧପତନ, ନୈତିକ ଅବକ୍ଷୟ, ଅର୍ଥନୈତିକ ଉତ୍ପୀଡ଼ନ ମଧ୍ୟରେ ପରାଧୀନତାର ନର୍କ ଯନ୍ତ୍ରଣା ଭୋଗ କରୁଥିଲା ସେତେବେଳେ ସ୍ୱର୍ଗତ ସହଦେବ-ଦାସଙ୍କର ନିଃସ୍ୱାର୍ଥପର ନେତୃତ୍ୱ ଆଣି ଦେଇଥିଲା ଏକ ଯୁଗାନ୍ତର ଆଜିର ଆବାଳବୃଦ୍ଧ ବନିତାଙ୍କ ପିଣ୍ଡରେ ପ୍ରାଣ ସଞ୍ଚାର କରି, ଶିକ୍ଷା ସଂସ୍କୃତିର ପରଂପରା ସୃଷ୍ଟି କରି ଏବଂ ଏକ ଉଦ୍ଧତ ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବ କରି ସେ ଯେପରି ଜାତିର ଇତିହାସରେ ଆଜିକୁ ଗୌରବାନ୍ୱିତ କରିଯାଇଛନ୍ତି ସେଥିପାଇଁ ଶତାବ୍ଦୀ ଶତାବ୍ଦୀ ଧରି ସମସ୍ତେ ତାଙ୍କର ଅମର ଆତ୍ମାନିକଟରେ କୃତଜ୍ଞ ରହିବେ । ସ୍ୱର୍ଗତ ଦାସଙ୍କର ଜୀବନ ସଂଗ୍ରାମ କେବଳ ଆଜିର ଗୌରବ ନୁହେଁ, ସମଗ୍ର ଭାରତବର୍ଷର ଗୌରବ । ଆଜିବି ସେ ପ୍ରତ୍ୟାଖ୍ୟାନ କରି ଗ୍ଳଲିଯାଇଥିବ । ସେହି ନୂଆଗାଁର ନୂଆଁଣିଆ ସ୍କୁଲଘର ଯେପରି ଆଦର୍ଶ ତ୍ୟାଗପୂତ ଜୀବନର ମୂକସାକ୍ଷୀ ହୋଇ ଏକ ମହାତୀର୍ଥର ଆହ୍ୱାନ ହୋଇ ପାରିଛି । ସେ ଜରାଜୀର୍ଣ୍ଣ ଘରେ ବିଧବା-ପତ୍ନୀଙ୍କର ସଂଧ୍ୟା ଦିପାଳୀ ଏବେବି ବହୁ ତୃଷିତ ହୃଦୟର ଅନ୍ଧାର ଦୂର କରୁଛି । ତାଙ୍କର ଏକ ପ୍ରତିମୂର୍ତ୍ତୀ ନିର୍ମାଣ କରିବାପାଇଁ ସେ ମହାନ୍ ତ୍ୟାଗୀ ଗୋଟିଏ ଫଟୋଚିତ୍ର ମଧ୍ୟ ରଖି ଯାଇନାହାନ୍ତି । ସେ ଘର, ସ୍କୁଲ ଭୂଡ଼ିଆର ନିଃଶବ୍ଦ ଅନ୍ଧାର ଯେପରି ଅକ୍ଷତ ବ୍ରହ୍ମର ମହକ ନେଇ ଏବେବି ବାସ୍ନାୟୀତ, ବିପ୍ଳବ, ସମାଜବାଦ ଆତ୍ମତ୍ୟାଗର ଏକ ନୀରବ ବାର୍ତ୍ତାବହ ଭାବରେ ସବୁ ଯୁଗର ସଙ୍ଗ୍ରାମୀ ମାନଙ୍କୁ ଉଦ୍‌ବୁଦ୍ଧ କରିବ । ଏକ ଅଚିହ୍ନା, ଅନାବିଷ୍କୃତ ଆଦର୍ଶର ସୁଜନୀ ପୀଠ ଭାବରେ ସେ ଗୃହ ପଡ଼ି ରହିଛି ଅନାହୃତ ଭାବରେ । ହେଲେ ଏକ ତ୍ୟାଗପୂତ, ଉତ୍ସର୍ଗୀକୃତ ସଂଗ୍ରାମୀ ଜୀବନର ଭିଟାମାଟି ହୋଇ ଏହା ଦିନେ ପ୍ରୟୋଗ ତୀର୍ଥର ମହନୀୟତା ଲାଭ କରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ସରକାରୀ ଉଚ୍ଚ ବିଦ୍ୟାଳୟ, ମାଛକୁଣ୍ଡ
କୋରାପୁଟ, ୭୬୪୦୪୦

# କନ୍ଧ-ସମାଜରେ ଡାଲଖାଇ ପର୍ବ



-ଶ୍ରୀ ତପନକୁମାର ଦାସ

**ଗୁ**ଣିଆଁ ମହେନ୍ଦ୍ର କିଁହର ଧାନମେଣ୍ଟିଟାଏ ଧରି ଧାଂଡିମାନଙ୍କ ସାଥିରେ ଦୋହଲି ଦୋହଲି ନାଚି ନାଚିକା ଅଁଳାଗଛ ମୂଳରୁ ଫେରୁଥାଏ । ଅଁଳାଗଛ ଠାକୁରାଣୀ ସ୍ୱରୂପିଣି, "ଏସନ ବିହନ ଗଣ୍ଡେ ଦେଲେ ନାହିଁ," ଉତ୍ସବର ଉନ୍ମାଦନା ତଳେ ଲୁଚି ରହିଥିଲା ହତାଶାର ଦୀର୍ଘଶ୍ୱାସ । ପାଞ୍ଚମେଳ ଧାଂଡାଙ୍କ ସହିତ ଗୁଣିଆଁ ଅଁଳାଗଛ ମୂଳକୁ ପୂଜାବିଧି କରି ବିହନଧାନ ପାଇଁ ଗୁହାରୀ କରିବାକୁ ଯାଇଥିଲା ।

ସେଦିନ ଥିଲା ମାର୍ଗଶିର ମାସ ଶେଷ ଗୁରୁବାର, କନ୍ଧମାନଙ୍କ ପାଇଁ ନୂଆବର୍ଷର ଦିନ, ଉତ୍ସାହ ଓ ଉଦ୍ଦିପନାର ଦିନ, ବଡ ପର୍ବ । ଅନ୍ୟ ପରିବାର ସେଦିନ "ମାଣ" ବସାଉଥିଲାବେଳେ କନ୍ଧ ସମାଜ ଦିନଟିକୁ "ଡାଲଖାଇ" ପର୍ବଭାବେ ପାଳନ କରନ୍ତି । ଫୁଲବାଣୀର କଟ୍ରିଙ୍ଗିଆ ପଞ୍ଚାୟତର ବେଲପଦରଗାଁ ଅଧିବାସୀମାନେ ଆନନ୍ଦ ଉଲ୍ଲାସରେ "ଡାଲଖାଇ" ପର୍ବ ପାଳନ କରୁଥିଲେ । ତା' ପୂର୍ବଦିନ ଅର୍ଥାତ୍ ବୁଧବାରଦିନ ଗାଁ ସଫେଇ ହେବା ସଙ୍ଗେ ସଙ୍ଗେ ସମସ୍ତଙ୍କ ଘର ଲିପାପୋଛା ହୋଇଥାଏ । ଅନ୍ୟାନ୍ୟ ମୁଠା ମୁଖିଆଙ୍କ ଉପସ୍ଥିତିରେ ପର୍ବ ପାଳନ ସମନ୍ୱୟ ସହାରେ କାର୍ଯ୍ୟକ୍ରମ ସ୍ଥିରିକୃତ ପ୍ରାୟ ।କନ୍ଧମାନେ ମୌଳିକତା ବାଦୀ । ନୀତି, ନିୟମ ଉପରେ ଗୁରୁତ୍ୱ ଦିଅନ୍ତି । ସେମାନେ ସଫାଲୁଗା ପିନ୍ଧି, ବାଜାବଜାଇ ପୂଜକ ବା ଦେହୁରୀ ଦଶରଥ କିଁହର ଘରକୁ ଯାଇଥିଲେ । ଦେହୁରୀଙ୍କୁ ନିମନ୍ତ୍ରଣଦେଇ ଆଦର ଅଭ୍ୟର୍ଥନାରେ ପୂଜାସ୍ଥଳୀ ଲକ୍ଷ୍ମୀଠାକୁରାଣୀ ପୀଠ ବା "ଲକ୍ଷ୍ମୀଗୁଡି"କୁ ପାଛୋଟି ନେଇଥିଲେ । ସାଧାରଣତଃ ଦେହୁରୀ ସେହିଦିନଠାରୁ ଉପବାସ ରହି କର୍ମକର୍ମାଣୀ ଆରମ୍ଭ କରେ । "ଲକ୍ଷ୍ମୀଗୁଡି" ଠାରୁ ଖଣ୍ଡେ ଦୂରରେ ଥିବା ଅଁଳାଗଛ ସ୍ଥିରିପାଖେ ଗୋବରରେ ଲିପାପୋଛା ହୋଇଥାଏ । ଉଦ୍‌ଗ୍ରୀବ ଆଦିବାସୀ ଠାକୁରାଣୀଙ୍କ ପାଖରେ ମଧ୍ୟ ଗୀତ, ନାଚ, ବାଦ୍ୟ ଆରମ୍ଭ କରିଦିଅନ୍ତି ।

ଗୁରୁବାର ଅପରାହ୍ନରେ "ଡାଲଖାଇ" ପର୍ବର ପ୍ରକୃତ ପୂଜାବିଧି ଓ ସମାଗମ ଆରମ୍ଭ ହୁଏ । ଗାଁ ଲୋକ ତାଟରେ ଗୁଡ, ନଡ଼ିଆ, କଦଳୀ ଭିଆ ଭେଣ୍ଡୁତଠ ଇତ୍ୟାଦି ଭୋଗ ସାମଗ୍ରୀ ଆଣନ୍ତି । ଠାକୁରାଣୀଙ୍କ ପାଖରେ କଳସ ବସାଯାଏ, ଧୂପ, ଦୀପ ଦିଆଯାଏ । ସେହିପରି ଅଁଳାଗଛ ନିକଟରେ ଥିବା ପଥରମୁଣ୍ଡିଆକୁ ଠାକୁର ଭାବି ଫୁଲ, ସିନ୍ଦୁର ଦେଇ ପୂଜା ଅର୍ଚ୍ଚନା କରାଯାଏ । ମାର୍ଗଶିର ମାସ ଶେଷ ବୁଧବାରର ପୂର୍ବ ବୁଧବାର ଦିନ ଅଁଳାଗଛକୁ ପୂଜା କରନ୍ତି ଏବଂ ଉଚିତ ମନେକଲେ ବଳି ମଧ୍ୟ ପକାନ୍ତି ।

"ଡାଲଖାଇ" ପର୍ବ ଦିନ ପୂଜା ଆରମ୍ଭ ହେବା ପୂର୍ବରୁ ଗୁଣିଆଁ, ଧାଂଡ଼ୀଓ ବାଜାବାଲାଙ୍କ ସହିତ ନାଚି ନାଚି ଅଁଳାଗଛ ନିକଟକୁ ଯାଏ । ପୂଜା ଅର୍ଚ୍ଚନା ଆରମ୍ଭକରି ପ୍ରଗାଢ ଭକ୍ତିରେ ଲକ୍ଷ୍ମୀ-ଦେବୀଙ୍କୁ ସ୍ମରଣକରି ଗଛ ଉପରେ ଚଢ଼େ ଓ ଡାଳ ଦୋହଲାଏ । ଯଦି ଦେବତା ପ୍ରସନ୍ନ ହୋଇଥାଆନ୍ତି ତେବେ ଗଛରୁ କିଛି ଧାନ ଝଡ଼ିପଡେ । ତଳେଥିବା ଲୋକମାନେ ନୂଆଲୁଗା ଦେଖାଇ ଏହାକୁ ସଂଗ୍ରହ କରନ୍ତି । ଦେବତା ପ୍ରଦତ୍ତ ଏହି ଧାନକୁ ଅନ୍ୟଧାନ ସହିତ ମିଶାଇ ଘରେ ଘରେ ବଣ୍ଟାଯାଏ । ଆଦିବାସୀମାନେ ଆସନ୍ତା ବର୍ଷପାଇଁ ଏହାକୁ ବିହନ ହିସାବରେ ରଖନ୍ତି ।

ଦେବତା ବିହନ ପ୍ରଦାନ କଲେ ଫସଲ ଉତ୍କୃଷ୍ଟ ହୁଏ ବୋଲି କନ୍ଧସମାଜ ବିଶ୍ୱାସ କରେ । ଭଲ ଫସଲ ଆମଦାନୀ ପାଇଁ କନ୍ଧମାନେ ତାଙ୍କର ଦେବତାଙ୍କୁ ଖୁସି କରାଇବାକୁ ଯାଇ ଅଁଳାକୋଳି ଗଛ ପାଖରେ ବଳି ପକାନ୍ତି । "ଡାଲଖାଇ" ଦିନ ବିହନଧାନ ମିଳିଲେ ଦେବତାଙ୍କ ଆଶୀର୍ବାଦ ରହିଛି ବୋଲି ମନେ କରନ୍ତି । ଯଦି ବିହନ ଲାଭରୁ ବଞ୍ଚିତ ହୁଅନ୍ତି ତେବେ ନିଜକୁ ହତଭାଗ୍ୟ ମଣନ୍ତି । ସେଥିପାଇଁ ସେମାନେ ବେଳହୁଁ ଦେବତାଙ୍କୁ ସନ୍ତୁଷ୍ଟ କରିବାକୁ ଯଥାସମ୍ଭବ ଚେଷ୍ଟା କରନ୍ତି । ସେମାନଙ୍କ ମତରେ ପୂର୍ବରୁ ବଳିଦାନ କରି ଦେବତାଙ୍କୁ ଉତ୍ତେଜିତ କରାଇବାପରେ ଶେଷ ଗୁରୁବାର ଦିନ ସାନ୍ତ୍ୱନା ଦେବାପାଇଁ ସବୁମତେ ଚେଷ୍ଟା କରାଯାଏ । "ଡାଲଖାଇ" ପର୍ବ ପାଳନ ଆଦିମ ପ୍ରଜନନ-ତତ୍ତ୍ୱ ଉପରେ ଆଧାରିତ । ଧରଣୀମାତା ଶସ୍ୟ ଗର୍ଭା ହୋଇ ଘରେ ଘରେ ଶସ୍ୟ ସମ୍ଭାର ଦେଇଥାଏ । ସେ ଦୃଷ୍ଟିରୁ ତାଙ୍କର ଦେବତା ବା ଧରଣୀ ଦେବତାଙ୍କୁ ବିଭିନ୍ନ ମାଧ୍ୟମରେ ଖୁସି କରାଇବା ସଙ୍ଗେ ସଙ୍ଗେ ନିଜେ ପର୍ବ ପର୍ବାଣୀ ଜରିଆରେ ଆନନ୍ଦ ଲାଭ କରିବା ଆଦିବାସୀଙ୍କ ସ୍ୱଭାବ ।

ଅଁଳାଗଛ ପାଖରୁ ଫେରିଲା ପରେ ଅସଲ ପର୍ବ ଆରମ୍ଭ ହୁଏ । ଗାଁରୁ ଆସିଥିବା ଭୋଗକୁ ଦେହୁରୀ ଧୂପ, ଦୀପ ଦେଇ ଠାକୁରାଣୀଙ୍କ ନିକଟରେ ପୂଜାକରେ । ପାରମ୍ପରିକ ରତ୍ନରେ ଢୋଲ, ମହୁରୀ, ଘଣ୍ଟା ପ୍ରଭୃତି ବାଜେ । ଆଖପାଖ ଗ୍ରାମବାସୀମାନେ ଉତ୍ସବରେ ଯୋଗ ଦିଅନ୍ତି । ଆଦିବାସୀ ମହିଳାମାନେ ଦଳ ଦଳ ହୋଇପର୍ବ ଦେଖିବାକୁ ଆସନ୍ତି । ଏହି ପରିପ୍ରେକ୍ଷୀରେ ଗାଁ ଓ ପାଖାପାଖି ଅଞ୍ଚଳର ଅବିବାହିତ ଝିଅ (ଧାଂଡୀ) ଓ ଅବିବାହିତ ପୁଅ (ଧାଂଡା) ମାନଙ୍କର ଦେଖା ସାକ୍ଷାତ ହୁଏ । ଧାଂଡୀମାନେ କାନ୍ଧରେ ହାତ ଛନ୍ଦା ଛନ୍ଦି ହୋଇ ବାଜା ତାଳେ ତାଳେ ନାଚନ୍ତି । ଗୁଣିଆଁ, ଧାଂଡୀମାନଙ୍କୁ ଅଧିକ ନାଚିବାପାଇଁ ପ୍ରବର୍ତ୍ତାଏ । ଏଥିରେ ଧାଂଡାମାନେ ମଧ୍ୟ ଭାଗ ନିଅନ୍ତି । ବାଜାବାଲା ଉତ୍ସାହିତ ହୋଇ ଜୋରରେ ବାଜା ବଜାଏ । ନାଚିବା ସଙ୍ଗେ ସଙ୍ଗେ ଧାଂଡୀ, ଧାଂଡା ପରସ୍ପରକୁ ଅଶ୍ଳୀଳକଥା ନିଜ ଭାଷା (କୁଇ)ରେ ବାହୁଲି କରନ୍ତି ।

ଅଶ୍ଳୀଳ-ଭାଷା (ରଣ୍ଡା) ଗୀତ ଆକାରରେ ବୋଲି ଯୁବସୁଲଭତାରେ ଉନ୍ମତ୍ତ ହେବା ସହ ଠାକୁରାଣୀଙ୍କୁ ଖୁସି କରାନ୍ତି । ଅତ୍ୟଧିକ ଅଭଦ୍ର ଭାଷା ସଂଯୋଗରେ ଠାକୁରାଣୀ ସହଜରେ ବର ପ୍ରଦାନ କରିବେ ଏବଂ ସନ୍ତୁଷ୍ଟ ହେବେ ବୋଲି କନ୍ଧମାନଙ୍କର ବିଶ୍ୱାସ । ଧାଂଡୀମାନଙ୍କ ମେଳି ବାଜା ସହିତ ନାଚି ନାଚି ସମୟ ଅନ୍ତରରେ ବାରମ୍ବାର ଠାକୁରାଣୀଗୃହ ପରିକ୍ରମା କରନ୍ତି । ଉତ୍ସବରେ ଉପସ୍ଥିତ ଜନତାକୁ ନିଜ ନିଜର ନୃତ୍ୟ କୌଶଳ ଦେଖାଇ ଧାଂଡୀମାନେ ଗର୍ବିତ ହୁଅନ୍ତି । ବୟସ୍କ ସ୍ତ୍ରୀ ପୁରୁଷ ନୃତ୍ୟ ଗତିରେ ଅଂଶ ଗ୍ରହଣ କରିବାର ଦେଖାଯାଏ । ଧାଂଡୀମାନେ ନାଚିବା ଆଶାରେ ଭଲ ପୋଷାକ ପରିଚ୍ଛଦ ପିନ୍ଧି ପର୍ବକୁ ଆସନ୍ତି । ଧାଂଡା, ଧାଂଡୀ ପରସ୍ପର ପରିଚିତ ହୋଇ ଅବାଧ ମିଳାମିଶା ହୁଅନ୍ତି । ମୁହଁ ଅନ୍ଧାର ହେଲେ ଠାକୁରାଣୀପୀଠରେ ପୁରୁଷମାନେ ମଦ ଖାଇ ମାତାଲ ହୁଅନ୍ତି । ବାଜା ବଡ ବଡ ଶବ୍ଦକରି ବାଜି ଉଠେ । ସମବେତ ଆଦିବାସୀ ନୃତ୍ୟ, ଗୀତ, ବାଦ୍ୟରେ ମ୍ରିୟମାଣ ହୋଇ ପଡନ୍ତି । ସୁଖ, ସମୃଦ୍ଧି କାମନାକରି ସମସ୍ତେ ଠାକୁରାଣୀଙ୍କୁ ପ୍ରାର୍ଥନା କରନ୍ତି ।

"ତାଲଖାଇ" ପର୍ବ ଅବସରରେ କନ୍ଧମାନେ ଦେବତାଙ୍କ ପାଖରେ ବଳି ଦେବାପାଇଁ ମନାସି ଥାଆନ୍ତି । ବଳି ରକ୍ତକୁ ମାଟି, ପଥର, ଦେବତା, ବାଦ୍ୟଯନ୍ତ୍ର ପ୍ରଭୃତି ଉପରେ ପକାଇ ଦେବୁଗା ଶୁଭ ମନାସେ । ବଳି ମାଂସକୁ ପ୍ରସାଦ ହିସାବରେ ଗାଁ ଲୋକଙ୍କ ମଧ୍ୟରେ ବାଣ୍ଟିବା କିମ୍ବା ସେଠାରେ ଭୋଜିକରି ଖାଇବା ପ୍ରଥା ରହିଛି । ମହିଳାମାନେ ବଳିମାଂସକୁ ଖାଇବା ନିୟମ ନାହିଁ । ବଳି ପଡ଼ିଥିବା ଜୀବର ମୁଣ୍ଡକୁ ଖାଇଲେ ସେ/ସେମାନଙ୍କୁ ୧୪ ଦିନ ପର୍ଯ୍ୟନ୍ତ ଅନ୍ୟ ସହିତ କିମ୍ବା ପର ଘରେ ଖାଇବା ପିଇବା ନିଷେଧ । ଅନେକ ସମୟରେ ଗୁଣିଆଁକୁ ଦେବୀ ପ୍ରସନ୍ନ ହୋଇ ଲୋକମାନଙ୍କର ଦୁଃଖ, ଦୁର୍ଦ୍ଦଶା ସମ୍ବନ୍ଧୀୟ ଗୁହାରୀ ଶୁଣନ୍ତି ।

ସମ୍ବଲପୁର, ସୁନ୍ଦରଗଡ, ସୋନପୁର ପ୍ରଭୃତି ଅଞ୍ଚଳରେ କନ୍ଧମାନ ଅଞ୍ଚଳରେ "ତାଲଖାଇ"ରେ କୌଣସି ନିର୍ଦ୍ଦିଷ୍ଟ ଗୀତ କିମ୍ବା ନୃତ୍ୟ ନାହିଁ । ବାଦ୍ୟର ତାଳେତାଳେ ଧାଂଡୀମାନେ ନାଚି ନାଚି ଗୀତ ବୋଲନ୍ତି । ଗୀତରେ ମୁଖ୍ୟତଃ ଅଶ୍ଳୀଳ ଭାଷା ଓ ପ୍ରେମ ସମ୍ବନ୍ଧୀୟ କଥୋପକଥନ ସ୍ଥାନ ପାଇଥାଏ ।

"ବେଲପଦର" ଗାଁରେ "ତାଲଖାଇ" ପର୍ବ ପାଳନ ବିଷୟରେ ଷାଠମେନର ଶ୍ରୀ ମଦନ କିଁହିର କହନ୍ତି; ୧୦ ବର୍ଷ ତଳେ ଗାଁରେ କ୍ରମାଗତ ଫସଲ ହାନୀ ଘଟିଲା, ରୋଗରେ ଗ୍ରାମବାସୀ ଉତ୍ପୀଡ଼ିତ ହେଲେ, କେତେକ ମୃତ୍ୟୁ ମୁଖରେ ପଡ଼ିବା ସଙ୍ଗେ ସଙ୍ଗେ ଖାଦ୍ୟାଭାବ ଦେଖାଦେଲା । ଏହିଭଳି ଦୁର୍ବିପାକ ସମୟରେ କାଣିବାଲି (ନିକଟସ୍ଥଗ୍ରାମ)ର ଗୁଣିଆଁ ମହେନ୍ଦ୍ର କହିଁରକୁ ଠାକୁରାଣୀ ସ୍ୱପ୍ନ ହେଲେ କହିଲେ "ବେଲପଦର ଗାଁରେ ତାଙ୍କର ଗୋଟିଏ ଆସ୍ଥାନ ସ୍ଥାପନ ହେଲେ ଗାଁର ସମସ୍ତ ଦୁଃଖ ଦୁର୍ଦ୍ଦଶା ଦୂରହେବ ।" ସର୍ବସମ୍ମତିକ୍ରମେ ୧୯୭୫ ମସିହାରେ ଗାଁରେ ଲକ୍ଷ୍ମୀଠାକୁରାଣୀଙ୍କ ଆସ୍ଥାନ (ଲକ୍ଷ୍ମୀଗୁଡ଼ି) ସ୍ଥାପନ କରାଗଲା । ସେହି ଦିନଠାରୁ ହିଁ ବେଲପଦରରେ "ତାଲଖାଇ" ପର୍ବ ପାଳିତ ହୋଇ ଆସୁଛି ।

ସହକାରୀ ସୂଚନା ଅଧିକାରୀ
ନୂଆଦିଲ୍ଲୀ ।



**Vol. XLIV** **No. 2** **UTKAL PRASANGA** **Regd. No. O-05/87**
Licence No. C. R. N. P. 5—Licensed to post without Pre-Payment



ରାଷ୍ଟ୍ରପତିଙ୍କ ଦ୍ୱାରା ସ୍ୱାଧୀନତା ବୃକ୍ଷ ରୋପଣ

